# ବିଚିତ୍ର ମନ

ଡକ୍ଟର ଫକୀର ମୋହନ ସାହୁ



# ବିଚିତ୍ର ମନ

ଡକ୍ଟର ଫକୀର ମୋହନ ସାହୁ
ଅଧ୍ୟାପକ, ମନୋବିଜ୍ଞାନ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ

ଗ୍ରନ୍ଥମନ୍ଦିର

ପ୍ରକାଶକ : ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ

ମୁଦ୍ରକ : ଅଭୟ ସାମନ୍ତରାୟ
ଡାକର୍ ପବ୍ଲିକେଶନ୍, କଟକ

ପ୍ରଥମ ମୁଦ୍ରଣ : ଫେବୃଆରୀ, ୧୯୮୮

ମୂଲ୍ୟ :
ସାଦା [illegible] ୦/-

ଯେଉଁ ପରମ କାରୁଣିକଙ୍କ ଅସୀମ କୃପାରୁ ମନର ବ୍ୟାପ୍ତି, ହୃଦୟର ପ୍ରଶସ୍ତି ଓ ଜୀବନର ବସ୍ତୁତକୁ ଉପଲବ୍ଧି କରିବା ଉଦ୍ୟମର ସୂତ୍ରପାତ, ସେଇ ସୂତ୍ରଧରଙ୍କ ପାଦରେ ଭକ୍ତିର ନୈବେଦ୍ୟ ।

କୃତଜ୍ଞତା :

ପୌରୁଷ
ଉତ୍ସବ
ପ୍ରତିବେଶୀ
ସହକାର
ଜୀବନରଂଗ
ଆସନ୍ତାକାଲି
ପ୍ରଜ୍ଞାପ୍ରକାଶ
ଏବଂ ଗ୍ରନ୍ଥମନ୍ଦିର

# ଭୂମିକା

ମଣିଷ ମନର ବୈଚିତ୍ର୍ୟ ସୁଦୂରପ୍ରସାରୀ । ଏ ବୈଚିତ୍ର୍ୟର କେତୋଟି ଅଂଶ ବିଶେଷର ଏକ ନକ୍‌ସା ପ୍ରସ୍ତୁତ କରିବାର ପରିକଳ୍ପନାରୁ "ବିଚିତ୍ରମନ" ପ୍ରକାଶନର ସୃଷ୍ଟି । ଏହା ସତ ଯେ, ବହିର୍ଜଗତକୁ ବୁଝିବା ଓ ଜାଣିବା ପାଇଁ ମନୁଷ୍ୟର ଯେତିକି ଆଗ୍ରହ ରହିଛି, ତା'ର ଅନ୍ତର୍ଜଗତକୁ ବୁଝିବା ପାଇଁ ମଣିଷ ମନରେ ଅଧିକ ବ୍ୟଗ୍ରତା ରହିଛି । କିନ୍ତୁ ଅନ୍ତର୍ଜଗତର ଅନୁଧ୍ୟାନ ପାଇଁ ଅଧିକ ବାଧା ରହିଛି । ମନୁଷ୍ୟର ପାରିପାର୍ଶ୍ୱିକ ଅବସ୍ଥା ଦ୍ରୁତ ଗତିରେ ପରିବର୍ତ୍ତିତ ହେବାକୁ ଲାଗିଛି । ତା ସହିତ ସମନ୍ୱୟ ରକ୍ଷା କରିବାର ଚେଷ୍ଟା ଫଳରେ ମଣିଷ ମନର ରୂପରେଖ ମଧ୍ୟ ଭିନ୍ନ ଆକାର ନେଉଛି । ଏ ପରିବର୍ତ୍ତିତ ରୂପରେଖକୁ ଠିକ୍ ରୂପେ ପ୍ରକାଶ କରିବାରେ ଯଥେଷ୍ଟ ଜଟିଳତା ରହିଛି ।

କେବଳ ସମୟ କ୍ରମରେ ନୁହେଁ, ଦେଶ ଓ ଗୋଷ୍ଠୀର ବୈଶିଷ୍ଟ୍ୟକୁ ଭିତ୍ତି କରି ମଧ୍ୟ ମଣିଷ ମନର ସ୍ୱରୂପ ଭିନ୍ନ ହୁଏ । ପ୍ରତି ଦେଶର ସାମାଜିକ ଓ ସାଂସ୍କୃତିକ ପୃଷ୍ଠ-ଭୂମିକୁ ବାଦ୍ ଦେଇ ସେ ଦେଶର ଲୋକମାନଙ୍କର ମାନସିକ ବୈଶିଷ୍ଟ୍ୟ ଓ ବ୍ୟବହାରକୁ ଯଥାଯଥ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ବିଶେଷତଃ, ପ୍ରତି ସମାଜର ଆଭିମୁଖ୍ୟ, ଜୀବନଭଙ୍ଗୀ ଓ ସମସ୍ୟାବଳୀ ଭିନ୍ନ ହୋଇଥିବାରୁ, ସେ ଦେଶର ଲୋକ-ମାନଙ୍କର ବ୍ୟବହାର ନିର୍ଦ୍ଦିଷ୍ଟ ରୂପ ନେଇଥାଏ । ଦେଶ ଓ କାଳର ଏପରି ପରିବର୍ତ୍ତିତ ପ୍ରଭାବ ସତ୍ତ୍ୱେ ମଣିଷ ମନ ଓ ତାହାର ପରିପ୍ରକାଶକୁ ବିଜ୍ଞାନସମ୍ମତ ଭାବରେ ଅନୁଶୀଳନ କରିବାର ଉଦ୍ୟମ ଅବ୍ୟାହତ ରହିଛି । ଗ୍ରୀକ୍‌ମାନଙ୍କର ଦାର୍ଶନିକ ଚର୍ଚ୍ଚା ସମୟରୁ ମନୁଷ୍ୟର ମନ ଓ ତା'ର କ୍ରିୟାକଳାପ ସମ୍ପର୍କରେ ଅନୁଧ୍ୟାନ ଆରମ୍ଭ ହୋଇଥିଲେ ହେଁ, ଊନବିଂଶ ଶତକର ମଧ୍ୟ ଭାଗରେ ଏଭଳି ଅନୁଶୀଳନ ଦାର୍ଶନିକ ଗଣ୍ଡିରୁ ମୁକ୍ତିଲାଭ କରି ଏକ ବିଧିବଦ୍ଧ ରୂପ ନେଲା । ପୁନର୍ବାର ବିଂଶ ଶତକର ପ୍ରାରମ୍ଭରେ ବିଶ୍ୱଯୁଦ୍ଧ ସମୟରେ ମଣିଷର ବ୍ୟକ୍ତିଗତ ଓ ସାମାଜିକ ଜୀବନର ଯେଉଁ ବିପର୍ଯ୍ୟସ୍ତ ଘଟିଲା, ସେଥିରୁ ମୁକ୍ତି ପ୍ରୟାସ ମାଧ୍ୟମରେ ମଣିଷ ମନର ଅନୁଶୀଳନର ପରିସର ବିସ୍ତୃତି ଲାଭ କଲା ।

ଆଧୁନିକ କାଳରେ ମଣିଷ ମନର ପ୍ରକୃତି ଓ ବ୍ୟବହାରର ବୈଚିତ୍ର୍ୟ କେବଳ ଅଧ୍ୟୟନ ଓ ଗବେଷଣାର ସାମଗ୍ରୀ ନୁହେଁ । ଏହାର ବ୍ୟାବହାରିକ କ୍ଷେତ୍ର ଖୁବ୍ ପ୍ରଶସ୍ତ । ମନୋବୈଜ୍ଞାନିକ ତଥ୍ୟଗୁଡ଼ିକ ପୁସ୍ତକ ଓ ଗବେଷଣାଗାରର ବନ୍ଧନୀ ଭିତରୁ ମୁକ୍ତିଲାଭ କରି ଆମର ଦୈନନ୍ଦିନ ଜୀବନର ଚଳଣି ମଧ୍ୟରେ ଆତ୍ମପ୍ରକାଶ କରୁଛି ।

ଏହା ପୁରୁଷମାନଙ୍କର କାର୍ଯ୍ୟକୁଶଳତା ପାଇଁ ଯେପରି ଆବଶ୍ୟକ, ନାରୀମାନଙ୍କର ସଂବେଦନଶୀଳତା ପାଇଁ ମଧ୍ୟ ସେତିକି ଆବଶ୍ୟକ । ଅଳ୍ପ ବୟସ୍କ ବ୍ୟକ୍ତିମାନେ ପରିବର୍ତ୍ତନଶୀଳତା ସହିତ ସମନ୍ୱୟ ରକ୍ଷା କରିବା ପାଇଁ ମନୋବିଜ୍ଞାନ ଉପରେ ଯେପରି ନିର୍ଭର କରନ୍ତି ବୟସ୍କ ବ୍ୟକ୍ତିମାନେ ପରିବର୍ତ୍ତନହୀନତାରୁ ମୁକ୍ତିଲାଭ ପାଇଁ ସେତିକି ନିର୍ଭର କରନ୍ତି । ଶିକ୍ଷକ ଶିକ୍ଷାଦାନକୁ ପ୍ରଭାବଶାଳୀ କରିବାପାଇଁ ମନୋ-ବିଜ୍ଞାନର ଆଶ୍ରୟ ନିଅନ୍ତି; ଛାତ୍ରମାନେ ପ୍ରଦତ୍ତ ଶିକ୍ଷାକୁ ଗ୍ରହଣ କରିବାପାଇଁ ମନୋ-ବିଜ୍ଞାନର ସାହାଯ୍ୟ ଲୋଡ଼ନ୍ତି । ପିତାମାତାମାନେ ସେମାନଙ୍କ ସନ୍ତାନଙ୍କୁ ଉଚିତ ମାର୍ଗରେ ପରିଚାଳନା କରିବା ପାଇଁ ମନସ୍ତାତ୍ତ୍ୱିକ ତଥ୍ୟର ସାହାଯ୍ୟ ନେବା ସ୍ଥଳେ, ପୁତ୍ରକନ୍ୟାମାନେ ପିତାମାତାଙ୍କ ସହିତ ସୁସମ୍ପର୍କ ସ୍ଥାପନ ପାଇଁ ଏହାର ସାହାଯ୍ୟ ନିଅନ୍ତି । ଶାସକଗୋଷ୍ଠୀ ଜନସାଧାରଣଙ୍କର ଆଶା ଆକାଂକ୍ଷାକୁ ଯଥାର୍ଥ ରୂପରେଖ ଦେବାରେ ଏସବୁ ତଥ୍ୟର ଯେପରି ଉପଯୋଗ କରିପାରନ୍ତି, ସେହିପରି ଜନସାଧାରଣ ନିଜ ଅଧିକାର ସାବ୍ୟସ୍ତ କରିବାରେ ଏଗୁଡ଼ିକର ବ୍ୟବହାର କରିଥାଆନ୍ତି । ମନୋ-ବୈଜ୍ଞାନିକ ତଥ୍ୟଗୁଡ଼ିକର ପ୍ରୟୋଗାତ୍ମକ ଦିଗଟି ଏତେ ବିସ୍ତୃତ ଯେ ମନୋବୈଜ୍ଞାନିକ ଚିନ୍ତାଧାରା ଜୀବନର ବିଳାସିତା ନ ହୋଇ ଏକ ନିତ୍ୟକ ଆବଶ୍ୟକତାର ରୂପ ନେଇଛି ।

ଏହି ଉପଲବ୍ଧିକୁ 'ବିଚିତ୍ର ମନ' କେତେଦୂର ଅଭିବ୍ୟକ୍ତ ଦେଇଛି, ତାହା ପାଠକମାନଙ୍କର ବିଚାର୍ଯ୍ୟ । ମନୋବିଜ୍ଞାନର ଛାତ୍ରଠାରୁ ଆରମ୍ଭ କରି ସାଧାରଣ ପାଠକ ଏଥିରୁ ଆବଶ୍ୟକ ଉପାଦାନ ପାଇ ପାରିବେ ବୋଲି ଆଶା କରାଯାଏ । ପୁସ୍ତକଟିରେ ସନ୍ନିବିଷ୍ଟ ପ୍ରବନ୍ଧ ଗୁଡ଼ିକ ମଧ୍ୟରେ ଏକ ଅନ୍ତଃସଲିଳ ଯୋଗସୂତ୍ର ରହିଛି । ବିଭିନ୍ନ ସମୟରେ ଓ ବିଭିନ୍ନ ପତ୍ରିକାରେ ଏଗୁଡ଼ିକ ପ୍ରକାଶ ଲାଭ କରିଥିଲେହେଁ ବର୍ତ୍ତମାନର ସଂଗଠନ ମାଧ୍ୟମରେ ଏଗୁଡ଼ିକୁ ଏକ ସୁସଜ୍ଜିତ ରୂପ ଦେବାର ଉଦ୍ୟମ କରାଯାଇଛି । ଅବଶ୍ୟ ପ୍ରବନ୍ଧଗୁଡ଼ିକ ଭିନ୍ନ ଭିନ୍ନ ସମୟରେ ଲେଖା ହୋଇଥିବାରୁ ଅଳ୍ପ କେତେକ ସ୍ଥଳରେ ପୁନରାବୃତ୍ତିର ତ୍ରୁଟି ଥାଇପାରେ । ଏଭଳି ତ୍ରୁଟିକୁ ପାଠକମାନେ କ୍ଷମା ଦେବେ ବୋଲି ଆଶା ।

"ବିଚିତ୍ର ମନ"ର ପ୍ରକାଶନ ଲେଖକଙ୍କର ପ୍ରଥମ ଓଡ଼ିଆ ପୁସ୍ତକ ହେଲେହେଁ ବୈଜ୍ଞାନିକ ଚିନ୍ତା ସଂପ୍ରସାରଣ ଉଦ୍ୟମର ଏହା ଏକ ଅଂଶବିଶେଷ । ମଣିଷ ମନର ବିସ୍ତୃତିକୁ ରୂପ ଦେବାରେ ଏହା ଶେଷ ପ୍ରୟାସ ନୁହେଁ । ପାଠକମାନଙ୍କର ଶ୍ରଦ୍ଧା ଲାଭ କଲେ ଆଗାମୀ ଦିନରେ ଅଧିକ ସଂଖ୍ୟକ ପ୍ରକାଶନ ଆତ୍ମପ୍ରକାଶ କରିବ ।

ବାଣୀବିହାର, ଭୁବନେଶ୍ୱର

ଡିସେମ୍ବର, ୧୯୮୭ — ଲେଖକ

# ସୂଚୀ

# ମନର ସୌନ୍ଦର୍ଯ୍ୟ

## ବ୍ୟକ୍ତି ଓ ସୃଜନଶୀଳତା

ଜନଜୀବନର ସୌନ୍ଦର୍ଯ୍ୟ ବୃଦ୍ଧିରେ ସୃଜନଶୀଳତାର ଭୂମିକା ସୁପ୍ରତିଷ୍ଠିତ । ଦୈନନ୍ଦିନ ଜୀବନର ଯନ୍ତ୍ରଣା ସତ୍ତ୍ୱେ ଜୀବନରେ ଯେଉଁ ଛନ୍ଦ ଯେଉଁ ସୌନ୍ଦର୍ଯ୍ୟ ପରିଲକ୍ଷିତ ହୁଏ, ତାହା କେବଳ ସୃଜନଶୀଳତା ଯୋଗୁଁ ସମ୍ଭବ ହୋଇପାରିଛି । ସମୟାନୁକ୍ରମେ ବହୁ ସୃଜନଶୀଳ ବ୍ୟକ୍ତି ଆମର ଏ ଚିରପରିଚିତ ପୁରାତନ ବିଶ୍ୱକୁ ଏକ ନୂତନ ରୂପରେଖ ଦେଇଛନ୍ତି । ଫଳରେ ପ୍ରତିଦିନ ବିଶ୍ୱର ସୌନ୍ଦର୍ଯ୍ୟ, ବିଶ୍ୱର ନୂତନତ୍ୱ ପରିବର୍ତ୍ତିତ ହୋଇପାରୁଛି । ଚକର ଉଦ୍ଭାବନଠାରୁ ଆରମ୍ଭ କରି ଆଇନ୍‌ଷ୍ଟାଇନଙ୍କ ଆପେକ୍ଷିକ ତତ୍ତ୍ୱ ପର୍ଯ୍ୟନ୍ତ, ଆତ୍ମରକ୍ଷା ପାଇଁ ମନୁଷ୍ୟର ଚିତ୍କାରଠାରୁ ଆରମ୍ଭ କରି ବିଥୋଭେନ୍‌ଙ୍କ ସଙ୍ଗୀତ ସୃଷ୍ଟି ପର୍ଯ୍ୟନ୍ତ ଏବଂ ଅର୍ଥହୀନ ରେଖାରୁ ସେକ୍‌ସପିଅରଙ୍କ ସମ୍ଭ୍ରାନ୍ତ ସାହିତ୍ୟ ସୃଷ୍ଟି ପର୍ଯ୍ୟନ୍ତ ସୃଜନଶୀଳତାର ପରିପ୍ରକାଶ ଘଟିଛି । ଦେଶକାଳ ସୀମାକୁ ଅତିକ୍ରମ କରି ଏହା ଜନଜୀବନକୁ ଋଦ୍ଧିମନ୍ତ କରିଛି ।

ସୃଜନଶୀଳତାର ଗୁରୁତ୍ୱ ସତ୍ତ୍ୱେ ଏହାର ମୂଲ୍ୟାଙ୍କନ ସହଜ ନୁହେଁ । ସୃଜନଶୀଳତାର ଅତି ଉର୍ଦ୍ଧ୍ୱକୁ ଗଲା ପରେ ବ୍ୟକ୍ତି ସାମାଜିକ ସମ୍ମାନ ଲାଭ କରିପାରେ; କିନ୍ତୁ ପ୍ରଚ୍ଛନ୍ନ ଭାବରେ ସୃଜନଶୀଳତା ଥିବା ବ୍ୟକ୍ତିମାନଙ୍କୁ ଚିହ୍ନଟ କରିବା ସହଜ ନୁହେଁ । ପୂଜ୍ୟପୂଜାର ଗୁରୁତ୍ୱ ଦୃଷ୍ଟିରୁ ପ୍ରତିଷ୍ଠିତ ସୃଜନଶୀଳ ବ୍ୟକ୍ତିଙ୍କୁ ସାମାଜିକ ସମ୍ମାନ ଦେବା ଯେତିକି ସମୀଚୀନ, ପ୍ରଚ୍ଛନ୍ନ ସୃଜନଶୀଳ ବ୍ୟକ୍ତିଙ୍କୁ ଉପଯୁକ୍ତ ସୁବିଧା ସୁଯୋଗ ଦେଇ ସେମାନଙ୍କ ସୃଜନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ସେତିକି ଆବଶ୍ୟକ । ଏହାର ଅଭାବରେ କେବଳ ବ୍ୟକ୍ତିର ସୃଜନାତ୍ମକ ବିକାଶ ବ୍ୟାହତ ହୁଏ ନାହିଁ, ସମାଜର ଭାବଗତ ଦାରିଦ୍ର୍ୟ ବୃଦ୍ଧିପାଇଥାଏ । ବର୍ତ୍ତମାନ ପ୍ରଶ୍ନ ଉଠୁଛି, ଉଦୀୟମାନ ସୃଜନକ୍ଷମ ବ୍ୟକ୍ତି କିଏ ? ବିଶେଷତଃ ବାଲ୍ୟକାଳରେ ଓ ଯୁବାବସ୍ଥାରେ ସୃଜନାତ୍ମକ ଦକ୍ଷତାର ନିର୍ଦ୍ଧାରଣ ସମ୍ଭବ କି ?

ଏ ଦୁଇଟି ପ୍ରଶ୍ନର ଉତ୍ତର ପାଇଁ ବହୁ ଦିନରୁ ଚିନ୍ତା କରି ଯାଉଥିଲେ ହେଁ ଅଳ୍ପ କିଛିବର୍ଷ ପୂର୍ବରୁ ଏ ଦିଗରେ ବିଧିବଦ୍ଧ ଗବେଷଣା ଆରମ୍ଭ କରାଯାଇଛି । ପ୍ରତି ଦେଶ ସୃଜନକ୍ଷମ ଆଗାମୀର ବ୍ୟକ୍ତିର ସଂଖ୍ୟା ବୃଦ୍ଧି କରି ଦେଶକୁ ପ୍ରଗତିଶୀଳ କରିବାକୁ ବ୍ୟଗ୍ର । ତେଣୁ ଏ ଦିଗରେ ଗବେଷକମାନେ ଶକ୍ତି ଓ ସମୟ ନିୟୋଜିତ କରିଛନ୍ତି । ମିଳିଥିବା

ଉକ୍ତ ଗୁଡ଼ିକ ପ୍ରଶ୍ନମାନଙ୍କରେ ସମାଧାନର ପନ୍ଥା ପ୍ରଦର୍ଶନ କରି ନ ଥିଲେ ମଧ୍ୟ ଗମ୍ଭୀର ଆଶାର ସନ୍ଧାନ ଦେଇଛନ୍ତି ।

ସୃଜନାତ୍ମକ ଚିନ୍ତାର ନିର୍ଦ୍ଧାରଣ ପନ୍ଥା ଆଲୋଚିତ ହେବା ପୂର୍ବରୁ ସୃଜନଶୀଳତାର ପ୍ରକୃତ ଅର୍ଥ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ଦିଆଯିବା ଆବଶ୍ୟକ । ସୃଜନଶୀଳତାର ଏକ ବିଶିଷ୍ଟ ଦିଗ ହେଉଛି ମୌଳିକତା ।

ଯେଉଁ ଚିନ୍ତା ଅନନ୍ୟସାଧାରଣ, ଯାହା ସହଜରେ ପରିଲକ୍ଷିତ ହୁଏନାହିଁ ଏବଂ ଯାହାର ସଂଖ୍ୟା ଅତି ମାତ୍ରାରେ କମ, ତାହା ମୌଳିକତାର ସୂଚନା ଦିଏ । କିନ୍ତୁ ତା'ର ଅର୍ଥ ନୁହେଁ ଯେ ପାଗଳର ପ୍ରଳାପ ବା କେଉଁ ବ୍ୟକ୍ତିର ଏକ ଅର୍ଥହୀନ ଅସ୍ୱାଭାବିକ ବ୍ୟବହାର ମୌଳିକ ପଦବାଚ୍ୟ । ସୃଜନଶୀଳ ଚିନ୍ତାଟି ଅନନ୍ୟସାଧାରଣ ହେବା ସଙ୍ଗେ ସଙ୍ଗେ ବାସ୍ତବତା ସହିତ ସମ୍ପର୍କିତ ହୋଇଥିବା ଆବଶ୍ୟକ । ସୃଜନାତ୍ମକ ଚିନ୍ତା ବା ସୃଷ୍ଟି ଜନ-ଜୀବନରେ କିମ୍ବା ମନୁଷ୍ୟ ଭାବନା ରାଜ୍ୟରେ କିଛି ପରିବର୍ତ୍ତନ ଆଣିପାରିବା ଭଳି ହୋଇଥାଏ । ସୃଜନଶୀଳତାକୁ ମାପିବା ପାଇଁ ବିଭିନ୍ନ ଗବେଷକ ଭିନ୍ନ ଅଭିମୁଖ୍ୟ ଗ୍ରହଣ କରିଛନ୍ତି । ସବୁ ମାପକର ଆଲୋଚନା ଏକ ସୀମିତ ପରିସର ମଧ୍ୟରେ ସମ୍ଭବ ନୁହେଁ । ତେବେ କେତୋଟି ମୁଖ୍ୟ ମାପକର ବର୍ଣ୍ଣନା ସୃଜନଶୀଳତାର ମାପ ବିଷୟରେ ଏକ ଧାରଣା ଦେଇପାରିବ । ଏଠାରେ ମନେ ରଖିବାକୁ ହେବ ଯେ ବର୍ଣ୍ଣିତ ମାପଗୁଡ଼ିକ ପିଲା ଏବଂ ସ୍ଥଳବିଶେଷରେ ପ୍ରଚ୍ଛନ୍ନ ସୃଜନଶୀଳତା ଥିବା ବ୍ୟକ୍ତିମାନଙ୍କ ପାଇଁ ପ୍ରଯୁଜ୍ୟ । ମାପକ ଗୁଡ଼ିକ ବ୍ୟବହାର କରି ସୁପ୍ରତିଷ୍ଠିତ ସୃଜନକ୍ଷମ ବ୍ୟକ୍ତିଙ୍କର ସାମର୍ଥ୍ୟ ନିର୍ଦ୍ଧାରଣ କରିବା ଉଦ୍ୟମ ନିଶ୍ଚିତ ଭାବରେ ହାସ୍ୟାସ୍ପଦ ।

ସାଧାରଣତଃ ସୃଜନଶୀଳ ପିଲା ବା ବ୍ୟକ୍ତିମାନେ ଗୋଟିଏ ଅତି ପରିଚିତ ଅତି ପୁରାତନ ଜିନିଷକୁ ନୂତନ ଭାବରେ ବ୍ୟବହାର କରିଥାନ୍ତି । ଏ ପର୍ଯ୍ୟବେକ୍ଷଣରୁ ମନୋବିଜ୍ଞାନୀ ଗିଲଫୋର୍ଡ଼ ଏକ ସୁନ୍ଦର ମାପକର ଅବତାରଣା କରିଛନ୍ତି । ଏହାକୁ ଅସ୍ୱାଭାବିକ ଉପଯୋଗ ମାପନ (Unusual westerf) କୁହାଯାଇ ପାରେ । ଉଦାହରଣ ସ୍ୱରୂପ ଗୋଟିଏ ପିଲାକୁ ପଚରା ଯାଇପାରେ, 'ଗୋଟିଏ ଇଟାକୁ କେତେ ପ୍ରକାରରେ ବ୍ୟବହାର କରାଯାଇ-ପାରେ ?' ଏହାର ଉତ୍ତରରେ ଗୋଟିଏ ସାଧାରଣ ପିଲା ଉତ୍ତର ଦେବ, 'ଇଟାକୁ ଗୃହନିର୍ମା-ଣରେ, ମନ୍ଦିର ନିର୍ମାଣରେ, ଅଫିସ ନିର୍ମାଣରେ, ସ୍କୁଲ ନିର୍ମାଣ ଇତ୍ୟାଦିରେ ବ୍ୟବହାର କରାଯାଇପାରେ ।' ଏ ଉତ୍ତରରେ ଲକ୍ଷ୍ୟ କରିବାର କଥା ଯେ ପିଲାଟି ଗୋଟିଏ ପ୍ରକାର ଗତାନୁଗତିକ ଉତ୍ତର ଦେଉଛି । ଅପରପକ୍ଷରେ ଆଉ ଗୋଟିଏ ସୃଜନକ୍ଷମ ପିଲା ଏପରି ଉତ୍ତର ଦେଇପାରେ, 'ଇଟା ଦ୍ୱାରା କାନ୍ଥରେ କିଛି ଲେଖା ଯାଇ ପାରେ; କାଗଜ ପବନରେ ଉଡ଼ିଯିବା ପାଇଁ କାଗଜ ଉପରେ ଲଦି ଦିଆଯାଇପାରେ, ବରଡ଼ିକୁ ଚଉଡ଼େଇବା ପାଇଁ ବ୍ୟବହାର କରା ଯାଇପାରେ, ଦ୍ୱାର ଖୋଲା ରଖିବା ପାଇଁ, ହାତ ପାଉ ନ ଥିବା ଜିନିଷକୁ କାଢ଼ିବାକୁ ହେଲେ ଇଟା ଉପରେ ଠିଆ ହେବା ଇତ୍ୟାଦି କାର୍ଯ୍ୟରେ ଏହାକୁ ଉପଯୋଗ

କରାଯାଇ ପାରେ ।' ସେହିପରି ବାଲ୍ଟିକୁ, ଜଳକୁ ଓ ଖବର କାଗଜକୁ କିପରି ବ୍ୟବହାର କରାଯାଇପାରେ ତାହା ଏହି ମାପକରେ ପଚରା ଯାଇ ପାରେ ।

ପିଲାଟି ଉତ୍ତର ଦେଲା ପରେ ସେ ଉତ୍ତରରେ ତିନୋଟି ଦିଗ ଅନୁଶୀଳନ କରାଯାଇ ପାରେ । ପ୍ରଥମତଃ ହେଉଛି ଉତ୍ତରରେ କ୍ଷିପ୍ରତା । ସାଧାରଣତଃ ପ୍ରତିପ୍ରଶ୍ନ ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ (ସାଧାରଣତଃ ପାଞ୍ଚ ମିନିଟ୍) ଦିଆଯାଏ । ଏହି ପାଞ୍ଚ ମିନିଟ୍ ମଧ୍ୟରେ ଗୋଟିଏ ପିଲା କେତୋଟି ଧାରଣା ଦେଇପାରୁଛି, ତାର ସଂଖ୍ୟା ଦେଖି ପିଲାର ଉତ୍ତର କ୍ଷିପ୍ରତା ସ୍ଥିର କରାଯାଏ । ଉପରୋକ୍ତ ଉଦାହରଣରେ ପ୍ରଥମ ପିଲାର କ୍ଷିପ୍ରତା ଚାରି ଓ ଦ୍ୱିତୀୟ ପିଲାର କ୍ଷିପ୍ରତା ପାଞ୍ଚ ବୋଲି କୁହାଯାଇ ପାରେ । ଦ୍ୱିତୀୟତଃ ଉତ୍ତରରୁ ପିଲାଟିର ସଚଳତା (Flexibility) ବିଚାର କରାଯାଏ । ଉଦାହରଣରେ ଉତ୍ତରରେ କେତେ, ପରିମାଣରେ ବା କେତେ ସଂଖ୍ୟକ ଭାବନାର ଶ୍ରେଣୀ ରହିଛି ତାହା ବିଚାର କରାଯାଏ । ପ୍ରଥମ ପିଲାଟି ଚାରୋଟି ଭାବନା ଦର୍ଶାଇ ଥିଲେ ମଧ୍ୟ ସବୁ ଭାବନାର ଧାରା ଗୋଟିଏ କଳୁ ନମୀନ କରିବା । ସୁତରାଂ ତାର ସଚଳତା ପାଇଁ ତାକୁ ଏକ ନମ୍ବର ଦିଆଯାଏ । ଅପର ପକ୍ଷରେ ଦ୍ୱିତୀୟ ପିଲାଟିର ପ୍ରତିଭାବନ ଏକ ଭିନ୍ନ ଶ୍ରେଣୀର । ଭାବନାର ପ୍ରକରଣ ବେଶୀ ବିଭାଗୀକରଣ ବେଶୀ । ତେଣୁ ପାଞ୍ଚୋଟି ଭିନ୍ନ ଭିନ୍ନ ଭାବଧାରା ପାଇଁ ତାକୁ ପାଞ୍ଚ ନମ୍ବର ଦିଆଯାଏ ସଚଳତା ପରିପ୍ରେକ୍ଷୀରେ । ତୃତୀୟରେ ପିଲାମାନଙ୍କର ଉତ୍ତରରେ ମୌଳିକତା (Originality)ର ମାନ ନିର୍ଦ୍ଧାରଣ କରାଯାଏ । ଉପରୋକ୍ତ ଉଦାହରଣରେ ଦ୍ୱିତୀ ପିଲାର ଉତ୍ତର ଅଧିକ ମୌଳିକତାପୂର୍ଣ୍ଣ, ଏହା ସହଜରେ କହିହେବ । ପ୍ରକୃତ କ୍ଷେତ୍ରରେ ଏକ ସହଜ ପଦ୍ଧତିରେ ମୌଳିକତାର ମାନ ସ୍ଥିର କରାଯାଇ ପାରେ । କୌଣସି ଏକ ସ୍ଥଳରେ ବହୁସଂଖ୍ୟକ ପିଲାମାନଙ୍କୁ ଏହି ପରୀକ୍ଷାଟି ଦିଆଯାଇଥିଲେ, ଯେତେ ପ୍ରକାର ଉତ୍ତର ମିଳିଛି, ସେମାନଙ୍କର ସଂଖ୍ୟା ଗଣିବା ବେଶ୍ ସମ୍ଭବ । ଯେଉଁ ଉତ୍ତର ଯେତେ କମ ସଂଖ୍ୟାରେ ମିଳିଛି, ତାହା ସେତେ ବେଶୀ ମୌଳିକତାର ସୂଚକ ବୋଲି ଗ୍ରହଣ କରାଯାଏ । ଅର୍ଥାତ୍ ଏକ ହଜାରରେ ଏକ ମିଳିଥିବା ଉତ୍ତରଟି ଏକ ହଜାରରେ ଦୁଇ ମିଳିଥିବା ଉତ୍ତରଠାରୁ ଅଧିକ ମୌଳିକତା ପୂର୍ଣ୍ଣ । ଏପରି ହିସାବରେ ପ୍ରତି ଭାବଧାରାର ମୌଳିକତା ନିର୍ଣ୍ଣୟ କରିବା ସମ୍ଭବ ହୁଏ ।

କ୍ଷିପ୍ରତା, ସଚଳତା ଓ ମୌଳିକତା—ଏ ତିନୋଟିର ମାନକୁ ମିଶାଇ ସୃଜନଶୀଳତାର ସୂଚନା ଦିଆଯାଏ । କ୍ଷିପ୍ରତା, ସଚଳତା ଓ ମୌଳିକତାର ଆଧିକ୍ୟ ସୃଜନଶୀଳତାର ସୂଚନା କେବଳ ଗିଲ୍‌ଫୋର୍ଡଙ୍କ ଆମ୍ରଭାବକ ଉପଯୋଗ ପରୀକ୍ଷାରେ ନୁହେଁ; ସୃଜନଶୀଳତା ମାପ ପାଇଁ ବ୍ୟବହୃତ ଅଧିକାଂଶ ମାପକ ଗୁଡ଼ିକରେ କ୍ଷିପ୍ରତା, ସଚଳତା ଓ ମୌଳିକତାର ପୃଥକ ପୃଥକ ମାନ ନିର୍ଦ୍ଧାରଣ କରି ଶେଷରେ ଏକ ସୃଜନଶୀଳତା ସୂଚକାଙ୍କ ସ୍ଥିର କରାଯାଇଥାଏ । ଗିଲ୍‌ଫୋର୍ଡଙ୍କ ମାପକ ପରି ଆଉ ଗୋଟିଏ ବହୁ ବ୍ୟବହୃତ ମାପକ ହେଉଛି ପରିଣତି ମାପକ (Consequences Test) । ଏ ପରୀକ୍ଷାରେ

କେତୋଟି ଅବାସ୍ତବ ଘଟଣା ଘଟିବାର ସୂଚନା ଦିଆଯାଇ ଏହାର ଫଳାଫଳ ସମ୍ପର୍କରେ ପ୍ରଶ୍ନ ପଚରାଯାଏ । ଉଦାହରଣ ସ୍ୱରୂପ ପଚରା ଯାଇପାରେ ଯେ, ମନୁଷ୍ୟ ଯଦି ପକ୍ଷୀ ଭଳି ଉଡ଼ିପାରୁଥାନ୍ତା, ତେବେ କ'ଣ ହୁଅନ୍ତା ? ମନୁଷ୍ୟର ଯଦି ଖାଦ୍ୟ ଖାଇବା ଦରକାର ପଡୁ ନ ଥାନ୍ତା, ତେବେ କଣ ହୁଅନ୍ତା ? ସେହିପରି ତୁମ ସ୍କୁଲରେ ଚକ ଲଗିଥିଲେ କଣ ହୁଅନ୍ତା ?

ସୃଜନଶୀଳତା ଗବେଷଣା କ୍ଷେତ୍ରରେ ଅଗ୍ରଗାମୀ ମନୋବିଜ୍ଞାନୀ ଟରାନ୍ସ ପରିଣତି ମାପକ ଭଳି ଆଉ ଗୋଟିଏ ମାପକ ବ୍ୟବହାର କରିଛନ୍ତି । ଏହାର ନାମ "ଧରାଯାଉ ମାପକ" । ଏଥିରେ ଥିବା ପ୍ରଶ୍ନଗୁଡ଼ିକ ପରିଣତି ମାପକର ପ୍ରଶ୍ନ ପରି । ଉଦାହରଣ ସ୍ୱରୂପ ଟରାନ୍ସ ପିଲାଙ୍କୁ ପଚାରୁ ଥିଲେ—ଧରାଯାଉ,କାହାକୁ ଆଉ ସ୍କୁଲକୁ ଯିବାକୁ ପଡ଼ନ୍ତାନାହିଁ, ତେବେ କଣ ହୁଅନ୍ତା ? ଏହାଛଡ଼ା ଟରାନସ୍‌ଙ୍କ ଅନ୍ୟ ଦୁଇଟି ମୁଖ୍ୟ ମାପକ ହେଉଛି ଗଳ୍ପ ଲେଖନ ଓ ଶିରୋନାମା ପ୍ରଦାନ । ଗଳ୍ପ ଲେଖନରେ ପିଲାଟିକୁ ଗଳ୍ପର ଗୋଟିଏ ଶିରୋନାମା ଦିଆଯାଏ ଏବଂ ଶିରୋନାମାଟି ଖୁବ୍ ଅସ୍ୱାଭାବିକ ହୋଇଥାଏ 'ଉଡ଼ନ୍ତା ମାଙ୍କଡ଼' ବା 'ଗର୍ଜ୍ଜନ କରି ପାରୁ ନ ଥିବା ସିଂହ'—ଏହିପରି ଶିରୋନାମା ଦେଲା ପରେ ପିଲାଟି ଗଳ୍ପ ଲେଖେ । ଶିରୋନାମା ପ୍ରଦାନ ମାପକରେ ପିଲାଟିକୁ ଗୋଟିଏ ଗଳ୍ପ ଦିଆଯାଏ ଓ ସେ ବିଭିନ୍ନ ଶିରୋନାମା ପ୍ରଦାନ କରେ ।

ଅନ୍ୟ ଗୋଟିଏ କୌତୂହଳପୂର୍ଣ୍ଣ ମାପକ ହେଉଛି ସାମଞ୍ଜସ୍ୟ ମାପକ । କେହି କେହି ଏହାକୁ ନୂତନ ସଂଯୋଗ ମାପକ ମଧ୍ୟ କହନ୍ତି । ଏ ପରୀକ୍ଷାରେ ପ୍ରତି ପ୍ରଶ୍ନରେ ଦୁଇଟି ବସ୍ତୁର ନାମ ଦିଆଯାଇ 'ସେମାନେ କେଉଁ ପ୍ରକାରରେ ପରସ୍ପର ସହିତ ସମାନ' ବୋଲି ପଚରାଯାଏ । ଦୃଷ୍ଟାନ୍ତ ସ୍ୱରୂପ, ଗୋଟିଏ ପ୍ରଶ୍ନ ହେଉଛି—ଗଛ ଓ ଘର କେଉଁ ଗୁଣରେ ସମାନ ? ସେହିପରି ଚୌକି ଓ ଜଉଣି କେଉଁ ପ୍ରକାରରେ ପରସ୍ପର ସହିତ ସମାନ ? ପାଣି ଓ ପବନ କେଉଁ ପ୍ରକାରରେ ସମାନ ? ମନୁଷ୍ୟ ଓ ପକ୍ଷୀ କେଉଁ ଗୁଣରେ ସମାନ ?

ଉଦାହରଣ ମାପକ (Instances Test) ମଧ୍ୟ ବ୍ୟବହାର କରାଯାଇ‌ପାରେ । ବସ୍ତୁର ଏକ ଗୁଣର ସୂଚନା ଦିଆଯାଇ ଉକ୍ତ ଗୁଣଯୁକ୍ତ ବସ୍ତୁ ଗୁଡ଼ିକର ନାମ ଲେଖିବା ପାଇଁ ପିଲାକୁ କୁହାଯାଏ । ଗୋଲାକାର ହୋଇଥିବା ଜିନିଷଗୁଡ଼ିକର ନାମ ଏବଂ ଚକଥାଇ ଗତି କରୁଥିବା ଜିନିଷର ନାମ ଲେଖିବାକୁ ପଚରା ଯାଇଥାଏ ।

ବର୍ଣ୍ଣିତ ମାପକଗୁଡ଼ିକ ବହୁଳ ଭାବରେ ବ୍ୟବହୃତ ହୋଇଛି । ଆଲୋଚନାରୁ ମନେହେଉଥାଏ ଯେ ସୃଜନଶୀଳତା ପରୀକ୍ଷାଗୁଡ଼ିକ ଭାଷାଗତ ପରପ୍ରକାଶ ମାଧ୍ୟମରେ ବ୍ୟବହୃତ ହୁଏ । ମାତ୍ର ଏହା ଠିକ୍ ନୁହେଁ । ଭାଷାଯୁକ୍ତ ମାପକ ପରି କେତେକ ଭାଷାବହିର୍ଭୂତ (Non-verbal) ମାପକ ରହିଛି । 'ବୃତ୍ତ ମାପକ' ଏହିପରି ଗୋଟିଏ

ପରୀକ୍ଷା । କ୍ଷେତ୍ରରେ ଗୋଟିଏ ବୃତ୍ତ ଦିଆଯାଇ ପିଲାଟି ଯେତେ ପ୍ରକାରରେ ତାକୁ ବ୍ୟବହାର କରି ଅନ୍ୟ ଜିନିଷର ସୂଚନା ଦେଇପାରିବ, ତାହା ଲକ୍ଷ୍ୟ କରାଯାଏ । ପିଲାଟି ହୁଏତ ମଣିଷ ମୁହଁ, ସୂର୍ଯ୍ୟମୁଖୀ ଫୁଲ, ସର୍ପ, ଥାଳି ଇତ୍ୟାଦି ବିଭିନ୍ନ ଜିନିଷର ସୂଚନା ଦେଇପାରେ । ଏଥିରେ ତାକୁ କିଛି ଲେଖିବା ପାଇଁ ପଡ଼ି ନ ଥାଏ । ସେହିପରି ଆଉ ଗୋଟିଏ ମାପକ ହେଉଛି ଆକୃତି ମାପକ (Shape Test) । ଛୋଟ ଛୋଟ ରଙ୍ଗୀନ କଟା କାଗଜ ଦିଆଯାଇ ଯଥାସମ୍ଭବ ଅଧିକ ଛବି କରିବା ପାଇଁ ପିଲାଟିକୁ କୁହାଯାଏ ।

କହିବା ବାହୁଲ୍ୟ ଯେ ଆଲୋଚିତ ପ୍ରତି ମାପକରେ କ୍ଷିପ୍ରତା, ସଚଳତା ଓ ମୌଳିକତାର ମାନ ନିର୍ଦ୍ଧାରଣ ସମ୍ଭବ । ଏ ତିନୋଟିକୁ ବିସ୍ତାରକୁ ନେଇ ସୃଜନଶୀଳତାର ଏକ ନିର୍ଦ୍ଦିଷ୍ଟ ମାନ ପ୍ରତି ମାପକ କ୍ଷେତ୍ରରେ ସ୍ଥିର କରାଯାଏ । ଆଉ ମଧ୍ୟ କୌଣସି ବ୍ୟକ୍ତିର ସୃଜନଶୀଳତା ସ୍ଥିର କରିବା ସମୟରେ ସାଧାରଣତଃ ସଂଖ୍ୟାଧିକ ମାପକର ପ୍ରୟୋଗ କରାଯାଇ ପ୍ରାପ୍ତ ମାନଗୁଡ଼ିକ ଏକତ୍ର ବିସ୍ତାରକୁ ନେଇ ପିଲା ବା ବ୍ୟକ୍ତିର ସୃଜନଶୀଳତା ଉପରେ ମତାମତ ଦିଆଯାଏ । ଜଣେ ସୁଦକ୍ଷ ମନୋବିଜ୍ଞାନୀ ବହୁ ମାପକର ପ୍ରୟୋଗ କରି ବ୍ୟକ୍ତି ସୃଜନଶୀଳତାର ସମ୍ଭାବନା ଉପରେ ମନ୍ତବ୍ୟ ପ୍ରକାଶ କରିଥାନ୍ତି ।

ସୃଜନାତ୍ମକ ସାମର୍ଥ୍ୟ ନିର୍ଦ୍ଧାରଣ ପାଇଁ କେତେଗୁଡ଼ିଏ ମାପକର ବିକାଶ ଏକ ନୂତନ ପଦକ୍ଷେପ । କିନ୍ତୁ ଏହାଦ୍ୱାରା ଯେ ସବୁ ସମସ୍ୟାର ସମାଧାନ ହୋଇଛି—ଏହା ଭାବିବା ଠିକ୍ ନୁହେଁ । ବିଶେଷତଃ ବ୍ୟକ୍ତିର ସୃଜନଶୀଳତାର ପରିପ୍ରକାଶ ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ (ଯଥା କଳା, ସାହିତ୍ୟ, ବିଜ୍ଞାନ) ଘଟେ । ବିଜ୍ଞାନରେ ପ୍ରଚ୍ଛନ୍ନ ପ୍ରତିଭା ଥିବା ବ୍ୟକ୍ତିକୁ ଗଳ୍ପଲେଖନ ବା ଶିରୋନାମା ପ୍ରଦାନ ମାପକ ଦେଇ ଚିହ୍ନଟ କରିବା ଅସଙ୍ଗତ ମନେ ହୋଇପାରେ । ଏହା କିଛି ପରିମାଣରେ ଅସଙ୍ଗତ । ସେଥିପାଇଁ ଅଧିକାଂଶ କ୍ଷେତ୍ରରେ ସୃଜନଶୀଳ ବ୍ୟକ୍ତିର ଚିହ୍ନଟ ପାଇଁ ସଂଖ୍ୟାଧିକ ମାପକ ବ୍ୟବହାର କରାଯାଏ । ଦ୍ୱିତୀୟତଃ ଗବେଷଣାରୁ ଦେଖାଯାଇଛି ଯେ ସୃଜନଶୀଳତାର କ୍ଷେତ୍ର ଯାହା ହେଉନା କାହିଁକି, ସୃଜନାତ୍ମକ କ୍ରିୟାର ମୌଳିକ ବୈଶିଷ୍ଟ୍ୟ ହେଉଛି ବହୁମୁଖୀ ଚିନ୍ତା (Divergent Thinking) । ପୂର୍ବବର୍ଣ୍ଣିତ ଉଦାହରଣରେ ଦ୍ୱିତୀୟ ପିଲାର ଇଟା ବ୍ୟବହାର ଦୃଷ୍ଟାନ୍ତରେ ବହୁମୁଖୀ ଚିନ୍ତା ପ୍ରତିଫଳିତ । ସୃଜନଶୀଳତାର ପ୍ରାୟ ପ୍ରତ୍ୟେକ ମାପକ ଏହି ବ୍ୟକ୍ତିର ବହୁମୁଖୀ ଚିନ୍ତା ସାମର୍ଥ୍ୟ ନିର୍ଦ୍ଧାରଣ କରି ସୃଜନଶୀଳତାର ମାନ ନିର୍ଣ୍ଣୟ କରନ୍ତି । ଏ ଦୃଷ୍ଟିରୁ ମାପକଗୁଡ଼ିକ ଏକ ବିଶିଷ୍ଟ ଭିତ୍ତି ଉପରେ ପ୍ରତିଷ୍ଠିତ । ଏଗୁଡ଼ିକର ବ୍ୟବହାର ମାଧ୍ୟମରେ ଉଦୀୟମାନ ପ୍ରତିଭାର ଚିହ୍ନଟ କରି ଅନୁକୂଳ ପରିବେଶ ସୃଷ୍ଟି ହେଲେ ଦେଶ ଓ ଜାତିର ସମ୍ମୁଖ ସମ୍ଭାବନା ବୃଦ୍ଧି ପାଇବ ।

# ସୃଜନଶୀଳତାର ଉନ୍ମେଷ

ଗବେଷଣାଗାର ବା ତାଲିମ କେନ୍ଦ୍ରରେ ଶିକ୍ଷା ଦେଇ କବି ବା ସାହିତ୍ୟିକ ସୃଷ୍ଟି କରିବା ଯୋଜନାଟି ଅପାତତଃ ହାସ୍ୟାସ୍ପଦ ମନେହୋଇପାରେ । ପ୍ରଶ୍ନ ଉଠିପାରେ, ସୀମିତ ପରିସର ଓ ସୀମିତ ସମ୍ବଳ ବିନିଯୋଗରେ କୌଣସି ବ୍ୟକ୍ତିକୁ କବି ବା ସାହିତ୍ୟିକ କରିବା କ'ଣ ସମ୍ଭବ ? କେବଳ କବି କାହିଁକି, ବୈଜ୍ଞାନିକ, ଚିତ୍ରଶିଳ୍ପୀ, ସ୍ଥାପତ୍ୟ ଶିଳ୍ପୀ ପ୍ରଭୃତି ସୃଜନଶୀଳ ବ୍ୟକ୍ତିମାନଙ୍କର ଅଭ୍ୟୁଦୟ ଯାଦୃଚ୍ଛିକ ଭାବରେ ଘଟେ । ହଠାତ୍ କବିର ଆବିର୍ଭାବ ଅଜଣାଗତ । ତେବେ ସୃଜନଶୀଳତାର ଉନ୍ମେଷ ଲାଗି ଯେ ଶିକ୍ଷା ଦୀକ୍ଷା ବା ତାଲିମ ପ୍ରଦାନର ଭୂମିକା ଆଦୌ ନାହିଁ, ସେ କଥା କହି ହେବ ନାହିଁ । ବିଭିନ୍ନ ବ୍ୟକ୍ତି, ସମ୍ପୃକ୍ତ କାରଣ ଓ କେତେକ ସାମାଜିକ ପରିବେଶ ସୃଜନଶୀଳତାକୁ ତ୍ୱରାନ୍ୱିତ କରୁଥିଲେ ମଧ୍ୟ, କେତେକ ବିଶିଷ୍ଟ ଧରଣର ଶିକ୍ଷା ଯୋଜନା ଏ ବିକାଶରେ ସହାୟକ ହୋଇଥାଏ । ପ୍ରତି ଗୋଷ୍ଠୀ ଓ ସମାଜରେ ସୃଜନଶୀଳତା ଏକ ବିଶିଷ୍ଟ ସମ୍ପଦ ହୋଇଥିବାରୁ ସୃଜନସହାୟକ ଶିକ୍ଷାର ଆଲୋଚନା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ।

ସୃଜନସହାୟକ ଶିକ୍ଷା ବ୍ୟବସ୍ଥାର ଆଲୋଚନା ପୂର୍ବରୁ ପ୍ରଥମେ ସୃଜନଶୀଳତାର ସଂଜ୍ଞା ଦେବାକୁ ପଡ଼ିବ । ଯେଉଁ ପଦ୍ଧତିରେ ନୂତନ ଜିନିଷର ଆବିର୍ଭାବ ଘଟେ, ତାକୁ ସୃଜନ ପ୍ରକ୍ରିୟା କୁହାଯାଇପାରେ । ଏହି ଜିନିଷକୁ ବାସ୍ତବ ରୂପରେଖ ଦେବାର ସାମର୍ଥ୍ୟ ହିଁ ସୃଜନଶୀଳତା । ଅବଶ୍ୟ ଏହି ନୂତନ ଜିନିଷର ଆବିର୍ଭାବ ପୁରାତନ ଜିନିଷରୁ ହୋଇପାରେ, ତଥାପି ଏ ପଦାର୍ଥଟି କେତେକାଂଶରେ ନୂତନ ହେବା ନିତାନ୍ତ ଆବଶ୍ୟକ ।

ସୃଜନଶୀଳତାର ଏକ ମୁଖ୍ୟ ବିଭାଗ ହେଉଛି ମୌଳିକତା । ମୌଳିକ ଚିନ୍ତା, ଭାବନା ବା ପଦାର୍ଥଟି କେବଳ ଚିନ୍ତା କରିଥିବା ବ୍ୟକ୍ତି ନିକଟରେ ନୂତନ ହେଲେ ଚଳିବ ନାହିଁ । ତାହା ପ୍ରତ୍ୟେକଙ୍କ ପାଇଁ ନୂଆ ହୋଇଥିବା ଆବଶ୍ୟକ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ବୈଜ୍ଞାନିକ ଅଭ୍ୟୁଦୟର ପ୍ରାକ୍‌କାଳରେ ଉଦ୍‌ଭାବିତ ତତ୍ତ୍ୱ ଓ ଆଇନଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱ ମୌଳିକତାର ନିଦର୍ଶନ । ଏ ଦୁଇଟିର ଉନ୍ମେଷ ନୂତନ ଶକ୍ତିର ସନ୍ଧାନ ଦେଲା ଏବଂ ଜନଜୀବନରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଲା ।

ମୌଳିକତା ସହିତ ଜଡ଼ିତ ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି ଯେ, ସୃଜନାତ୍ମକ ଚିନ୍ତା ବା ପଦାର୍ଥଟି ଅନନ୍ୟସାଧାରଣ । ଏଭଳି ଚିନ୍ତା ବା ପଦାର୍ଥ ପ୍ରାପ୍ତିର ଆଶା ଖୁବ୍ କମ । ଏହାକୁ ଏକ ପରିସଂଖ୍ୟାନାତ୍ମକ ଢଙ୍ଗରୁ ବିଚାର କରାଯାଇପାରେ । ଅର୍ଥାତ୍ ହଜାରରେ ଜଣଙ୍କଠାରୁ ଏପରି ଦାନ ଆଶା କରାଯାଇପାରେ । ମାତ୍ର କେବଳ ଅସାଧାରଣତାକୁ ନେଇ କୌଣସି କାର୍ଯ୍ୟକୁ ସୃଜନଶୀଳତା କହିବା ସମୀଚୀନ ନୁହେଁ ।

କୌଣସି ବ୍ୟକ୍ତିର ପ୍ରଳାପ କିମ୍ବା ଅଙ୍କତାପ୍ରସୂତ କଥା ବା ବିକ୍ଷିପ୍ତ ଚିନ୍ତାଧାରାକୁ ନେଇ ସୃଜନଶୀଳତାର ସଙ୍କଳନ କରିବା ଅର୍ଥହୀନ । ସୁତରାଂ ଅନନ୍ୟସାଧାରଣ ହେବା ସଙ୍ଗେ ସଙ୍ଗେ ସୃଜନାତ୍ମକ ଦାନ ବାସ୍ତବମୁଖୀ ହୋଇଥାଏ ।

ସୃଜନଶୀଳତାର ସଜ୍ଞା ଯାହା ହେଉନା କାହିଁକି, ସୃଜନାତ୍ମକ ଚିନ୍ତା, ଭାବନା ବା ଜିନିଷକୁ ଚିହ୍ନଟ କରିବାରେ ବହୁ ଲୋକ ସକ୍ଷମ । ବ୍ୟକ୍ତିର ସୃଜନଶୀଳତାକୁ ମାପିବା ପାଇଁ ବିଭିନ୍ନ ମାପକର ମଧ୍ୟ ଅଭାବ ନାହିଁ । କିନ୍ତୁ ତାର ଆଲୋଚନା ଏହାର ପରିସର ବହିର୍ଭୂତ । କେଉଁ ଉପାୟରେ ସୃଜନାତ୍ମକ ପ୍ରକ୍ରିୟାକୁ ଉଦ୍ରେକ କରାଯାଇ-ପାରେ, ତାର ଆଲୋଚନା ବେଶ୍ କୌତୂହଳ ପୂର୍ଣ୍ଣ ।

ସୀମିତ ପରିସର ମଧ୍ୟରେ ସୃଜନଶୀଳତାର ଉନ୍ମେଷ ଓ ବିକାଶ ଲାଗି ଯେଉଁ ସମସ୍ତ ପନ୍ଥା ଅନୁସୃତ ହୁଏ, ତାର ଦୁଇଟି ମୁଖ୍ୟ ପଦ୍ଧତି ରହିଛି । ପ୍ରଥମଟି ମସ୍ତିଷ୍କ ଝଡ଼ (Brain Storming) ଓ ଦ୍ୱିତୀୟଟି Synectics ନାମରେ ପରିଚିତ ।

ଆଲେକ୍ସ ଅସବର୍ଣ୍ଣ ୧୯୫୩ ମସିହାରେ Applied Imagination ବହିଟି ଲେଖିଲା ପରେ ଏହା ଚିନ୍ତା ରାଜ୍ୟରେ ଭାବନା ସୃଷ୍ଟି କଲା । ଅସବର୍ଣ୍ଣଙ୍କର ଭାବନା-ପ୍ରସୂତ ମସ୍ତିଷ୍କ ଝଡ଼ (Brain Storming) ଶବ୍ଦଟି ଖୁବ୍ ଲୋକପ୍ରିୟ ହୋଇ ଉଠିଲା । ପରେ ପରେ ବିଖ୍ୟାତ ମନୋବିଜ୍ଞାନୀ ପାର୍ନେସ୍ ଓ ଅନ୍ୟମାନେ ବିଧିବଦ୍ଧ ତାଲିମ ଦାନର ଆୟୋଜନ କରି ଅସବର୍ଣ୍ଣଙ୍କ ବର୍ଣ୍ଣିତ ପଦ୍ଧତି ଅନୁସାରେ ସୃଜନଶୀଳତାର ବିକାଶ ପାଇଁ ଉଦ୍ୟମ ଆରମ୍ଭ କଲେ ।

ମସ୍ତିଷ୍କ-ଝଡ଼ର ମୌଳିକ ବିଭବ ହେଉଛି ଭାବନା ଓ ଧାରଣାର ପ୍ରବାହ ସମୟରେ ଯେ କୌଣସି ମୂଲ୍ୟାୟନକୁ ବାଦ ଦେବା । ଅର୍ଥାତ୍ ଭାବନା ବା ଧାରଣାର ଝଡ଼ ଚାଲିଥିଲା ବେଳେ ସମାଲୋଚନାକୁ ସ୍ଥାନ ନ ଦେବା । ସମାଲୋଚନା ମୂଳକ ପ୍ରବୃତ୍ତି ଏହି ଭାବନାର ଗତିଧାରାକୁ ବ୍ୟାହତ କରେ ଏବଂ ଏକ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଭାବନାର ପରିମାଣକୁ ମଧ୍ୟ ହ୍ରାସ କରେ । ଫଳତଃ ମସ୍ତିଷ୍କ ଝଡ଼ ପଦ୍ଧତିରେ ବିଳମ୍ବିତ ବିଚାର ନୀତି ଅବଲମ୍ବିତ ହୁଏ । ପ୍ରଥମେ ଯେତେ ବେଶୀ ସମ୍ଭବ ଧାରଣା ଓ ଭାବନା ସୃଷ୍ଟି ହୁଏ, ସେ ସବୁକୁ ଅବାଧ ଗତିରେ ଆସିବାକୁ ସୁଯୋଗ ଦିଆଯାଏ ।

ଏହି ମସ୍ତିଷ୍କ-ଝଡ଼ର ଚାରୋଟି ନିୟମ ଅଛି । ପ୍ରଥମତଃ ପ୍ରତିକୂଳ ସମାଲୋଚନା ନିଷେଧ କରାଯାଏ । ଯେଉଁ ବ୍ୟକ୍ତିଙ୍କୁ ନୂତନ ଭାବନା ବା ଧାରଣା ପ୍ରଦାନ କରିବା ପାଇଁ ଉତ୍ସାହିତ କରାଯାଉଛି, ତା ପ୍ରତି ପ୍ରତିକୂଳ ସମାଲୋଚନା କରାଯାଏ ନାହିଁ । ଦ୍ୱିତୀୟତଃ ସ୍ୱଭାବ ସ୍ୱଚ୍ଛନ୍ଦ ଗତିରେ ଭାବନା ପ୍ରକାଶ କରିବାକୁ ବ୍ୟକ୍ତିକୁ ଆହ୍ୱାନ କରାଯାଏ । ତୃତୀୟତଃ ଭାବନା ଓ ଧାରଣାର ପରିମାଣ ବୃଦ୍ଧି ପାଇଁ ଗୁରୁତ୍ୱ ଆରୋପ କରାଯାଏ । ଚତୁର୍ଥତଃ ବ୍ୟକ୍ତି ସୃଷ୍ଟି କରୁଥିବା ଧାରଣା ବା ଭାବନା ଗୁଡ଼ିକର ସଂଯୋଗ ଓ ମେଳ କରି ଯେପରି

ନୂତନ ଧାରଣା ଦେଇ ପାରିବ ଏବଂ ପରବର୍ତ୍ତୀ ଧାରଣା ଗୁଡ଼ିକ ଅପେକ୍ଷାକୃତ ଉନ୍ନତ ହେବ, ସେ ଦିଗରେ ଉତ୍ସାହ ଦିଆଯାଏ । ମସ୍ତିଷ୍କ ଝଡ଼କୁ ବ୍ୟକ୍ତିଗତ ପଦ୍ଧତି ବା ଦଳଗତ ପଦ୍ଧତିରେ ପ୍ରୟୋଗ କରାଯାଇପାରେ । କୌଣସି ଜଣେ ବ୍ୟକ୍ତି ଏକାକୀ ଏ ମସ୍ତିଷ୍କ-ଝଡ଼ ତାଲିମର ସୁଯୋଗ ନେଇ ପାରନ୍ତି । କେତେକ ବ୍ୟକ୍ତି ଏକାଠି ହୋଇ ଦଳଗତ ଭାବରେ ମଧ୍ୟ ମସ୍ତିଷ୍କ ଝଡ଼ ତାଲିମ ଗ୍ରହଣ କରି ପାରନ୍ତି । ପରୀକ୍ଷା କରାଯାଇ ଦେଖାଯାଇଛି ଯେ, ଦଳଗତ ପରିସ୍ଥିତିରେ ମୁଣ୍ଡପିଛା ଅପେକ୍ଷାକୃତ ଅଧିକ ଧାରଣା ବା ଭାବନାର ଉଦ୍ରେକ ହୁଏ ।

ଗୋଟିଏ ଉଦାହରଣ ଦେଇ ଦଳଗତ ମସ୍ତିଷ୍କ ଝଡ଼ର ତାଲିମକୁ ସୁସ୍ପଷ୍ଟ କରାଯାଇପାରେ । ପ୍ରଥମେ ଦଳଟିକୁ ଗୋଟିଏ ସମସ୍ୟା ଦିଆଯାଏ । ଧରାଯାଉ ଦଳେ ପିଲାଙ୍କୁ ପଚରାଗଲା— 'ଘର କେଉଁ କେଉଁ ଉପାୟରେ ତିଆରି କରାଯାଇ ପାରିବ ?' ସମସ୍ୟାଟି ଦେଲା ପରେ ସମାଧାନ ପାଇଁ ପିଲାମାନଙ୍କୁ ଉତ୍ସାହିତ କରାଯାଏ । ମସ୍ତିଷ୍କ ଝଡ଼ର ଦୁଇଟି ସ୍ତର ଅଛି— ପ୍ରଥମ ସ୍ତରଟି ନୀଳ ଆଲୋକ ସ୍ତର । ଏ ସ୍ତରରେ ଯେଉଁ ପିଲା ଯେତେ ବେଶୀ ଉପାୟର ଅବତାରଣା କରେ, ସେତେ ଭଲ । ଏ ସ୍ତରରେ କୌଣସି ପ୍ରକାର ମୂଲ୍ୟାଙ୍କନ, ସମାଲୋଚନା ବା ଦୋଷ ଗୁଣର ବିଚାର କରାଯାଏ ନାହିଁ । ସେମାନଙ୍କ ଭାବନା ପ୍ରକାଶକୁ ମୁକ୍ତ ଅବାଧ ଭାବରେ ସୁଯୋଗ ଦିଆଯାଏ । କୌଣସି ପିଲା ଯଦି କହେ ଯେ, ଘର ତିଆରି କରିବାକୁ ହେଲେ କେଟଲିଟିକୁ ଗୋଟିଏ କୋଠାଘର ପାଖରେ ଭୂମିରେ ନିଆଁ ଉପରେ ରଖିବାକୁ ପଡ଼ିବ ଏବଂ କୋଠା ଉପରେ କ୍ଷୀର ଘି, ଚିନି ଆଦି ପକାଇବାକୁ ପଡ଼ିବ, ତା ମଧ୍ୟ ଗ୍ରହଣ କରାଯିବ । ଖୁବ୍ ବେଶୀ ସମାଧାନ ଉପାୟ ପ୍ରାପ୍ତି ଦିଗରେ ସବୁ ପ୍ରକାର ଉତ୍ସାହ ଦିଆଯିବ ।

ମସ୍ତିଷ୍କ ଝଡ଼ର ଦ୍ୱିତୀୟ ସ୍ତରଟି ଲାଲ ଆଲୋକର ସ୍ତର । ଏ ସ୍ତରରେ ଦଳକୁ ଜଣାଇ ଦିଆଯିବ ଯେ ସମସ୍ୟାର ସମାଧାନ ପାଇଁ ସଂଖ୍ୟାଧିକ ପନ୍ଥା ସୂଚିତ ହୋଇଥିଲେ ହେଁ ପ୍ରତିପନ୍ଥାର କେତେକ ସୁଗୁଣ ଓ ଦୁର୍ଗୁଣ ରହିଛି । ସେମାନେ ସେ ସବୁର ବିଚାର ଆଲୋଚନା କରି ସର୍ବୋତ୍କୃଷ୍ଟ ପନ୍ଥାଟି ସ୍ଥିର କରିବା ଉଚିତ । ଦ୍ୱିତୀୟ ସ୍ତରରେ ମୂଲ୍ୟାଙ୍କନ ପ୍ରତି ନିର୍ଦ୍ଦେଶ ଦିଆଗଲେ ମଧ୍ୟ ପରିତ୍ୟକ୍ତ ପନ୍ଥାଟିକୁ ଯେପରି କଠୋର ସମାଲୋଚନା ନ କରାଯାଇ ମୂଲ୍ୟାୟନ କରାଯାଏ, ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ସେହିପରି ପରିତ୍ୟକ୍ତ ପନ୍ଥାଟିକୁ ଦର୍ଶାଇଥିବା ପିଲାଟି ପ୍ରତି ମଧ୍ୟ ଅବହେଳା ନ ଦେଖାଇ ତାଙ୍କୁ କିଛି ପରିମାଣରେ ଧନ୍ୟବାଦ ଦେବାକୁ ପଡ଼ିବ । ମସ୍ତିଷ୍କ ଝଡ଼ ପଦ୍ଧତିର ପ୍ରୟୋଗ ଦ୍ୱାରା ସୃଜନଶୀଳତାର ଉନ୍ମେଷ ଘଟେ ।

ଅନେକ ସ୍ଥଳରେ ମସ୍ତିଷ୍କ ଝଡ଼ର କାର୍ଯ୍ୟକାରିତା ସୀମିତ । କେବଳ କେତେକ ପ୍ରକାରର ସମସ୍ୟା ସମାଧାନ ପାଇଁ ମସ୍ତିଷ୍କ ଝଡ଼ ପ୍ରୟୋଗ କରାଯାଇପାରେ । ସମସ୍ୟା

ସମାଧାନ ପାଇଁ ଖୁବ୍ ଉଚ୍ଚକୋଟୀର ବୌଦ୍ଧିକ ପ୍ରୟୋଗ ଓ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଆବଶ୍ୟକ ହେଲେ ମସ୍ତିଷ୍କ ଝଡ଼ର ପ୍ରୟୋଗ ଆଶାନୁରୂପ ଫଳ ଦିଏନାହିଁ । ଏପରି କ୍ଷେତ୍ରରେ ସୃଜନାତ୍ମକ ସମସ୍ୟା ସମାଧାନର ସାମଗ୍ରିକ ପ୍ରକ୍ରିୟାକୁ ଜାଗ୍ରତ କରିବାକୁ ପଡ଼ିଥାଏ । ଏପରି ସଂଶ୍ଳେଷଣାତ୍ମକ ପ୍ରକ୍ରିୟାକୁ Synectics କୁହାଯାଏ । Synectics ଅର୍ଥ ହେଉଛି ଆପାତତଃ ସଙ୍ଗତିହୀନ ବିଭିନ୍ନ ବସ୍ତୁକୁ ଏକତ୍ର କରିବା । ଏ ପଦ୍ଧତିର ମୌଳିକ ଲକ୍ଷ୍ୟ ହେଉଛି ନୂତନ ସମାଧାନ ପ୍ରାପ୍ତି ପାଇଁ ସଚେତନ କରାଇଦେବା ଏବଂ ଏହି ସମାଧାନ ପ୍ରକ୍ରିୟା ସଙ୍ଘଟିତ ହେଉଥିଲା ବେଳେ ବ୍ୟକ୍ତିକୁ ଅନ୍ତର୍ଦୃଷ୍ଟି ପ୍ରଦାନ କରିବା ଫଳରେ ଉପଯୋଗୀ ଅବସ୍ଥା ଗୁଡ଼ିକର ଆୟୋଜନ କରି ବ୍ୟକ୍ତି ନୂତନତ୍ୱର ସନ୍ଧାନ ଦିଏ ଏବଂ ନିଜର ଲକ୍ଷ୍ୟ ପୂରଣ କରେ । ମସ୍ତିଷ୍କ ଝଡ଼ ପରି ଏହା ବ୍ୟକ୍ତିଗତ ବା ଦଳଗତ ପରିପ୍ରେକ୍ଷୀରେ ଶିକ୍ଷା ଦିଆଯାଇପାରେ ।

ଏହା ଦୁଇଟି କୌଶଳ ଉପରେ ନିର୍ଭର କରେ । ପ୍ରଥମଟି ହେଉଛି ଅପରିଚିତ ବସ୍ତୁ ବା ଭାବନାକୁ ପରିଚିତ ରୂପରେଖ ଦେବା । ଦ୍ୱିତୀୟଟି ହେଉଛି ପରିଚିତ ବସ୍ତୁ ବା ଭାବନାକୁ ନୂତନ ଭାବରେ ଉପସ୍ଥାପିତ କରିବା । ଚାରୋଟି ଉପାୟରେ ଏ ଲକ୍ଷ୍ୟ ଦୁଇଟି ହାସଲ କରାଯାଇପାରେ ।

ପ୍ରଥମଟି ହେଉଛି ବ୍ୟକ୍ତିଗତ ଦୃଷ୍ଟାନ୍ତ (Personal Analogy) । ଏ କ୍ଷେତ୍ରରେ ବ୍ୟକ୍ତି ନିଜକୁ ଅନ୍ୟ ଏକ ଜୀବ ବା ବସ୍ତୁର ପରିକଳ୍ପନା କରି ସମସ୍ୟା ସମାଧାନ କରନ୍ତି । କଥିତ ଅଛି ନିଜର ଲାଞ୍ଜକୁ ପାଟିରେ ପୂରାଇଥିବା ଗୋଟିଏ ସାପ ଭଳି ନିଜକୁ ମନେ କରି କେକଲ୍ ବେଞ୍ଜିନ୍ ଅଣୁର ଗଠନ ବିଷୟରେ ବିଜ୍ଞାନ ଜଗତ୍‌କୁ ସନ୍ଧାନ ଦେଇଥିଲେ । ବେଞ୍ଜିନ୍ ଅଣୁରେ ଅଙ୍ଗାର ପରମାଣୁ ଗୁଡ଼ିକ ଧାଡ଼ିବାନ୍ଧି ନ ରହି ମୁଦିଭଳି ରହିଛନ୍ତି ବୋଲି ସୂଚାଇଥିଲେ ।

ବ୍ୟକ୍ତିଗତ ଦୃଷ୍ଟାନ୍ତ ଅନେକ ସମୟରେ ପ୍ରତ୍ୟକ୍ଷ ଦୃଷ୍ଟାନ୍ତ (Direct Analogy)ର ରୂପ ନିଏ । ଟେଲିଫୋନର ଉଦ୍‌ଭାବକ ଗ୍ରାହାମ୍ ବେଲ୍ ନିଜର ଉଦ୍ଭାବନ ବିଷୟରେ ଲେଖିଛନ୍ତି ଯେ —'ମୋ ମନକୁ ଧାରଣା ଆସିଲା ଯେ, ମଣିଷ କାନର ହାଡ଼ଗୁଡ଼ିକୁ ଚାଳିତ କରୁଥିବା ସୂକ୍ଷ୍ମ ପତଳା (membrane) ତୁଳନାରେ କାନର ହାଡ଼ଗୁଡ଼ିକ ଖୁବ୍ ଶକ୍ତ । ଯଦି ସୂକ୍ଷ୍ମ ଓ ପତଳା membraneଟି ଶକ୍ତିଶାଳୀ ହାଡ଼କୁ ହଲାଇଦେଇ ପାରୁଛି, ତେବେ ଟିକିଏ ମୋଟା ବା ଶକ୍ତ membrane ଖଣ୍ଡ ମୋର ଲୁହା ଖଣ୍ଡକୁ ହଲାଇ ନ ପାରିବ କାହିଁକି ?' ଫଳରେ ଟେଲିଫୋନର ପରିକଳ୍ପନା ସମ୍ଭବ ହେଲା । ଏଠାରେ ଲକ୍ଷ୍ୟ କରିବାର କଥା ଯେ, ଗ୍ରାହାମ୍ ବେଲଙ୍କ ସମସ୍ୟାର ବିଭିନ୍ନ ବସ୍ତୁ ଭାବନାକୁ ଅନ୍ୟ ଏକ ପରିସ୍ଥିତିର ବସ୍ତୁ ଓ ଭାବନା ସହିତ ମିଳାଇ ସେ ସମାଧାନ ପାଇଛନ୍ତି । ସୁତରାଂ ବ୍ୟକ୍ତି ନିଜ ସମସ୍ୟାର ଅନୁରୂପ ଉଦାହରଣ ଅନ୍ୟ କ୍ଷେତ୍ରରେ ଯେପରି ପାଇପାରିବ, ସେ ସମ୍ପର୍କରେ ଶିକ୍ଷା ଦିଆଯାଏ ।

ତୃତୀୟଟି ହେଉଛି ପ୍ରତୀକଧର୍ମୀ ଦୃଷ୍ଟାନ୍ତ (Symbolic Analogy)। ଏହା ସାଧାରଣତଃ ଦୃଷ୍ଟିଗ୍ରାହ୍ୟ ଚିତ୍ରକଳ୍ପ (Visual image) । ସମାଧାନର ସନ୍ଧାନ କରୁଥିବା ବ୍ୟକ୍ତି ବିଭିନ୍ନ ଅପରିଚିତ ବସ୍ତୁର ଛବି ମନ ମଧ୍ୟକୁ ଆଣି ସମାଧାନ ପାଇବାକୁ ଚେଷ୍ଟା କରେ । ଜୈବିକ ଦୃଷ୍ଟାନ୍ତ(Biological Analogy) ପ୍ରତୀକଧର୍ମୀ ଦୃଷ୍ଟାନ୍ତର ଏକ ଢଙ୍ଗ । ମଣିଷ ବା ଜୀବଜନ୍ତୁଙ୍କ ଶରୀରର ଛବିକୁ ମନକୁ ଆଣି ବହୁ ମେକାନିକାଲ୍ ଜିନିଷ ବାହାର କରାଯାଇଛି । ଚତୁର୍ଥ ପ୍ରଣାଳୀଟି ହେଉଛି ମନୋବିଳାସ (Fantasy) । ଗତାନୁଗତିକ ନିୟମରେ ପରିଗୃହୀତ ଭାବନାରୁ ନିଜକୁ ମୁକ୍ତ କରି ଏବଂ ଚତୁଃପାର୍ଶ୍ୱର ସୀମିତ ସମ୍ବଳର ଊର୍ଦ୍ଧ୍ୱକୁ ଯିବା ପାଇଁ Fantasy ଏକ ସୁଗମ ମାଧ୍ୟମ । ଭାବନାର ମୌଳିକତା ବୃଦ୍ଧିପାଇଁ ବେଳେବେଳେ ବ୍ୟକ୍ତିକୁ Fantasyରେ ମନୋନିବେଶ କରିବା ପାଇଁ ଉତ୍ସାହିତ କରାଯାଏ । ୧୯୫୦ ମସିହାରେ ଆମେରିକାର ବ୍ୟକ୍ତିତ୍ୱ ମୂଲ୍ୟାୟନ ଓ ଗବେଷଣା ସଂସ୍ଥା ଦ୍ୱାରା ଏ ପଦ୍ଧତିଟି ବ୍ୟବହାର କରାଯାଇ ସୁଫଳ ମିଳିଛି । ସ୍ନାତକ ଛାତ୍ରମାନଙ୍କୁ Fantasy କରିବାକୁ ଦିଆଯାଇ ଦେଖାଯାଇଛି ଯେ ସେମାନଙ୍କ ମୌଳିକ ଚିନ୍ତାଧାରା ବୃଦ୍ଧିରେ ଏ ପଦ୍ଧତି ବିଶେଷ ସହାୟକ ।

Synecticsର ପ୍ରଣାଳୀଗୁଡିକ ମନୋବିଜ୍ଞାନୀ ଗର୍ଡ଼ନ ବିଶେଷ ଭାବରେ ପ୍ରୟୋଗ କରିଛନ୍ତି । ତାଙ୍କ କାର୍ଯ୍ୟକ୍ରମର ବିଶେଷ ଲକ୍ଷ୍ୟ ଥିଲା ସ୍କୁଲ୍ କଲେଜ ବା ଅନ୍ୟାନ୍ୟ ଅନୁଷ୍ଠାନରେ ଏ ପ୍ରଣାଳୀ ଗୁଡ଼ିକର ପ୍ରୟୋଗ କରି ଶିକ୍ଷକ ଓ ଛାତ୍ର ଛାତ୍ରୀମାନଙ୍କର ସୃଜନଶୀଳତା ବୃଦ୍ଧି କରିବା । ଅନ୍ୟ ଲକ୍ଷ୍ୟଟି ଥିଲା ସୃଜନଶୀଳ ଛାତ୍ର ତିଆରି କରି ଶିକ୍ଷା ଆୟତନର ପରିବେଶରେ ଏକ ବିପ୍ଳବାତ୍ମକ ପରିବର୍ତ୍ତନ ଆଣିବା । ଏ ଲକ୍ଷ୍ୟ ପୂର୍ଣ୍ଣମାତ୍ରାରେ ସଫଳ ହୋଇପାରି ନାହିଁ । ପ୍ରତିଦେଶରେ ଶିକ୍ଷା ସଂସ୍ଥାଗୁଡ଼ିକ ଏକ ଆବଦ୍ଧ ସଂସ୍ଥା ରୂପେ କାମ କରେ । ପ୍ରଚଳିତ ଶିକ୍ଷା ବ୍ୟବସ୍ଥାକୁ ଟାଣି ରଖିବା ଏକ ସହଜ ସ୍ୱଭାବ ଗୁଣ । ଫଳରେ ଗର୍ଡ଼ନଙ୍କ ପ୍ରସ୍ତାବିତ ପଦ୍ଧତି ପୂର୍ଣ୍ଣମାତ୍ରାରେ କାମ କରିବାର ସୁଯୋଗ ପାଇନାହିଁ ।

ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ଯେ ପୂର୍ବନିର୍ଦ୍ଦିଷ୍ଟ ପ୍ରଣାଳୀରେ ଓ ସୀମିତ ପରିସର ମଧ୍ୟରେ ଖ୍ୟାତନାମା ସୃଜନଶୀଳ ବ୍ୟକ୍ତି ଗଠନ ସହଜସାଧ୍ୟ ନୁହେଁ । କିନ୍ତୁ ସେ ଦିଗରେ ଯେ ଦାୟିତ୍ୱ ସମ୍ପନ୍ନ ବ୍ୟକ୍ତି ବା ଗୋଷ୍ଠୀର କିଛି କରିବାର ନାହିଁ—ସେକଥା ମଧ୍ୟ ଠିକ୍ ନୁହେଁ । ବିଭିନ୍ନ ବ୍ୟକ୍ତିଙ୍କର ମତାମତକୁ ସମ୍ମାନ ଦେବା, କୌଣସି ଲୋକ ଭୁଲ ଉତ୍ତର ଦେଲେ ସେଥିରେ ନ ହସି ତାକୁ ବୁଝାଇ ଦେବା ଓ ସର୍ବୋପରି ଆଲୋଚିତ ପ୍ରଣାଳୀ ଗୁଡ଼ିକର ପ୍ରୟୋଗ କରି ଏକ ସୃଜନକ୍ଷମ ସମାଜ ସୃଷ୍ଟିର ସମ୍ଭାବନା ବୃଦ୍ଧି କରିବା ଅସମ୍ଭବ ନୁହେଁ ।

# ସମାଜ ଓ ସୃଜନଶୀଳତା

ସୃଜନଶୀଳତା କେବଳ ଏକ ବ୍ୟକ୍ତିଗତ ସମ୍ପଦ ନୁହେଁ, ଏହା ଏକ ସାମାଜିକ ବିଭବ । ଏହାର ପରିପ୍ରକାଶ ଅନେକ ସମୟରେ ସମାଜର ସୀମାରେଖା ଅତିକ୍ରମ କରି ମାନବଗୋଷ୍ଠୀର ବୃହତ୍ତର ସମାଜକୁ ସମୃଦ୍ଧ କରିଥାଏ । ସେକ୍‌ସପିଅରଙ୍କ ସାହିତ୍ୟ, ଲିଓନାର୍ଡୋ-ଦା-ଭିନ୍‌ସିଙ୍କ ଚିତ୍ରକଳା ଏବଂ ଆଇନ୍‌ଷ୍ଟାଇନ୍‌ଙ୍କ ବିଜ୍ଞାନଚିନ୍ତା କୌଣସି ଭୌଗୋଳିକ ପରିସର ମଧ୍ୟରେ ସୀମିତ ନୁହେଁ । କେବଳ ବ୍ୟକ୍ତିସ୍ତରରେ ନୁହେଁ, ଯୌଥସ୍ତରରେ ମଧ୍ୟ ସୃଜନଶୀଳତାର ସ୍ଫୁରଣ ହୋଇଥାଏ । ଗ୍ରୀସ୍‌ରେ ଏକ୍ରୋପଲିସର ସ୍ଥାପତ୍ୟକଳା ବା ଉତ୍କଳୀୟ ଭାସ୍କର୍ଯ୍ୟ ଶିଳ୍ପ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ସହିତ ସମ୍ପୃକ୍ତ ନ ହେଲେ ମଧ୍ୟ ଏହା ଯେ ଏକ ଗୋଷ୍ଠୀଗତ ସୃଜନଶୀଳତାର ସାର୍ଥକ ଅଭିବ୍ୟକ୍ତି, ସେଥିରେ ସନ୍ଦେହ ନାହିଁ । ପ୍ରତ୍ୟେକ ରାଷ୍ଟ୍ର ବା ସମାଜ ସୃଜନଶୀଳତାର ଗୁରୁତ୍ୱ ଉପଲବ୍ଧି କରି ସୃଜନଶୀଳ ବ୍ୟକ୍ତି ବା ଗୋଷ୍ଠୀକୁ ସମ୍ମାନିତ କରିବାପାଇଁ ଆଗଭର । ତଥାପି ଏହା ଏକ ଦୁରୂହ କାର୍ଯ୍ୟ । କାରଣ ସୃଜନାତ୍ମକ କାର୍ଯ୍ୟ ବା ଦାନର ପରିପ୍ରକାଶ ପୂର୍ବରୁ କେଉଁ ବ୍ୟକ୍ତି ସୃଜନଶୀଳ ଏବଂ କେଉଁ ପ୍ରକାର ବାତାବରଣ ସୃଜନଶୀଳତାର ଉପଯୋଗୀ, ତାହା ନିର୍ଦ୍ଧାରଣ କରିବା ସବୁ ସମୟରେ ସହଜ ନୁହେଁ । ସୃଜନଶୀଳତା ସମ୍ପର୍କରେ ବ୍ୟାପକ ଗବେଷଣାର ଅଭାବ ଏହାକୁ ଅଧିକ ଜଟିଳ କରିଛି ।

ସୃଜନଶୀଳତା ଉପରେ ଯେଉଁ ସମସ୍ତ ଗବେଷଣା ହୋଇଛି, ତାହା ସମାଜ-ବିଜ୍ଞାନୀ ଓ ମନୋବିଜ୍ଞାନୀଙ୍କ କାର୍ଯ୍ୟ ପରିସରଭୁକ୍ତ । ସମାଜ ବିଜ୍ଞାନୀମାନେ ବିଶେଷ ଭାବରେ ସାମାଜିକ ଓ ସାଂସ୍କୃତିକ ପରିବେଶ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ସେମାନଙ୍କ ମତରେ ସମାଜ ଓ ସଂସ୍କୃତିର ଏକ ସୃଜନାତ୍ମକ ପ୍ରବାହ ସୃଜନପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥାଏ । ସମାଜବିଜ୍ଞାନୀ ବାର୍‌ନେଟ୍ ସଂସ୍କୃତିର ମୂଲ୍ୟବୋଧ ଏବଂ ନୋବର ସାଂସ୍କୃତିକ ଅଭିବୃଦ୍ଧିର ରୂପରେଖ ଉପରେ ପ୍ରାଧାନ୍ୟ ଦେଇଛନ୍ତି । ସୃଜନଶୀଳତା ବିଶେଷତଃ ଏହାର ଗୋଷ୍ଠୀଗତ ପରିପ୍ରକାଶର ମୂଲ୍ୟାୟନ ଦିଗରେ ସମାଜରେ ବିଜ୍ଞାନସମ୍ମତ ଭାବଧାରାର ଭୂମିକା ଥିଲେ ହେଁ, ବ୍ୟାବହାରିକ ଦୃଷ୍ଟିକୋଣରୁ ଏହାର କାର୍ଯ୍ୟକାରିତା ସୀମିତ ମନେହୁଏ ।

ଅପର ପକ୍ଷରେ ମନୋବିଜ୍ଞାନୀମାନେ ବ୍ୟକ୍ତିର ବୁଦ୍ଧି, ବ୍ୟକ୍ତିତ୍ୱ ଓ ମନୋବୃତ୍ତି ପରି ବିଭିନ୍ନ ଅନ୍ତର୍ନିହିତ ଦିଗ ପ୍ରତି ଦୃଷ୍ଟିନିକ୍ଷେପ କରିଛନ୍ତି । ସେମାନଙ୍କ ମତରେ କେତେକ ସାମାଜିକ ପରିବେଶ ସୃଜନାତ୍ମକ କାର୍ଯ୍ୟର ଅନୁକୂଳ ହେଲେ ମଧ୍ୟ ଏହାର ଉତ୍ସ ହେଉଛି ବ୍ୟକ୍ତି । ବ୍ୟକ୍ତିର ବିଭିନ୍ନ ଦିଗ ଆଲୋଚନା କରି ସୃଜନଶୀଳତା ସହିତ ସମ୍ପର୍କିତ ଅବସ୍ଥାର ରୂପରେଖ ସ୍ଥିର କରିପାରିଲେ ଏହାକୁ ବୁଝିବା କେବଳ ସହଜ ହେବନାହିଁ;

ଏହାର ଅଭିବୃଦ୍ଧି ଦିଗରେ ପଦକ୍ଷେପ ନିଆଯାଇ ପାରିବ । ମନୋବିଜ୍ଞାନୀମାନଙ୍କର ଏ ମୂଳରେ ଯାଥାର୍ଥ୍ୟ ଥିଲେ ହେଁ ପାରିପାର୍ଶ୍ୱିକ ଅବସ୍ଥାର ଅନୁଧ୍ୟାନ ସୃଜନଶୀଳତାର ଭବିଷ୍ୟ ନିର୍ଦ୍ଧାରଣରେ ଯଥେଷ୍ଟ ସହାୟକ । ଏ ଦୃଷ୍ଟିରୁ ବହୁ ମନୋବିଜ୍ଞାନୀ ବ୍ୟକ୍ତି ଉପରେ ଗୁରୁତ୍ୱ ଆରୋପ କଲେ ମଧ୍ୟ ସାମାଜିକ ବା ଗୋଷ୍ଠୀଗତ ପରିବେଶକୁ ବିସ୍ମରି ନାହାନ୍ତି ।

ମନୋବିଜ୍ଞାନୀ ମାନଙ୍କ ଗବେଷଣାର ମୁଖ୍ୟତଃ ତିନୋଟି ଦିଗ ରହିଛି । ସେଗୁଡ଼ିକ ହେଉଛି ସୃଜନାତ୍ମକ କ୍ରିୟାକୁ ପ୍ରଭାବିତ କରୁଥିବା ପରିବେଶଗତ ଅବସ୍ଥା, ସୃଜନଶୀଳ ବ୍ୟକ୍ତିର ବୁଦ୍ଧି ଓ ବ୍ୟକ୍ତିତ୍ୱ ଏବଂ ସୃଜନଶୀଳତାର ଚିହ୍ନ ଓ ମାପକ । ଗବେଷଣା ବହୁ ଆୟାସସାଧ୍ୟ ହେଲେ ମଧ୍ୟ ଗତ ତିନି ଦଶକ ମଧ୍ୟରେ ବହୁ ଗବେଷଣା ଲବ୍ଧ ତଥ୍ୟ ପ୍ରକାଶ ପାଇଛି । ଶେଷ ଦୁଇଟିର ଆଲୋଚନା ଏ ପ୍ରବନ୍ଧର ପରିସରଭୁକ୍ତ ନୁହେଁ । ଏ ଦୁଇଟି ଉପରେ ବହୁ ଉପାଦେୟ ତଥ୍ୟ ଅନ୍ୟ ସମୟରେ ଆଲୋଚନା କରାଯିବ । ଯେଉଁ ସବୁ ପରିବେଷ୍ଟନୀଗତ ଅବସ୍ଥା ସୃଜନାତ୍ମକ କାର୍ଯ୍ୟକୁ ଦ୍ରୁତତର କରେ, ତାହା ରାଷ୍ଟ୍ର ଓ ସମାଜର ଅନୁଧ୍ୟାନର ବିଷୟ । ଅବଶ୍ୟ ସୃଜନଶୀଳତାର ଦିଗ ଉପରେ ଅଧିକାଂଶ ଗବେଷଣା ପାଶ୍ଚାତ୍ୟ ଦେଶମାନଙ୍କରେ ହୋଇଥିବାରୁ ସେ ସବୁ ଯେ ପୂର୍ଣ୍ଣ ମାତ୍ରାରେ ଆମ ଦେଶ ପକ୍ଷେ ପ୍ରଯୁଜ୍ୟ, ତା ନୁହେଁ । ତଥାପି ବହୁ ଗବେଷଣାଲବ୍ଧ ତଥ୍ୟଗୁଡ଼ିକ ସହାୟତାରେ ଆମ ସାମାଜିକ ପରିବେଶର ବିଭିନ୍ନ ଦିଗ ଏବଂ ସୃଜନଶୀଳତା ସହିତ ତାହାର ସମ୍ପର୍କ ଚିନ୍ତା କରାଯାଇ ପାରେ । ଆମ ଦେଶରେ ସୃଜନଶୀଳତା ସମ୍ପର୍କରେ ଗବେଷଣା ଆରମ୍ଭ ହେଉଛି ଏବଂ ଏହି ଗବେଷଣାର ଦ୍ୱାରା ଦେଶରେ ବିଭିନ୍ନ ପ୍ରକଳ୍ପ ପାଇଁ ପାଶ୍ଚାତ୍ୟ ଦେଶରୁ ମିଳିଥିବା ତଥ୍ୟ ସବୁ ଯେ ସହାୟକ, ଏଥିରେ ସନ୍ଦେହ ନାହିଁ ।

ପାଶ୍ଚାତ୍ୟ ଦେଶ ମାନଙ୍କରେ ମଧ୍ୟ ସୃଜନଶୀଳତା ଉପରେ ଚାଲିଥିବା ଗବେଷଣା ବହୁ ଦିନର ନୁହେଁ । ତଥାପି ଗତ ତିନି ଦଶକ ମଧ୍ୟରେ ବହୁ ଉନ୍ନତି ଘଟିଛି । ଗବେଷଣାର ପ୍ରାରମ୍ଭରେ ମନୋବିଜ୍ଞାନୀମାନେ ପୂର୍ବ ସମାଜ ଉପରେ ଗବେଷଣା ନ କରି ଅନୁଧ୍ୟାନ କରିଛନ୍ତି ବିଶ୍ୱବିଦ୍ୟାଳୟ, ଶିଳ୍ପାନୁଷ୍ଠାନ ଓ ଗବେଷଣାଗାର ପରି ବିଭିନ୍ନ ସଂସ୍ଥା ଉପରେ । ଗବେଷଣାର ଉଚ୍ଚ ମାନଦଣ୍ଡ ରକ୍ଷା ପାଇଁ ଏହା ଯୁକ୍ତିଯୁକ୍ତ । ଅନୁଷ୍ଠାନ ଗୁଡ଼ିକର କେଉଁ କେଉଁ ଦିଗ ସୃଜନାତ୍ମକ କାର୍ଯ୍ୟର ଅନୁକୂଳ, ଏହା ନିର୍ଦ୍ଧାରିତ ହୋଇପାରିଲେ ସମାଜ ସମ୍ପର୍କରେ ଚିନ୍ତା କରିବା ସହଜ ଓ ପଦ୍ଧତି ଉପଯୋଗୀ ହୋଇ ପାରିବ । ୧୯୫୫ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ସଲ୍ଟଲେକ ସହରରେ ଏକ ବିରାଟ ସମ୍ମିଳନୀରେ ବହୁ ପ୍ରଖ୍ୟାତ ମନୋବିଜ୍ଞାନୀ ସୃଜନଶୀଳତା ଉପରେ ସେମାନଙ୍କ ଗବେଷଣାଲବ୍ଧ ତଥ୍ୟ ସବୁ ଆଲୋଚନା କରିଥିଲେ । ସେ ସବୁର ପର୍ଯ୍ୟାପ୍ତ ଆଲୋଚନା ଏଠାରେ ସମ୍ଭବ ନ ହେଲେ ମଧ୍ୟ ତାର ସାରମର୍ମ ପ୍ରଣିଧାନର ବିଷୟ । ପର ବର୍ଷଗୁଡ଼ିକରେ ସମ୍ମିଳନୀର ଆଲୋଚିତ ତଥ୍ୟର ପ୍ରାମାଣିକତା ବୃଦ୍ଧି ପାଇଛି ।

ଟାଯ୍ ନାମକ ଜଣେ ମନୋବୈଜ୍ଞାନିକ ୧୯୬୪ରୁ ୧୯୬୮ ମସିହା ମଧ୍ୟରେ ଗବେଷଣାରେ ଖ୍ୟାତି ଲାଭ କରିଥିବା ଆମେରିକାର ୫୦ଟି ବିଶ୍ୱବିଦ୍ୟାଳୟର ଗବେଷଣା—ବାତାବରଣ ବିଚାର କରିଥିଲେ । ଅବଶ୍ୟ ତାଙ୍କର ଆଭିମୁଖ୍ୟ ଥିଲା କେବଳ ବିଜ୍ଞାନରେ ସୃଜନଶୀଳତାର ବିକାଶ ଅନୁଧ୍ୟାନ କରିବା । ତାଙ୍କ ଗବେଷଣାରେ ଦେଖାଗଲା ଯେ ବିଭିନ୍ନ ବିଷୟରେ ସୃଜନାତ୍ମକ କାର୍ଯ୍ୟର ବିକାଶ ନିମନ୍ତେ ପରିବେଶର ଭିନ୍ନତା ଆବଶ୍ୟକ । ଏ ଭିତ୍ତିରେ ଗଣିତ, ପଦାର୍ଥ ବିଜ୍ଞାନ ଓ ଭୂତତ୍ତ୍ୱରେ ଖ୍ୟାତି ଅର୍ଜନ କରିଥିବା ଅନୁଷ୍ଠାନ-ଗୁଡ଼ିକ ଜୀବବିଜ୍ଞାନ ଓ ମନୋବିଜ୍ଞାନରେ ପରିଚିତ ଅନୁଷ୍ଠାନ ଠାରୁ ଭିନ୍ନ । ପୁଣି ରସାୟନ ଓ ଜୀବବିଜ୍ଞାନରେ ପ୍ରଖ୍ୟାତ ବିଶ୍ୱବିଦ୍ୟାଳୟ ଅନ୍ୟ ଏକ ଦିଗରେ ପୃଥକ । ମୋଟ ଉପରେ ସୃଜନଶୀଳତାକୁ ପରିବେଶ ଯେ ପ୍ରଭାବିତ କରେ, ତାହା ଟାଯ୍‌ଙ୍କ ଗବେଷଣାରେ ସୁସ୍ପଷ୍ଟ । ଦେଶର ରାଜନୈତିକ ଓ ଅର୍ଥନୈତିକ ସ୍ଥିତିଙ୍କ ସହିତ ସୃଜନଶୀଳତାର ସମ୍ପର୍କ ସ୍ୱୀକୃତ ନ ହେଲେ ମଧ୍ୟ ଏକ ଭୌଗୋଳିକ ସୀମାରେଖା ଭିତ୍ତିରେ ସୃଜନଶୀଳତାର ତାରତମ୍ୟ ଦେଖାଗଲା ।

ବିଭିନ୍ନ ଶ୍ରେଣୀର ୨୭ଟି ଅନୁଷ୍ଠାନ ପର୍ଯ୍ୟବେକ୍ଷଣ କରି କାପ୍‌ଲାନ୍ ମତ ଦେଇଛନ୍ତି ଯେ କେବଳ ଉତ୍ପାଦନଶୀଳତା ଓ ଗତାନୁଗତିକତା ଉପରେ ଅତ୍ୟଧିକ ପରିମାଣରେ ଗୁରୁତ୍ୱ ଦେଲେ ସୃଜନାତ୍ମକ କାର୍ଯ୍ୟ ବ୍ୟାହତ ହୁଏ । ସୃଜନଶୀଳତାର ବିକାଶ ପାଇଁ ଗବେଷକଙ୍କୁ କିଛି ପରିମାଣରେ ସ୍ୱାଧୀନ ସମୟ ଦିଆଯିବା ଆବଶ୍ୟକ । ଯେତେବେଳେ ସେ ରୁଟିନ୍ ବନ୍ଧା କାମରୁ ଛୁଟି ପାଇ ଉତ୍ପାଦନ ଓ ରୁଟିନ୍ ସହିତ ଜଡ଼ିତ ନ ଥିବା କିଛି କାର୍ଯ୍ୟ କରିବ । ଏପରି ସ୍ଥଳେ ଗବେଷକ ଲାଭକ୍ଷତିର ବିଚାରରେ ପୀଡ଼ିତ ନ ହୋଇ ସୃଜନାତ୍ମକ କାର୍ଯ୍ୟରେ ସମସ୍ତ ମନୋଯୋଗ କରିବ ।

ମନୋବିଜ୍ଞାନୀ ଷ୍ଟେନ କେତେକ ଶିଳ୍ପାନୁଷ୍ଠାନର ବହୁ ରସାୟନତତ୍ତ୍ୱବିତ୍‌ମାନଙ୍କ ଉପରେ ଗବେଷଣା କରି ଦର୍ଶାଇଛନ୍ତି ଯେ ଜଣେ ବୈଜ୍ଞାନିକ ଗୋଟିଏ ଶିଳ୍ପାନୁଷ୍ଠାନରେ କାମ କଲାବେଳେ ମୁଖ୍ୟତଃ ଦୁଇଟିର ଭୂମିକା ଗ୍ରହଣ କରେ । ବୈଜ୍ଞାନିକ ହିସାବରେ ସେ ବିଶ୍ୱାସ କରେ ଯେ ସେ ଦାବୀ କରୁଥିବା ତଥ୍ୟ ସବୁ ଏକ ପୂର୍ବ ପ୍ରତିଷ୍ଠିତ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ପ୍ରମାଣିତ ହେବା ଉଚିତ । ଗବେଷଣା ଲବ୍ଧ ଫଳ ଏକ ସାମାଜିକ ସହଯୋଗିତାର ପରିଣାମ ଏବଂ ଏହା ଗୋଷ୍ଠୀ ହାତରେ ନ୍ୟସ୍ତ । ଆଉମଧ୍ୟ ଗବେଷଣା ବ୍ୟକ୍ତିଗତ ଉଦ୍ଦେଶ୍ୟର ଊର୍ଦ୍ଧ୍ୱରେ ବୋଲି ବୈଜ୍ଞାନିକ ବିଶ୍ୱାସ କରେ । କିନ୍ତୁ ଜଣେ ବୈଷୟିକ ବ୍ୟକ୍ତିର ଭୂମିକା ନେଇ ସେ ଭାବେ ଯେ ଗବେଷଣା ଲବ୍ଧ ତତ୍ତ୍ୱ କେବଳ କେତେକ ସୁନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ମଧ୍ୟରେ ସୀମିତ ହେବା ଉଚିତ । ଗବେଷଣା ମାଧ୍ୟମରେ ଶିଳ୍ପାନୁଷ୍ଠାନରୁ ଉତ୍ପାଦିତ ଶିଳ୍ପର ବିକାଶ ହେବା ଆବଶ୍ୟକ, ଅନୁଷ୍ଠାନର ଉଚ୍ଚ କର୍ମକର୍ତ୍ତା-ମାନଙ୍କ ସହିତ ଏ ବିଷୟରେ ଯୋଗାଯୋଗ ଦରକାର ଓ କିଛି ପରିମାଣରେ ବ୍ୟକ୍ତିଗତ ସ୍ୱାର୍ଥ ମଧ୍ୟ ଦରକାର । ତୃତୀୟତଃ ସେ ମଧ୍ୟ ଅନୁଷ୍ଠାନର ଜଣେ କର୍ମଚାରୀ । ଏ ଦୃଷ୍ଟିରୁ

ଅବ୍ୟାହତ ଉତ୍ପାଦନଶୀଳତା, ଆର୍ଥିକ ସଚେତନତା, କର୍ମକୁଶଳତା, ଉଚ୍ଚ କର୍ତ୍ତୃପକ୍ଷଙ୍କ ସହିତ ଖାପଖାଇବା ଓ ନିୟମାନୁବର୍ତ୍ତିତା ତାର କାର୍ଯ୍ୟଭୁକ୍ତ । ଏତଦ୍‌ବ୍ୟତୀତ ତାର ଏକ ସାମାଜିକ ଭୂମିକା ମଧ୍ୟ ରହିଛି । ଅନ୍ୟ ତିନୋଟି ଭୂମିକା ପରି ସାମାଜିକ ଭୂମିକାର ଅନୁମୋଦନ ଗୁଡ଼ିକ ଲିଖିତ ଆକାରରେ ନ ଥିଲେ ମଧ୍ୟ ସେଗୁଡ଼ିକର ପରିପୂରଣ ଆବଶ୍ୟକ ହୋଇଥାଏ । ବିଭିନ୍ନ ଶିଳ୍ପାନୁଷ୍ଠାନରେ ଏ ଚାରୋଟି ଭୂମିକାର ଆପେକ୍ଷିକ ଗୁରୁତ୍ୱ ଭିନ୍ନ । ସୃଜନାତ୍ମକ କାର୍ଯ୍ୟର ବିକାଶ ଲାଗି କେଉଁ ଭୂମିକା ଉପରେ କେତେ ଅଧିକ ଗୁରୁତ୍ୱ ଦିଆଯିବା ଉଚିତ, ତାହା ନିର୍ଭର କରିବ ନିର୍ଦ୍ଦିଷ୍ଟ ସୃଜନାତ୍ମକ ଲକ୍ଷ୍ୟ ଉପରେ । ଉଦାହରଣ ସ୍ୱରୂପ, ଗୋଟିଏ ଶିଳ୍ପାନୁଷ୍ଠାନ ଯଦି ପ୍ରୟୋଗାତ୍ମକ ଗବେଷଣା ପରିବର୍ତ୍ତେ ମୌଳିକ ଗବେଷଣାର ଲକ୍ଷ୍ୟ ରଖେ, ତେବେ ଏଠାରେ ବୈଷୟିକ-ସାମାଜିକ ଭୂମିକା ପରିବର୍ତ୍ତେ ବୈଜ୍ଞାନିକ-ବୈଷୟିକ ଭୂମିକା ଉପରେ ଅଧିକ ଗୁରୁତ୍ୱ ଦେବା ସୃଜନ-ସହାୟକ ।

ପ୍ରଖ୍ୟାତ ମନୋବିଜ୍ଞାନୀ କାର୍ଲ ରୋଜର୍ସ ଅନୁଷ୍ଠାନ ଗୁଡ଼ିକରେ ସୃଜନାତ୍ମକ କାର୍ଯ୍ୟର ବିକାଶ ଲାଗି ଯେଉଁ ସମସ୍ତ ଅନୁକୂଳ ଅବସ୍ଥାର ସୂଚନା ଦେଇଛନ୍ତି, ସେଗୁଡ଼ିକ ଖୁବ୍ ସଂକ୍ଷିପ୍ତରେ ମାନସିକ ନିରାପତ୍ତା ବୋଲି କୁହାଯାଇପାରେ । ମାନସିକ ନିରାପତ୍ତା ଦେବାକୁ ହେଲେ ସୃଜନଶୀଳ ବ୍ୟକ୍ତିକୁ ତାର ଗୁଣ ବା କାର୍ଯ୍ୟ ପାଇଁ ଗ୍ରହଣ କରିବାକୁ ହେବ; ତା ଉପରେ କୌଣସି ସର୍ତ୍ତ ଲଦି ଦିଆଯିବ ନାହିଁ । ଦ୍ୱିତୀୟତଃ କୌଣସି ବାହ୍ୟିକ ମୂଲ୍ୟାୟନଶୂନ୍ୟ ବାତାବରଣ ସୃଷ୍ଟି ପାଇଁ ଅନୁଷ୍ଠାନ ତତ୍ପର ହେବା ଆବଶ୍ୟକ । ତୃତୀୟରେ ଅନୁଷ୍ଠାନର ଉଚ୍ଚ କର୍ମକର୍ତ୍ତା ସୃଜନଶୀଳ ବ୍ୟକ୍ତିକୁ ବୁଝିବାକୁ ଚେଷ୍ଟା କଲାବେଳେ ନିଜକୁ ବ୍ୟକ୍ତିସ୍ଥାନରେ ରଖି ସମଭାବାପନ୍ନ ହୋଇ ବୁଝିବା ଦରକାର ।

ଏତଦ୍‌ବ୍ୟତୀତ ରୋଜର୍ସଙ୍କ ମତରେ ବ୍ୟକ୍ତିକୁ ମାନସିକ ସ୍ୱାଧୀନତା ଦେବା ଉଚିତ । ଏ ସମସ୍ତ ମାନସିକ ନିରାପତ୍ତା ସୃଜନଶୀଳତାକୁ ତ୍ୱରାନ୍ୱିତ କରେ ବୋଲି ବହୁ ଗବେଷଣାରୁ ପ୍ରମାଣ ମିଳିଛି ।

ଉପରେ ଆଲୋଚିତ ତଥ୍ୟ ଗୁଡ଼ିକ ମିଳିଛି ମନୋବିଜ୍ଞାନୀମାନଙ୍କ ପର୍ଯ୍ୟବେକ୍ଷଣ ଓ ଅନୁଗାମୀ ଗବେଷଣାରୁ । ମାଇଁ ପାର୍ନେସ ଓ ମିଡ଼ୋ ଏକ ପରୀକ୍ଷା ମୂଳକ ଆଭିମୁଖ୍ୟ ନେଇ ଅନୁଷ୍ଠାନ ଦତ୍ତ ଶିକ୍ଷା ଓ ଅଭ୍ୟାସ ଦ୍ୱାରା ସୃଜନାତ୍ମକ କାର୍ଯ୍ୟ ବୃଦ୍ଧି କରିବା ସମ୍ଭବ କି ନୁହେଁ, ତା ଉପରେ ଗବେଷଣା କରିଥିଲେ । ଗବେଷକ ଦ୍ୱୟ ବଫାଲୋ ବିଶ୍ୱବିଦ୍ୟାଳୟର [illegible]୪୦ ଜଣ ଛାତ୍ର ଛାତ୍ରୀଙ୍କୁ ଗୋଟିଏ ପାଠ୍ୟକ୍ରମ ଦେଲେ । ପାଠ୍ୟକ୍ରମଟି ଆଲେକ୍ସ ଅସବର୍ନଙ୍କ ଲିଖିତ 'ପ୍ରୟୋଗାତ୍ମକ କଳ୍ପନା' ଉପରେ ପର୍ଯ୍ୟବେସିତ । ଏ ପୁସ୍ତକରେ ସୃଜନଶୀଳତାକୁ ବ୍ୟାହତ କରୁଥିବା କେତେକ ଗୁଡ଼ିଏ ପ୍ରତ୍ୟକ୍ଷଗତ, ସାସ୍କୃତିକ ଓ ଭାବଗତ କାରଣର ଆଲୋଚନା ଅଛି । ଏତଦ୍‌ବ୍ୟତୀତ ଏ ବାଧାଗୁଡ଼ିକ କିପରି ଦୂର

କରାଯାଇପାରେ, ତା'ର ସୂଚନା ମଧ୍ୟ ରହିଛି । କୌଣସି ଏକ ସମସ୍ୟାକୁ ଅତିବେଶୀ ଅସ୍ପଷ୍ଟ କରିବା ଫଳରେ ସୃଷ୍ଟି ହେଉଥିବା କାଠିନ୍ୟ, ସମସ୍ୟାର ବିଭିନ୍ନ ଦିଗ ବା ଗୁଣକୁ ପୃଥକ ଓ ସଂଜ୍ଞାକରଣର ଅକ୍ଷମତା ଏବଂ ବିଶେଷ କରି ସମସ୍ତ ଗ୍ରାହ୍ୟଶକ୍ତିକୁ ବିନି-ଯୋଗ କରିବାର ବିଫଳତା ପ୍ରତ୍ୟକ୍ଷଗତ ବାଧା ଭିତରେ ଅନ୍ତର୍ଭୁକ୍ତ । ମାନିନେବାର ଇଚ୍ଛା, ଯୁକ୍ତିଯୁକ୍ତତା ବା ତର୍କଶାସ୍ତ୍ରରେ ଅତ୍ୟଧିକ ଆସ୍ଥା, ଭୁଲ କରିବା ବା ବୋକା ଦେଖାଯିବାର ଭୟ, ଆତ୍ମସନ୍ତୋଷ, ସମ୍ପୂର୍ଣ୍ଣରୂପେ ତ୍ରୁଟିଶୂନ୍ୟ କରିବାର ଇଚ୍ଛା, ବିରୋ-ଧାତ୍ମକ ଦୃଷ୍ଟିଭଙ୍ଗୀ ଓ ଉଚ୍ଚ କର୍ତ୍ତୃତ୍ୱ ଉପରେ ଆସ୍ଥା ହେଉଛି ସାଂସ୍କୃତିକ ଓ ଭାବଗତ ବାଧା । ଏକ ଅନୁଷ୍ଠାନଗତ ପରିବେଶ ମଧ୍ୟରେ ଏସବୁ ବାଧାକୁ ଦୂର କରି ବ୍ୟକ୍ତି ବିଶେଷଙ୍କ ସୃଜନାତ୍ମକ କାର୍ଯ୍ୟକୁ ବୃଦ୍ଧି କରିବା ପାଇଁ ବିଭିନ୍ନ ପନ୍ଥା ଅନୁସୃତ ହୁଏ । ସେ ସବୁ ପନ୍ଥା ମୂଳରେ ନିହିତ ରହିଛି 'ବିଳମ୍ବିତ ବିଗ୍ଭର' ।

'ବିଳମ୍ବିତ ବିଗ୍ଭର'ର ଗୁରୁତ୍ୱ ଦୃଷ୍ଟିରୁ ଏହାର ସଂକ୍ଷିପ୍ତ ଆଲୋଚନା କରାଯାଉ । ଏ ପଦ୍ଧତିରେ ପ୍ରଥମେ ବ୍ୟକ୍ତିଗତ ଭାବରେ ବା ସମଷ୍ଟିଗତ ଭାବରେ ଗୋଟିଏ ସମସ୍ୟାର ଉପସ୍ଥାପନା କରାଯାଏ । ତାପରେ ବ୍ୟକ୍ତିକୁ ବା ବ୍ୟକ୍ତିମାନଙ୍କୁ ଆହ୍ୱାନ କରାଯାଏ ସେ ସମସ୍ୟାର ସମାଧାନ ପାଇଁ ବିଭିନ୍ନ ଉପାୟ ଦେଖାଇବାକୁ । ଉପାୟଗୁଡ଼ିକ ଯେତେ ବେଶୀ ଭିନ୍ନ ହୋଇପାରେ, ସେତେ ଭଲ । ବିଭିନ୍ନ ବ୍ୟକ୍ତି ବିଭିନ୍ନ ସମାଧାନ ଦର୍ଶାଇଲା ବେଳେ ସେ ଗୁଡ଼ିକର କୌଣସି ସମାଲୋଚନା ନ କରିବା ବିଳମ୍ବିତ ବିଗ୍ଭରର ମୁଖ୍ୟ ଉଦ୍ଦେଶ୍ୟ । ଅନେକ ସମୟରେ ହୁଏତ କେତେକ ପ୍ରସ୍ତାବିତ ସମାଧାନ ଖୁବ୍ ହାସ୍ୟାସ୍ପଦ ହୋଇପାରେ । ତଥାପି ସେ ସବୁର ମୂଲ୍ୟାୟନ ପ୍ରଥମାବସ୍ଥାରେ କରାଯାଏ ନାହିଁ । ଉଦାହରଣ ସ୍ୱରୂପ ଗୋଟିଏ ଖୁବ୍ ସହଜସାଧ୍ୟ ସମସ୍ୟା ନିଆଯାଉ : କପରି ଚ୍ଚ ତିଆରି କରାଯାଇ ପାରେ । ଏହାର ସମାଧାନରେ କେହି ଯଦି କହେ ସେ ପାତ୍ରଟିକୁ ଗୋଟିଏ ଗଛତଳ ଚୂଲି ଉପରେ ରଖି ଗଛ ଉପରୁ ପାଣି,କ୍ଷୀର ଓ ଚ୍ଚ ପକାଇବାକୁ ହେବ । ଏ ସମାଧାନଟି ଗଛତଳେ ଚୂଲି କରି ଗଛ ଉପରେ ଚାଉଳ ପାଣି ରଖିବାର'ହାସ୍ୟଜନକ ଆକବର—ବୀରବଲ ଗଳ୍ପ'ପରି ଲାଗୁଥିଲେ ମଧ୍ୟ ଏହାକୁ ଏକ ସମାଧାନର ମୂଲ୍ୟ ଦିଆଯାଏ । ସମୟର ଏକ ବ୍ୟବଧାନରେ ଓ ପରବର୍ତ୍ତୀ ସ୍ତରରେ ସମାଧାନ ଗୁଡ଼ିକର ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଇ ସର୍ବୋତ୍କୃଷ୍ଟ ସମାଧାନଟିକୁ ମନୋନୀତ କରାଯାଏ ।

କେବଳ ପାର୍ନେସ ଓ ମିଡୋଙ୍କ ପରୀକ୍ଷାମୂଳକ ଗବେଷଣାରେ ନୁହେଁ, ଅନ୍ୟାନ୍ୟ ଗବେଷଣାରେ ବିଳମ୍ବିତ ବିଗ୍ଭରର କାର୍ଯ୍ୟକାରିତା ପ୍ରଦର୍ଶିତ ହୋଇଛି । ପାର୍ନେସ ଓ ମିଡୋଙ୍କ ପରୀକ୍ଷା ମୂଳକ ପାଠ୍ୟକ୍ରମ ଶେଷରେ ଦେଖାଗଲା ଯେ ଅଧିକାଂଶ ଛାତ୍ର ସୃଜନ-ଶୀଳତାର ବିଭିନ୍ନ ମାପକରେ ପାରଦର୍ଶିତା ଦେଖାଉଛନ୍ତି । 'ବିଳମ୍ବିତ ବିଗ୍ଭର' ସହିତ

ଜଡ଼ିତ ଅନ୍ୟ ଏକ ମିତର ଗୁରୁତ୍ୱ ପରିଦୃଷ୍ଟ ହୁଏ । ତାହା ହେଉଛି ବହୁମୁଖୀ ଭାବନା (ଡାଇଭରଜେଣ୍ଟ୍ ଥିଂକିଙ୍ଗ୍)। ବହୁମୁଖୀ ଭାବନାର ଉପାଦେୟତା ବିଷୟରେ ବହୁ ମନୋବିଜ୍ଞାନୀ ବ୍ୟକ୍ତିର ଅନ୍ତର୍ନିହିତ ଦିଗ ପ୍ରସଙ୍ଗରେ ଆଲୋଚନା କରିଛନ୍ତି । ତଥାପି କୌଣସି ଏକ ନିର୍ଦ୍ଦିଷ୍ଟ ପରିବେଶରେ ବହୁମୁଖୀ ଭାବନାକୁ ଉତ୍ସାହିତ କରିବା ସୃଜନଶୀଳତାର ସହାୟକ । ଏଠାରେ ବହୁମୁଖୀ ଭାବନାର ଉଦାହରଣ ଦିଆଯାଇପାରେ ଏକମୁଖୀ ଭାବନା (କନ ଭର୍‌ଜେଣ୍ଟ ଥିଂକିଙ୍ଗ୍) ସହିତ ତୁଳନାତ୍ମକ ଭାବରେ । ମନେକରାଯାଉ, ଗୋଟିଏ ପିଲାକୁ ପଚରାଗଲା ଯେ ଇଟାକୁ କେଉଁ କେଉଁ କାର୍ଯ୍ୟରେ ବ୍ୟବହାର କରାଯାଇ ପାରେ ? ତାହାର ଉତ୍ତରରେ ଜଣେ ପିଲା କହିଲା ଯେ ଘର ତିଆରି କରିବାରେ, ମନ୍ଦିର ତିଆରି କରିବାରେ, ସ୍କୁଲ ଘର ତିଆରି କରିବାରେ ଓ ଅଫିସ ଘର ତିଆରି କରିବାରେ ଇଟା ବ୍ୟବହୃତ ହୋଇପାରେ । କିନ୍ତୁ ଅନ୍ୟ ଏକ ପିଲା କହିଲା ଯେ ନିର୍ମାଣ କାର୍ଯ୍ୟରେ, କାନ୍ଥରେ କିଛି ଲେଖିବା ପାଇଁ, ଚଢ଼େଇଙ୍କୁ ଦୂରକୁ ଘଉଡ଼େଇଦେବା ପାଇଁ, ପବନରେ କବାଟ ବନ୍ଦ ହୋଇଯାଉଥିଲେ କବାଟ ଖୋଲି ରଖିବା ପାଇଁ ଇଟାକୁ ବ୍ୟବହାର କରାଯାଇ ପାରେ । ଏ ଉଦାହରଣରେ ପ୍ରଥମ ପିଲାର ଉତ୍ତର ଏକମୁଖୀ ଭାବନାର ଓ ଦ୍ୱିତୀୟ ପିଲାଟିର ଉତ୍ତର ବହୁମୁଖୀ ଭାବନାର ସୂଚକ । ବିକଳ୍ପିତ ବିଚାର ପଦ୍ଧତିରେ ବିଭିନ୍ନ ସମାଧାନକୁ ଉତ୍ସାହିତ କରିବା ମୂଳରେ ବହୁମୁଖୀ ଭାବନାକୁ ଆଲୋଡ଼ିତ କରାଯାଇଥାଏ । ଏ ଦୃଷ୍ଟିରୁ ବିକଳ୍ପିତ ବିଚାର ଓ ବହୁମୁଖୀ ଭାବନା ସଂଶ୍ଳିଷ୍ଟ ।

ବହୁମୁଖୀ ଭାବନାର ଉତ୍କର୍ଷତା ବହୁ ଭାବରେ ପ୍ରତିପାଦିତ ହୋଇଥିଲେ ମଧ୍ୟ ଏକମୁଖୀ ଭାବନାର ଯେ କୌଣସି ଭୂମିକା ନାହିଁ, ସେ କଥା ନୁହେଁ । ପଦାର୍ଥ ବିଜ୍ଞାନୀ କୁନ ବୈଜ୍ଞାନିକ ଚିନ୍ତାଧାରାର ଇତିହାସ ପର୍ଯ୍ୟାଲୋଚନା କରି ମତ ଦେଇଛନ୍ତି ଯେ ଏକମୁଖୀ ଭାବନା ଓ ବହୁମୁଖୀ ଭାବନାର ସଂଘର୍ଷରୁ ଯୁଗାନ୍ତକାରୀ ସୃଜନଶୀଳତାର ପରିପ୍ରକାଶ ହୁଏ । ଗବେଷକ ଏକମୁଖୀ ଭାବନାର ବଶବର୍ତ୍ତୀ ହୋଇ ଗତାନୁଗତିକ ପୂର୍ବ ପ୍ରତିଷ୍ଠିତ ପଦ୍ଧତିରେ ଗବେଷଣା କରୁ କରୁ ବେଳେ ବେଳେ ଏପରି କେତେକ ପରିସ୍ଥିତିର ସନ୍ଧାନ ପାଆନ୍ତି, ଯେଉଁଗୁଡ଼ିକ କି ପୂର୍ବ ପ୍ରତିଷ୍ଠିତ ନିୟମାନୁଯାୟୀ ବୁଝିବା ସମ୍ଭବ ହୁଏନାହିଁ । ସେତେବେଳେ ସେ ବହୁମୁଖୀ ଭାବନା ବଳରେ ନୂତନ ଦିଗ୍‌ଦର୍ଶନର ସୂଚନା ଦିଅନ୍ତି । ସ୍ଥୂଳତଃ ଏକମୁଖୀ ଭାବନା ଓ ବହୁମୁଖୀ ଭାବନାର ସଂଘର୍ଷଜନିତ ଏକ ଉତ୍ତେଜନାରୁ ସୃଜନଶୀଳତାର ପ୍ରକାଶ ।

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ଆଲୋଚିତ ତଥ୍ୟଗୁଡ଼ିକ ପାଶ୍ଚାତ୍ୟ ଦେଶୀୟ ବୈଜ୍ଞାନିକ ମାନଙ୍କର ଦାନ । ଏହାର ଅର୍ଥ ନୁହେଁ ଯେ ଆମ ସମାଜରେ ଏହାର କାର୍ଯ୍ୟକାରିତା ନାହିଁ । ଆମର ସମାଜ ବିରାଟ ଓ ବ୍ୟାପକ ହେଲେ ହେଁ ଏହା ମଧ୍ୟରେ ଅଗଣିତ ଅନୁଷ୍ଠାନ ସୃଜନାତ୍ମକ କାର୍ଯ୍ୟରେ ବ୍ରତୀ । ଉତ୍ପାଦନଶୀଳତା ଉପରେ ଅତ୍ୟଧିକ ଗୁରୁତ୍ୱ ନ ଦେବା, ମାନସିକ ନିରାପତ୍ତା ପାଇଁ ପଦକ୍ଷେପ ନେବା ଏବଂ ବହୁମୁଖୀ

ଭାବନାକୁ ଉତ୍ସାହିତ କରିବା ସେ ଅନୁଷ୍ଠାନଗୁଡ଼ିକର ଆଭିମୁଖ୍ୟ ହେବା ଉଚିତ । ସେହିପରି ଏକ ବୃହତ୍ତର ପରିପ୍ରେକ୍ଷୀରେ ସାମାଜିକ ଦୃଷ୍ଟିଭଙ୍ଗୀ ଏହାର ଅନୁଗତ ହେବା ଉଚିତ । ସମସ୍ତ ସମସ୍ୟାରେ ଭୁଲ ଉତ୍ତର ବା ଅସ୍ୱାଭାବିକ ଉତ୍ତର ଦେଉଥିବା ବ୍ୟକ୍ତି ପ୍ରତି ଆମେ ଏପରି ବ୍ୟଙ୍ଗ ବିଦ୍ରୂପ ପ୍ରକାଶ କରୁ ଯେ ନୂଆ ନୂଆ ଭାବନାର ବିକାଶ ବ୍ୟାହତ ହୁଏ । ଏହା ସୃଜନଶୀଳତାର ଅନ୍ତରାୟ । ଶ୍ରେଣୀ ଗୃହରେ ପ୍ରଶ୍ନର ଉତ୍ତର ହେଉ ବା ଦୈନନ୍ଦିନ ଜୀବନର ସମସ୍ୟା ସମାଧାନରେ ପ୍ରସ୍ତାବିତ ମତ ହେଉ, ତାହା ଯେତେ ଅସ୍ୱାଭାବିକ ଓ ଭୁଲ ହେଲେ ମଧ୍ୟ ସେଥିରେ ଥିବା ସାମାନ୍ୟତମ ଗୁଣକୁ ଚିହ୍ନଟ କରି ଛାତ୍ରକୁ ବା ବ୍ୟକ୍ତିକୁ କିଛି କୃତିତ୍ୱ ଦେବା ଉଚିତ । ତାହେଲେ କେବଳ ସୃଜନଶୀଳତାର ଉନ୍ମେଷ ହେବନାହିଁ, ସମାଜ ଏକ ନୂତନ ବିଭବରେ ଦ୍ୟୁତିମନ୍ତ ହେବ ।

## କବିତା ସୃଷ୍ଟିରେ ସୃଜନଶୀଳତା

ଖ୍ରୀଷ୍ଟଜନ୍ମର ଚାରିଶହ ବର୍ଷ ପୂର୍ବରୁ ଗ୍ରୀକ୍ ଦାର୍ଶନିକ ପ୍ଲାଟୋ ଯେଉଁ ଆଦର୍ଶ ସାଧାରଣତନ୍ତ୍ରର ପରିକଳ୍ପନା କରିଥିଲେ, ସେଥିରେ କବିମାନଙ୍କର ସ୍ଥାନ ନ ଥିଲା । 'ଜନଜୀବନରେ ବିଶୃଙ୍ଖଳା ସୃଷ୍ଟି କରି ସେମାନଙ୍କର ନୈତିକ ଅଧପତନରେ କବିମାନେ ଦାୟୀ' ବୋଲି ଯୁକ୍ତି କରି 'ସାଧାରଣତନ୍ତ୍ରରୁ ସେମାନଙ୍କୁ ନିର୍ବାସନ କରିବା ଆବଶ୍ୟକ' ବୋଲି ପ୍ଲାଟୋ ଦର୍ଶାଇଥିଲେ । ପ୍ରାୟ ଅଢ଼େଇ ହଜାର ବର୍ଷ ପରେ କବିମାନଙ୍କ ସମ୍ପର୍କରେ ଏ ଧାରଣାର ବୈପ୍ଳବିକ ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ । କବିମାନେ ମାନସିକ ବ୍ୟାଧିଗ୍ରସ୍ତ, ସେମାନଙ୍କର ଚିନ୍ତାଧାରା ଅସ୍ୱାଭାବିକ ଏବଂ ସେମାନେ ଦୈନନ୍ଦିନ ଜୀବନଯାତ୍ରାରେ ଅସମର୍ଥ—ଏ ଧାରଣା କେବଳ ଜନସମାଜରେ ସୀମିତ ନୁହେଁ, ବୈଜ୍ଞାନିକ ରାଜ୍ୟରେ ମଧ୍ୟ ସମର୍ଥିତ ।

କବିମାନେ ବାସ୍ତବରେ ଅସ୍ୱଭାବୀ । ଜୀବନର ଆଶା, ଆକାଂକ୍ଷା ସ୍ମୃତି, ଭାବନା ଓ କଳ୍ପନା କେତୋଟି ସାଧାରଣ କ୍ଷେତ୍ରର ବହୁ ଦୂରରେ ଏପରି ଏକ କ୍ଷେତ୍ର ରହିଛି, ଯାହା ସାଧାରଣ ନିୟମଠାରୁ ବ୍ୟତିକ୍ରମ । ଏ ସ୍ତରରେ ଅନିର୍ଦ୍ଦିଷ୍ଟତାର ନିୟମ କ୍ରିୟାଶୀଳ । ସୃଜନଶୀଳ କବି ଏହିପରି ଏକ କ୍ଷେତ୍ର ସହିତ ସଂଯୋଗ ରକ୍ଷା କରିବାକୁ ଯାଇ ନିଜର ଭାରସାମ୍ୟ ହରାଇ ବସେ । ତା'ର ସୃଜନଶୀଳ କାର୍ଯ୍ୟକଳାପ ସାଧାରଣ ବା ବ୍ୟାବସାୟିକ କାର୍ଯ୍ୟକଳାପର ପରିପନ୍ଥୀ । ସେହି ସାଧାରଣ ନିୟମ ବହିର୍ଭୂତ କ୍ଷେତ୍ରରେ ରହି ଅସ୍ୱଭାବୀ

ଚିନ୍ତାର ରୂପାୟନ କରିବା ଫଳରେ ତା'ର ସାଧାରଣ ଜୀବନ ବିପର୍ଯ୍ୟସ୍ତ ହୁଏ । ତେବେ ତାକୁ ଆଖ୍ୟା ଦିଅନ୍ତି ବିକୃତ । କାରଣ ସମାଜର ପ୍ରତିଷ୍ଠା କେତେକ ଅଗଣିତ ଓ ଗତାନୁଗତିକ ଭାବଧାରା ଉପରେ ପର୍ଯ୍ୟବସିତ ।

କବିର ଚିନ୍ତା ଓ ସାଧାରଣ ଚିନ୍ତା ମଧ୍ୟରେ ବହୁ ପାର୍ଥକ୍ୟ ରହିଛି । କବିର ଚିନ୍ତା ମୁକ୍ତ, ଉଚ୍ଛ୍ୱଳ, ଉଦ୍ୟମ ବିହୀନ ଓ ସ୍ୱପ୍ନପ୍ରେମ । ସାଧାରଣ ଚିନ୍ତା ବହୁ ପରିମାଣରେ ବିଶ୍ଳେଷଣାତ୍ମକ ଓ ଅବମୂର୍ତ୍ତି । କବି ଚିନ୍ତା ସମ୍ପୂର୍ଣ୍ଣ କଳ୍ପନାସମ୍ପୃକ୍ତ ଓ ମୂର୍ତ୍ତିପୂର୍ଣ୍ଣ । ସାଧାରଣ ଚିନ୍ତାରେ ରୂପକଳ୍ପଗୁଡ଼ିକ ଭିତ୍ତି ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି ସେଗୁଡ଼ିକର ବିନିଯୋଗ କରାଯାଏ । କବିର ଚିନ୍ତାରେ ସହଜ ସୁଲଭ ଭଙ୍ଗିରେ ଆସୁଥିବା ରୂପକଳ୍ପଗୁଡ଼ିକୁ ବ୍ୟବହାର କରାଯାଏ । ଏ ଦୁଇ ପ୍ରକାର ଚିନ୍ତାରେ ଭାଷାର ସମ୍ପର୍କ ମଧ୍ୟ ଭିନ୍ନ । ସାଧାରଣ ଚିନ୍ତାରେ ଭାଷାର ବହୁଳ ପ୍ରୟୋଗ ଦେଖାଯାଏ । କବିତାଧର୍ମୀ ଚିନ୍ତା ଅନେକାଂଶରେ ଭାଷାର ଅନ୍ତରାଳ । ବିବର୍ତ୍ତନ ଧାରାରେ କବିଦୃଷ୍ଟି ବା କବିତାଧର୍ମୀ ଚିନ୍ତା ବିସ୍ତାରମୂଳକ ଚିନ୍ତାଠାରୁ ବହୁ ପୁରାତନ । କଳ୍ପନା ପ୍ରବାହକୁ ବାଧା ଦେଇ କେବଳ ବିସ୍ତାରମୂଳକ ଚିନ୍ତା କରାଯାଇ ପାରେ । କିନ୍ତୁ କବିଧର୍ମୀ ପୁରାତନ ଚିନ୍ତାର ପ୍ରକୃତି ହେଉଛି ପ୍ରତୀକଗାମୀ । ସ୍ୱପ୍ନର ପ୍ରତୀକ ଅନ୍ତରାଳରେ ଗୂଢ଼ାର୍ଥ ଥିଲା ପରି କବିତାଧର୍ମୀ ଚିନ୍ତାମୂଳରେ ବହୁ ଅର୍ଥ ଥାଏ ।

## କବିଦୃଷ୍ଟି ଓ ଅଚେତନ ମନ :

କବିଦୃଷ୍ଟିର ଉତ୍ସ ତା'ର ଚେତନ, ଅବଚେତନ ଓ ଅଚେତନ ସ୍ତରରେ । ତେବେ ଅଧିକାଂଶ କବିତାଧର୍ମୀ ଚିନ୍ତାର ଉତ୍ସ କବିର ଅଚେତନ ମନ । ମଣିଷ ମନର ଅସମାଧିତ ଦ୍ୱନ୍ଦ୍ୱ, ଅସମାଧିତ ପ୍ରଶ୍ନ ଓ ଅପୂରିତ କାମନା ବାସନା ଆଶା ଆକାଂକ୍ଷାକୁ ନେଇ ଅଚେତନ ମନର ପରିସର । ଏହି ଅଚେତନ ରାଜ୍ୟରେ ଜନ୍ମ ନେଉଥିବା କବିଦୃଷ୍ଟିର ଦୁଇଟି ବୈଶିଷ୍ଟ୍ୟ ରହିଛି । ଏହା ପ୍ରାକୃତିକତାରେ ପରିପୂର୍ଣ୍ଣ ଓ ମୌଳିକତାରେ ପରିପୁଷ୍ଟ । କେତୋଟି କାରଣରୁ ଏ ଦୁଇଟି ବୈଶିଷ୍ଟ୍ୟର ବିକାଶ ଘଟିଥାଏ । ପ୍ରଥମତଃ ଅଚେତନ ସ୍ତରରେ ଆପେକ୍ଷିକ ସମୟ ଓ ସ୍ଥାନ ସମ୍ପର୍କରେ କୌଣସି ଧାରଣା ନ ଥାଏ । କେଉଁ ଘଟଣା ପରେ କେଉଁ ଘଟଣା ଘଟିଛି, କେଉଁ ଘଟଣା ଘଟିବ କିମ୍ବା କେଉଁ ସ୍ଥାନ ପାର୍ଶ୍ୱରେ ଅନ୍ୟ କେଉଁ ସ୍ଥାନ ଅବସ୍ଥିତ, ସେ ଧାରଣା ଲୋପ ପାଇଥାଏ । ଦ୍ୱିତୀୟତଃ ଅବଚେତନ ସ୍ତରରେ ସମୀକ୍ଷାର ହ୍ରାସ ଘଟିଥାଏ । ସମୀକ୍ଷା ବାଦ୍ ଦେଇ ସ୍ୱାଭାବିକ ଭାବେ ଆସୁଥିବା ରୂପକଳ୍ପ ଗୁଡ଼ିକ ଗ୍ରହଣ କରାଯାଏ । ତୃତୀୟତଃ, ଘଟଣାର ବିନ୍ୟାସ ଓ ସଂଗଠନ ଐତିହାସିକ ବନ୍ଧନରୁ ମୁକ୍ତ ହୋଇ ଆବଶ୍ୟକତା ଦ୍ୱାରା ନିୟନ୍ତ୍ରିତ ହୁଏ । ଚତୁର୍ଥତଃ ରୂପକଳ୍ପ ଗୁଡ଼ିକର ଧାରାବାହିକତାକୁ ନିୟନ୍ତ୍ରଣ କରିବା ପାଇଁ କୌଣସି

ଚ୍ୟାନ୍ଧାରଣ ଆବଶ୍ୟକତା ନ ଥାଏ । ପଞ୍ଚମତଃ ଅଚେତନ ରାଜ୍ୟରୁ ଉଦ୍‌ଭୂତ ରୂପକଳ୍ପ-ଗୁଡ଼ିକ ଅନୁଭୂତିର ସଫୁର୍ତ୍ତିତା ଉପରେ ପର୍ଯ୍ୟବେସିତ ।

କବି କଳ୍ପନାରେ କେବଳ ଯେ ଅଚେତନ ମନର ଉପାଦାନ ବ୍ୟବହୃତ ହୁଏ ତାହା ନୁହେଁ, ଚେତନ ଓ ବର୍ତ୍ତମାନର ଅନୁଭୂତି ମଧ୍ୟ ନିୟୋଜିତ ହୁଏ । କିନ୍ତୁ ତିନୋଟି କାରଣରୁ କବି ଅତୀତର ଅଚେତନ ଅନୁଭୂତି ଗୁରୁତ୍ୱ ଲାଭ କରେ । ପ୍ରଥମତଃ ଏହି ଅନୁଭୂତି ଗୁଡ଼ିକରେ ଏକପ୍ରକାର ମାଦକତା ଥାଏ ଏବଂ ଏଥିରେ ବର୍ତ୍ତମାନର ଲକ୍ଷ୍ୟ ଓ ବର୍ତ୍ତମାନର ଉଦ୍ଦେଶ୍ୟର ଚାପ କମ୍ ଥାଏ । ଦ୍ୱିତୀୟତଃ ଏହି ଅନୁଭୂତି ଗୁଡ଼ିକରେ ଭାବ ଓ ଆବେଗର ପ୍ରଭାବ ପ୍ରଚ୍ଛନ୍ନ ଭାବରେ ଥାଏ । ତୃତୀୟତଃ ଜୀବନର ଯେଉଁ ପର୍ଯ୍ୟାୟରେ କଳ୍ପନା ଅତି ଗଭୀର ଓ ଅମିଶ୍ରିତ, ସେ ପର୍ଯ୍ୟାୟରେ କଳ୍ପନା ଗୁଡ଼ିକ ଶକ୍ତିଶାଳୀ ଭାବାବେଗ ସହିତ ମିଶି କବି ଭାବନାରେ ରୂପ ନିଏ । ଦୂର ଅତୀତର ରୂପକଳ୍ପ ଗୁଡ଼ିକ ବର୍ତ୍ତମାନର ମାନସିକ ପ୍ରତିବିମ୍ବ ସହିତ ଏକତ୍ର ହୋଇ ବିକାଶ ଲାଭ କରନ୍ତି । କବି ମନର ଜୈବିକ କ୍ରିୟାଶୀଳତା ଫଳରେ ଏ ସମସ୍ତର ମନ୍ଥନ ଏକ ନୂତନ ସୃଷ୍ଟିର ସନ୍ଧାନ ଦିଏ । ପରିଶେଷରେ ଯେଉଁ କବିତା ସୃଷ୍ଟି ହୁଏ, ତାହା କେବଳ କବି ଦୃଷ୍ଟିର ଫଳ ନୁହେଁ, କବି ନିୟନ୍ତ୍ରଣର ସର୍ଜନା । କବିର ନିୟନ୍ତ୍ରଣ କବିତାକୁ ଭାଷା, ଶୃଙ୍ଖଳା ଓ ଅବୟବ ଦିଏ । ଭାବର ତରଙ୍ଗରେ କବିତାର ଛନ୍ଦ ଏବଂ କବି ନିୟନ୍ତ୍ରଣରେ କବିତାର ବିନ୍ୟାସ ସୃଷ୍ଟି ହୁଏ ।

ମନୋବୈଜ୍ଞାନିକ ବିଶ୍ଳେଷଣ ସହିତ କେତେଜଣ ଆଧୁନିକ କବି ଓ ସମାଲୋଚକମାନଙ୍କ ମତର ସଂଗତି ରହିଛି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ଆଧୁନିକ ଯୁଗର ପ୍ରଖ୍ୟାତ କବି ଓ ସମାଲୋଚକ ଅଡ଼େନଙ୍କ ମତରେ ମନୁଷ୍ୟର ବିଭିନ୍ନ ଭାବ ଓ ଆବେଗ ମଧ୍ୟରେ ଥିବା ଲୁକ୍‌କାୟିତ ସମ୍ପର୍କକୁ ଅବଚେତନ ମନରୁ ଉଦ୍ଧାର କରି କାବ୍ୟିକ ରୂପରେଖ ଦେବା କବିର ଉଦ୍ଦେଶ୍ୟ । ଏ କ୍ଷେତ୍ରରେ ଚେତନ ମନର ଶୃଙ୍ଖଳା ବା କବିର ନିୟନ୍ତ୍ରଣ କବିତାକୁ ଭାଷା ଓ ଅବୟବ ଦେଇ କବିତାକୁ ସୁନ୍ଦର କରିଥାଏ । ଭାଷା ପ୍ରତି ଅନୁରକ୍ତି ଓ ଭାଷାର ସମଂଜସ ବ୍ୟବହାର କବିତାର ଅବିଚ୍ଛେଦ୍ୟ ଅଂଶ, କିନ୍ତୁ ପ୍ରଚ୍ଛନ୍ନ ଭାବରେ ରୂପାୟନ କବିର ମୌଳିକ ଅଭିମୁଖ୍ୟ ।

## କବିତା ସୃଷ୍ଟିର ସ୍ତର :

ପ୍ରକାଶ ସମୟରେ ଅବଚେତନ ମନର ଉପାଦାନ ଚେତନଶୀଳତାର ସ୍ତର ଦେଇ ଗତି କରେ । ତେଣୁ ଏହି ଗତିଶୀଳତାର ପର୍ଯ୍ୟାୟ ଉପରେ ମନୋବୈଜ୍ଞାନିକଙ୍କ ସମୀକ୍ଷା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ସ୍ତରଗୁଡ଼ିକ କ୍ରମାନ୍ୱୟରେ ବିକାଶ ଲାଭ କରେ । ପ୍ରଥମଟି ପ୍ରସ୍ତୁତି ପର୍ବ । ଏ ସ୍ତରରେ ଭାବଧାରା ମଧ୍ୟରେ ସଂଗତିର ପରିବର୍ତ୍ତନ ଘଟେ ।

ପରୀକ୍ଷା କରାଯାଇ ଦେଖାଯାଇଛି ଯେ ଏ ସ୍ତରରେ ବିକଶିତ ଧାରଣାରୁ ପ୍ରାୟ ଅର୍ଦ୍ଧାଧିକ ଧାରଣା ପରିବର୍ତ୍ତିତ ହୋଇ ଉପର ସ୍ତରକୁ ଯାଆନ୍ତି । ଏ ସ୍ତରରେ ଧାରଣାଗୁଡ଼ିକ ମଧ୍ୟରେ ଥିବା ସମ୍ପର୍କରେ ଘନ ଘନ ପରିବର୍ତ୍ତନ ହୁଏ ଏବଂ ନୂତନ ଧାରଣାର ଆବିର୍ଭାବ ହୁଏ ।

ଦ୍ୱିତୀୟ ପର୍ଯ୍ୟାୟକୁ ଅଧିପାଳନ(incubation)କୁହାଯାଇ ପାରେ । ଏ ସମ୍ବନ୍ଧରେ କବି ନିଜ କବିତା ବିଷୟରେ ନ ଭାବି ଅନ୍ୟ କିଛି କାର୍ଯ୍ୟରେ ଲିପ୍ତ ଥାଇପାରନ୍ତି । ଅନ୍ୟ କିଛି କରୁ କରୁ ହଠାତ ନୂତନ ଧାରଣାର ଆବିର୍ଭାବ ହୋଇପାରେ ଏବଂ ଏ ନୂତନ ଧାରଣା ଆରମ୍ଭ କରା ଯାଇଥିବା କବିତାକୁ ନୂଆ ରୂପ ଦେଇପାରେ । କୌଣସି ଭାବାବେଶ ବା ଧାରଣାର ଏ ଆକସ୍ମିକ ପ୍ରବାହରେ କବିତାର ମୁଖ୍ୟ ଚିନ୍ତା ପରିବର୍ତ୍ତିତ ହୋଇପାରେ । ତୃତୀୟ ସ୍ତରରେ ଦୃଢ଼ୀକରଣର ପର୍ବ । ଏ ସ୍ତରରେ ଆବେଗ ଓ ଭାବଧାରା ମିଳିତ ହୋଇ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଦିଗରେ ଗତି କରନ୍ତି । ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସହିତ ଆବେଗ ଓ ଚିନ୍ତାଧାରାର ସମ୍ପର୍କ ପ୍ରତିଷ୍ଠିତ ହୁଏ ।

ଚତୁର୍ଥ ସ୍ତରଟି ପରୀକ୍ଷା ନିରୀକ୍ଷାର ସ୍ତର । ଏ ସମୟରେ କବି ତାଙ୍କର କବିତାର କେତେକ ଅଂଶର ଅଳ୍ପ କିଛି ପରିବର୍ତ୍ତନ କରନ୍ତି । କେତେକ ସ୍ଥଳରେ ଭାବଗୁଡ଼ିକର ସମ୍ପ୍ରସାରଣ କରାଯାଏ ଓ ସମୀକ୍ଷା କରାଯାଏ । ଦେଖାଯାଇଛି ଯେ ପ୍ରାୟ ଦ୍ୱି-ତୃତୀୟାଂଶ ଭାବଧାରା ପ୍ରଥମ ଥର ପାଇଁ ଦ୍ୱିତୀୟ ଓ ତୃତୀୟ ସ୍ତରରେ ଜନ୍ମ ନିଅନ୍ତି । କେତେକ ଦୃଷ୍ଟିରୁ ଅଧିପାଳନର ସ୍ତରଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । କେବଳ କବିତା ସୃଷ୍ଟିରେ ନାହିଁ, ବୈଜ୍ଞାନିକ ଉଦ୍ଭାବନ ପରି ଅନ୍ୟାନ୍ୟ ସୃଜନଶୀଳ କାର୍ଯ୍ୟରେ ମଧ୍ୟ ଏ ସ୍ତରର ଗୁରୁତ୍ୱ ରହିଛି ।

ପୂର୍ବ ଆଲୋଚିତ ଚାରୋଟି ସ୍ତର କେବଳ କବିତା ସୃଷ୍ଟି କ୍ଷେତ୍ରରେ ସୀମିତ ନୁହେଁ । ଯେ କୌଣସି କଳାତ୍ମକ ସୃଷ୍ଟି ବୈଜ୍ଞାନିକ ଉଦ୍ଭାବନ ପରି ସୃଜନଶୀଳ କାର୍ଯ୍ୟ ପାଇଁ ପ୍ରଯୁଜ୍ୟ । ଅନ୍ୟ ଏକ ଦୃଷ୍ଟିକୋଣରୁ ପାଞ୍ଚୋଟି ସ୍ତରର ପରିକଳ୍ପନା କରାଯାଇଛି । ଏ ସ୍ତରଗୁଡ଼ିକ କେବଳ କବିର ସୃଜନଶୀଳତା ପାଇଁ ସୂଚିତ । ପ୍ରଥମ ସ୍ତରରେ କବିତା ପରିବେଶର ଏକ ବିଶିଷ୍ଟ ଦିଗ ପ୍ରତି ଅଭିନିବିଷ୍ଟ ହୁଏ । ସେ ଏ ଦିଗରେ ଅନୁଭୂତି ଗୁଡ଼ିକ ମଧ୍ୟରୁ କେତେକ ସମାଜର ଅନୁଭୂତିଠାରୁ ସମ୍ପୂର୍ଣ୍ଣ ପୃଥକ୍ । ତା ଅନୁଭୂତିର ବ୍ୟକ୍ତିଗତ ଦିଗରୁ କବିତାର ସୃଷ୍ଟି ହୁଏ । ଶିଳ୍ପୀ କେବଳ ଅନ୍ୟ ବ୍ୟକ୍ତିଠାରୁ ଅଧିକ ଅନୁଭୂତି ସଞ୍ଚୟ କରେନାହିଁ, ସେ ଅନୁଭୂତି ଗୁଡ଼ିକରେ ଯଥେଷ୍ଟ ଗଭୀରତା ଥାଏ । ଅଭିଜ୍ଞତା ପ୍ରତି ତାର ଏଇ ସମ୍ବେଦନଶୀଳତା କବିର ସୃଜନଶୀଳତାକୁ ଉତ୍ସାହିତ କରେ । କିନ୍ତୁ ଏହି ସମ୍ବେଦନଶୀଳତା ଯଥେଷ୍ଟ ସବଳ ନୁହେଁ । ସମ୍ବେଦନଶୀଳତାର ରୂପାୟନ ପାଇଁ ଆବଶ୍ୟକ ହୁଏ ଶକ୍ତି ଓ ଶୃଙ୍ଖଳା ।

ଦ୍ୱିତୀୟ ସ୍ତରରେ ଅନୁଭୂତ ଏକ ଅବସ୍ଥାର ଗ୍ରହଣ କରେ । ଏଥିପାଇଁ କବିଙ୍କୁ ଏକ ଟେକ୍‌ନିକ୍ ବା କୌଶଳ ଅବଲମ୍ବନ କରିବାକୁ ପଡ଼େ । ଏହି କୌଶଳ ଶକ୍ତିଶାଳୀ ନ ହେଲେ ଅନୁଭୂତ ଲବ୍‌ଧ ଅନ୍ତର୍ଦୃଷ୍ଟିର ଉନ୍ମେଷବ ଘଟେ । ବିଭିନ୍ନ କୌଶଳ ସହିତ କବିର ପରିଚୟ ଓ ନିରବଚ୍ଛିନ୍ନ ଅଭ୍ୟାସ କୌଶଳକୁ ଶକ୍ତିଶାଳୀ କରେ ।

ତୃତୀୟ ସ୍ତରରେ କବିଦୃଷ୍ଟିର ଆବିର୍ଭାବ ଘଟେ । ଏ ସମୟରେ ଏକ ମୌଳିକ ଅବସ୍ଥା କବି ମନରେ ଉଙ୍କି ମାରେ । ଏହାକୁ ଅନ୍ତର୍ଦୃଷ୍ଟି ବା ପ୍ରେରଣା କୁହାଯାଇ ପାରେ । ଏହି ଅନ୍ତର୍ଦୃଷ୍ଟିରେ ଶୃଙ୍ଖଳା କମ୍ ପରିମାଣରେ ଥାଏ; କାରଣ ଏହା ଅବଚେତନ ମନରୁ ଜନ୍ମ ନିଏ । ଆକସ୍ମିକ ଭାବେ ଏହି ଅନ୍ତର୍ଦୃଷ୍ଟିର ଆବିର୍ଭାବ ଘଟେ । ଅବଶ୍ୟ ସବୁ କବିତାରେ ଏହା ଘଟି ନ ପାରେ, କିନ୍ତୁ ପ୍ରତ୍ୟେକ ସ୍ଥଳରେ କବି ଏକ ଆକସ୍ମିକ ରୂପରେ ପ୍ରଭାବିତ ହୋଇ କବିତାର ସଂଗଠନକୁ ରୂପ ଦିଅନ୍ତି ।

ପରବର୍ତ୍ତୀ ସ୍ତରରେ ମନର ଚେତନଶୀଳତା ଦିଗ ସକ୍ରିୟ ହୁଏ । ଅବଚେତନ ମନରୁ ଉଦ୍‌ଭୂତ ଦୃଷ୍ଟିର ସମ୍ପ୍ରସାରଣ ଘଟେ । ନିଜର ଅନ୍ତର୍ଦୃଷ୍ଟି ଯେପରି ପାଠକ ପକ୍ଷେ ବୋଧଗମ୍ୟ ହେବ, ସେ ଦିଗରେ କବି ତତ୍ପର ହୁଏ । ଏ ସମୟରେ ଆହୁରି ଅଧିକ ଭାବନା ଓ ଅନ୍ତର୍ଦୃଷ୍ଟିର ବିକାଶ ଘଟି କବି ବାସ୍ତବତା ସହିତ ସମ୍ପର୍କ ରକ୍ଷା କରିବା ଦିଗରେ ସହାୟକ ହୁଏ ।

ଶେଷ ସ୍ତରରେ ପୂର୍ବସ୍ତର ଗୁଡ଼ିକରେ ସଙ୍ଗଠିତ କାର୍ଯ୍ୟର ପୁନର୍ବିଚାର ହୁଏ । କବି ନିଜର ମନ ଭିତରେ ପାଠକକୁ ରଖି ନିଜର କବିତାର ଭାବ ଯୋଗାଯୋଗ ବିଷୟରେ ପ୍ରଶ୍ନ କରନ୍ତି ଓ ତଦନୁସାରେ କବିତାର ସାମାନ୍ୟ ପରିବର୍ତ୍ତନ କରିପାରନ୍ତି । ସବୁ ସ୍ତରର କାର୍ଯ୍ୟ ଶେଷରେ କାର୍ଯ୍ୟ କରିବାର ତୃପ୍ତି ହିଁ କବିଙ୍କୁ ସର୍ବାଧିକ ଆନନ୍ଦ ଦିଏ । କବିତା ସୃଷ୍ଟିର ମାଧ୍ୟମ, ପ୍ରଖ୍ୟାତ ଲାଭ ଓ ସମସ୍ୟୋତ୍ତୀର୍ଣ୍ଣତା ଏବଂ ମାନସିକ ସଙ୍ଘାତରୁ ମୁକ୍ତି ଇତ୍ୟାଦି ଆନନ୍ଦର ଉତ୍ସରୂପେ କାର୍ଯ୍ୟକରେ ।

**କବି ଉଦ୍ୟମର ବୈଶିଷ୍ଟ୍ୟ :**

କବି ଚେଷ୍ଟାର ଅନ୍ୟ କେତୋଟି ଦିଗ ମଧ୍ୟ ଆଲୋଚ୍ୟ । କବିତାର ସୃଷ୍ଟିରେ କବିର ମନନଶୀଳତା ଲକ୍ଷ୍ୟ କରାଯାଏ । ନିଜର ଭାବଧାରାର ବିକାଶ ଓ ତା'ର ପରିଣାମ ବିଷୟରେ କବି ସଚେତନ । ଧୂମପାନ ପରି କବିର କେତେକ ଅଭ୍ୟାସକୁ ଏହି ମନନଶୀଳତା ପ୍ରସଙ୍ଗରେ ବିଚାର କରାଯାଇ ପାରେ । କବିତା ସୃଷ୍ଟିରେ କଠିନ ପରିଶ୍ରମ ଅପରିହାର୍ଯ୍ୟ ହେଲେ ମଧ୍ୟ ପ୍ରେରଣାର ସ୍ଥାନ ରହିଛି । ସେହିପରି ସ୍ମୃତିର ଭୂମିକା ମଧ୍ୟ ରହିଛି । କବି ସ୍ମୃତିର ଏକ ଅନବଦ୍ୟ ଦିଗ ହେଉଛି ନିଜର ଇନ୍ଦ୍ରିୟାନୁଭୂତ ରୂପ ଗୁଡ଼ିକର ସଜୀବତା । ବାଲ୍ୟକାଳର ସ୍ମୃତି ନଷ୍ଟ ଅରୂଢ଼ ରହେ । କବିତା ସୃଷ୍ଟିର ଅନ୍ୟ

ଏହି ବିଭବ ହେଉଛି ବିଶ୍ୱାସ । ଏ ବିଶ୍ୱାସର ଦୁଇଟି ମାର୍ଗ । ପ୍ରଥମେ ନିଜ ବୃତ୍ତିରେ ବିଶ୍ୱାସ ଏବଂ ନିଜର ପ୍ରଖ୍ୟାପିତ ସତ୍ୟରେ ବିଶ୍ୱାସ ଥାଏ । କବି ଗଭୀର ଭାବେ ଅନୁଭବ କରେ ଯେ ଗଭୀରତମ ଅନୁଭୂତି, କମନୀୟ ଧାରଣା, ଶକ୍ତିଶାଳୀ ଆବେଗ ଓ ଚିରନ୍ତନ ସତ୍ୟ ପ୍ରକାଶରେ ତାର ସାମର୍ଥ୍ୟ ରହିଛି । ସେହିପରି କବିତାରେ ସଙ୍ଗତି ରକ୍ଷା କରିବା କବି ହୃଦୟର ଏକ ବିଶିଷ୍ଟ ଦିଗ । ଏ ପାଞ୍ଚୋଟି ଦିଗ ଏକ ସୁସମଞ୍ଜସ ଭାବରେ ମିଳିତ ହୋଇ କବିତା ସୃଷ୍ଟିକୁ କମନୀୟ କରନ୍ତି ।

କବିର ବ୍ୟକ୍ତିତ୍ୱ ସମ୍ପର୍କରେ ମଧ୍ୟ ସମୀକ୍ଷା କରାଯାଇପାରେ । କବି ମାନସର ପ୍ରତିବିମ୍ବ ପରୀକ୍ଷା କଲେ କେତୋଟି ଗୁଣ ସ୍ପଷ୍ଟ ହୋଇଉଠେ । କବି ମନର ଏକପ୍ରକାର ଆତ୍ମଶକ୍ତି ଥାଏ । ବିଭିନ୍ନ ଭାବନା, ରୂପକଳ୍ପ ଓ ସମ୍ବେଦନକୁ ସଙ୍ଗଠିତ କରିବାର ସାମର୍ଥ ଥାଏ । କବି ବ୍ୟକ୍ତିତ୍ୱ ସମ୍ବେଦନଶୀଳତାରେ ମାର୍ଜିତ । ଭାଷା ସହିତ ଗଭୀର ଅନୁରକ୍ତି, ଅବସ୍ଥିତି ଓ ସମ୍ପ୍ରସାରଣ ସୃଷ୍ଟିରେ ଅଭିଳାଷ ଏବଂ ବୌଦ୍ଧିକତା, ସଂଯମ କବି ବ୍ୟକ୍ତିତ୍ୱର ବିଶିଷ୍ଟ ଦିଗ । କବିମାନେ ନିଜେ ମତ ଦେଇଛନ୍ତି ଯେ ଅନୁଭୂତି ଗ୍ରହଣ କରିବାରେ ସେମାନଙ୍କର ସାମର୍ଥ୍ୟ ରହିଛି । ଅନୁଭୂତି ଶୃଙ୍ଖଳିତ ଭାବରେ ସଙ୍ଗଠିତ କରିବା ପାଇଁ ଅଭିଳାଷ ଅଛି ଏବଂ ନିଜର ଓ ଅନ୍ୟର ବ୍ୟକ୍ତିତ୍ୱ ଅନ୍ୱେଷଣ କରିବାର ଅଭିଜ୍ଞତା ଅଛି ।

ଉପରୋକ୍ତ ବୈଶିଷ୍ଟ୍ୟ ଗୁଡ଼ିକ ବ୍ୟକ୍ତିତ୍ୱର ଉଜ୍ଜ୍ୱଳ ଦିଗ । କିନ୍ତୁ ଦୈନନ୍ଦିନ ଜୀବନ ନିର୍ବାହ ଓ ଗତାନୁଗତିକ ସମାଜର ପ୍ରତିଷ୍ଠା ପାଇଁ ସାଧାରଣ ବୁଦ୍ଧିମାନ ଲୋକ କେତୋଟି ବ୍ୟାବସାୟିକ ନିୟମ ଉପରେ ନିର୍ଭର କରେ । କବି ଏହି ବ୍ୟାବସାୟିକ ନିୟମର ବହୁ ଊର୍ଦ୍ଧ୍ୱରେ ଏକ ଜୀବନ କ୍ଷେତ୍ରର ସନ୍ଧାନ କରେ । ଏହି ସନ୍ଧାନ ପ୍ରସୂତ ନିଷ୍ଠା ଆବେଗ ଓ ଆତ୍ମୋତ୍ସର୍ଗ ଫଳରେ ତା'ର ମାନସିକ ସ୍ଥିତିର ବିପର୍ଯ୍ୟୟ ଘଟିବା ଅସମୀଚୀନ ନୁହେଁ । ଏହି ପରିପ୍ରେକ୍ଷୀରେ ବିଚାର କଲେ ମନୁଷ୍ୟର ନିଜ ସମ୍ପର୍କରେ ଓ ବିଶ୍ୱ ସମ୍ପର୍କରେ ଭାବଧାରାର ବହୁ କ୍ରାନ୍ତିକାରୀ ପରିବର୍ତ୍ତନ ସତ୍ତ୍ୱେ କବି ସମ୍ପର୍କରେ ଚିନ୍ତାଧାରା ଅପରିବର୍ତ୍ତିତ ରହିବା ବିସ୍ମୟ ଜନକ ନୁହେଁ ।

## ବୈଜ୍ଞାନିକ ଚିନ୍ତାରାଜ୍ୟରେ ସୃଜନଶୀଳତା

ବୈଜ୍ଞାନିକ ଓ ବୈଷୟିକ ପ୍ରଗତିର କେନ୍ଦ୍ରବିନ୍ଦୁ ବୈଜ୍ଞାନିକ । ବୈଜ୍ଞାନିକ-ମାନଙ୍କୁ ବାଦ ଦେଇ କୌଣସି ଦେଶର ବୈଷୟିକ ଉନ୍ନତି ଓ ଅର୍ଥନୈତିକ ଅଭିବୃଦ୍ଧି

କଥା ଚିନ୍ତା କରାଯାଇ ନ ପାରେ । ଯେ କୌଣସି ଦେଶର ଅର୍ଥନୈତିକ ବୈଷୟିକ ତ୍ୱରାନ୍ୱିତ କରିବାକୁ ହେଲେ ପ୍ରଥମେ ବୈଜ୍ଞାନିକ ଓ ଇଞ୍ଜିନିୟରମାନଙ୍କର ସୃଜନଶୀଳ କାର୍ଯ୍ୟର ବିକାଶ ଓ ସେମାନଙ୍କର ମାନସିକ ସଚଳତା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିବାକୁ ହେବ । ଏ ଦୃଷ୍ଟିରୁ ବୈଜ୍ଞାନିକ ସୃଜନଶୀଳତାର ମନୋବୈଜ୍ଞାନିକ ପର୍ଯ୍ୟାଲୋଚନା ଏକ ମୌଳିକ ଆବଶ୍ୟକତା ।

ସୃଜନଶୀଳତା ଅବଶ୍ୟ ବୈଜ୍ଞାନିକ ଚିନ୍ତାରେ ସୀମିତ ନୁହେଁ । କଳା, ସ୍ଥାପତ୍ୟ, ସାହିତ୍ୟ ଏବଂ କ୍ରୀଡ଼ାନୈପୁଣ୍ୟରେ ମଧ୍ୟ ସୃଜନଶୀଳତାର ପରିପ୍ରକାଶ ଘଟେ । କର୍ମର କ୍ଷେତ୍ର ଯାହା ହେଉନା କାହିଁକି, ସମସ୍ତ ସୃଜନଶୀଳ ବ୍ୟକ୍ତିଙ୍କ ମଧ୍ୟରେ କେତୋଟି ବିଶିଷ୍ଟ ଗୁଣ ଦେଖାଯାଏ । ମୌଳିକତା ସୃଜନଶୀଳତାର ମୁଖ୍ୟ ସୂଚକ । ସୁତରାଂ ପ୍ରତି କ୍ଷେତ୍ରରେ ସୃଜନଶୀଳ ବ୍ୟକ୍ତି ନିଜ ନିଜ କ୍ଷେତ୍ରରେ ମୌଳିକତା ପ୍ରଦର୍ଶନ କରିଥାନ୍ତି । ମୌଳିକତାର ଅର୍ଥ ନୁହେଁ ଯେ ଏହା କେବଳ ଅଳ୍ପ କେତେକ ବ୍ୟକ୍ତିଙ୍କଠାରେ ପରିଦୃଷ୍ଟ ହୁଏ । ଖୁବ୍ ମୁଷ୍ଟିମେୟ ଲୋକଙ୍କଠାରେ ଏହା ପରିଦୃଷ୍ଟ ହେବା ସଙ୍ଗେ ସଙ୍ଗେ ଏହା ବାସ୍ତବମୁଖୀ ହୋଇଥାଏ । ସୃଜନାତ୍ମକ କାର୍ଯ୍ୟ ଜନସାଧାରଣଙ୍କ କଲ୍ୟାଣ ସାଧନ କରିଥାଏ କିମ୍ବା ଜନମାନସରେ ଚିନ୍ତାର ଆଲୋଡ଼ନ ସୃଷ୍ଟି କରିଥାଏ । ଏ ଦୃଷ୍ଟିରୁ କୌଣସି ଏକ ପାଗଳର ପ୍ରଳାପ ସଂଖ୍ୟାତ୍ମକ ଦୃଷ୍ଟିରୁ ଦୁଷ୍ପ୍ରାପ୍ୟ ହେଲେ ମଧ୍ୟ ଏହା ସୃଜନାତ୍ମକ ନୁହେଁ ।

ସୃଜନଶୀଳ ବ୍ୟକ୍ତିର ମୌଳିକତା ମୂଳରେ ରହିଛି ତାହାର ବହୁମୁଖୀ ଚିନ୍ତାଧାରା । ସାଧାରଣ ଲୋକେ ଚିନ୍ତା କଲାବେଳେ ଗତାନୁଗତିକତାର ବଶବର୍ତ୍ତୀ ହୋଇ ଏକମୁଖୀ ଚିନ୍ତାର ଶରବ୍ୟ ହୋଇଥାନ୍ତି । ଇଟାଖଣ୍ଡର ବ୍ୟବହାର ଭାବିଲାବେଳେ ଇଟା-ଦ୍ୱାରା ଘର ତିଆରି କରାଯାଇପାରେ, ଅଫିସ ମଧ୍ୟ ତିଆରି କରାଯାଇପାରେ, ସ୍କୁଲ ତିଆରି କରାଯାଇ ପାରେ, ମନ୍ଦିର ତିଆରି କରାଯାଇପାରେ ଏବଂ ହୋଟେଲ ତିଆରି କରାଯାଇ ପାରେ ବୋଲି ଏକମୁଖୀ ଚିନ୍ତା ମନକୁ ଆସେ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଏ କ୍ଷେତ୍ରରେ ପ୍ରତି ଚିନ୍ତାର କେନ୍ଦ୍ରବିନ୍ଦୁ ହେଉଛି କିଛି ନିର୍ମାଣ କରିବା । ସୃଜନଶୀଳ ବ୍ୟକ୍ତିମାନେ ନିଜକୁ ଏପରି ଏକମୁଖୀ ଚିନ୍ତାରୁ ମୁକ୍ତ କରି ମୌଳିକ ଚିନ୍ତା ଦର୍ଶାଇ ଥାଆନ୍ତି । ଅାଲୋଚିତ ଉଦାହରଣରେ ଜଣେ ସୃଜନଶୀଳ ପିଲା ବା ବ୍ୟକ୍ତି ଇଟାକୁ ନେଇ ଗୃହ ନିର୍ମାଣ କରିବା, କାନ୍ଥରେ କିଛି ଲେଖିବା, ବଲ୍ଟୁକୁ ଘଷିଦେଇବା, ଦ୍ୱାର ଖୋଲି ରଖିବା ପାଇଁ ବ୍ୟବହାର କରିବା ଏବଂ ହାତ ନ ପାଉଥିଲେ ଇଟା ଉପରେ ଠିଆହୋଇ କୌଣସି ସ୍ଥାନକୁ ହାତ ବଢ଼େଇବା ଇତ୍ୟାଦି ଭିନ୍ନ ଭିନ୍ନ କାର୍ଯ୍ୟ ଚିନ୍ତା କରିପାରନ୍ତି । ଏପରି ଚିନ୍ତାରେ କେବଳ ଚିନ୍ତାର ପରିମାଣ ବେଶି ନୁହେଁ, ଚିନ୍ତାର ଶ୍ରେଣୀ ମଧ୍ୟ ଅଧିକ । ସ୍ଥୂଳତଃ, ପ୍ରତି କ୍ଷେତ୍ରର ସୃଜନଶୀଳ ବ୍ୟକ୍ତି ବହୁମୁଖୀ

ଚିନ୍ତାଧାରାର ପରିଚୟ ଦେଇ ଥାଆନ୍ତି । ବହୁମୁଖୀ ଚିନ୍ତା ବ୍ୟତୀତ ସୃଜନଶୀଳ ବୈଜ୍ଞାନିକମାନଙ୍କର ଅନ୍ୟ କେତୋଟି ବୈଶିଷ୍ଟ୍ୟ ରହିଛି ।

**ବୈଜ୍ଞାନିକ ଚିନ୍ତାର ବୈଶିଷ୍ଟ୍ୟ**

ସୃଜନଶୀଳ ବୈଜ୍ଞାନିକମାନଙ୍କର ତିନୋଟି ବୈଶିଷ୍ଟ୍ୟ ଉଲ୍ଲେଖଯୋଗ୍ୟ । ମନୋବିଜ୍ଞାନୀମାନେ ବହୁ ବୈଜ୍ଞାନିକମାନଙ୍କୁ ପର୍ଯ୍ୟବେକ୍ଷଣ କରି ଏହି ତିନୋଟି ବୈଶିଷ୍ଟ୍ୟ ପ୍ରତି ଆଲୋକପାତ କରିଛନ୍ତି । ପ୍ରଥମତଃ ବହୁ ବୈଜ୍ଞାନିକଙ୍କର ରୂପାନ୍ତରୀକରଣ (Transformation)ରେ ଅପୂର୍ବ ଦକ୍ଷତା ଥାଏ । ସେମାନେ କୌଣସି ବସ୍ତୁ ଓ ଧାରଣାର ଭିନ୍ନ ଭିନ୍ନ ପରିବର୍ତ୍ତନ ଏବଂ ସେ ପରିବର୍ତ୍ତନଗୁଡ଼ିକର ଫଳାଫଳ କଳ୍ପନା କରିପାରନ୍ତି । ଉଦାହରଣ ସ୍ୱରୂପ କୁହାଯାଇ ପାରେ ଯେ ଏପରି ସୃଜନଶୀଳ ବୈଜ୍ଞାନିକମାନେ ଗୋଟିଏ ଯନ୍ତ୍ରର ଅଂଶବିଶେଷ ଗୁଡ଼ିକର ସଜ୍ଜୀକରଣ ବଦଳାଇ ଅନ୍ୟ ପ୍ରକାରେ ସଜାଇଲେ କିପରି ଦିଶିବ, ତାହା ମନେ ମନେ କଳ୍ପନା କରିପାରନ୍ତି । କୌଣସି ଏକ ବସ୍ତୁର ଉପାଦାନଗୁଡ଼ିକର ପୁନଃଗଠନ କରାଇ ବସ୍ତୁଟି ଦ୍ୱାରା ପୃଥକ୍ କାର୍ଯ୍ୟକରାଇବାର ସମ୍ଭାବନା ଦେଖିପାରନ୍ତି । ଗୋଟିଏ ଦିଆସିଲି କାଠିର ବ୍ୟବହାର କରି କେବଳ ଅଗ୍ନିସଞ୍ଚାର କରାଯାଇ ନ ଥାଏ, ଗୋଟିଏ ଦିଆସିଲିର ପରିଷ୍କାର ପାର୍ଶ୍ୱକୁ ବ୍ୟବହାର କରି ଏକ କାଚନଳୀକୁ ମଧ୍ୟ ପରିଷ୍କାର କରାଯାଇ ପାରେ, ଏ କଥା ସୃଜନଶୀଳ ବୈଜ୍ଞାନିକ ସହଜରେ ଚିନ୍ତା କରିପାରନ୍ତି । ମୋଟ ଉପରେ ଗତାନୁଗତିକ ଭାବଧାରାରୁ ନିଜକୁ ମୁକ୍ତକରି ବିଭିନ୍ନ ବସ୍ତୁ ଓ ଧାରଣାର ଅବସ୍ଥାନ୍ତର ଚିନ୍ତା କରିପାରିବାର ଦକ୍ଷତା ଏମାନଙ୍କର ଥାଏ । ଏ ଦକ୍ଷତା ବଳରେ ବୈଜ୍ଞାନିକମାନେ ନିଜ ସୃଜନାତ୍ମକ କାର୍ଯ୍ୟଧାରାରେ ଆସୁଥିବା କେତେକ ସମସ୍ୟାର ସମାଧାନ କରିବା ସଙ୍ଗେ ସଙ୍ଗେ ବହୁସ୍ଥଳରେ ନୂତନ ଜିନିଷର ଉଦ୍ଭାବନ କରନ୍ତି ।

ଅନ୍ୟାନ୍ୟ ସୃଜନଶୀଳ ବ୍ୟକ୍ତିଙ୍କ ପରି ସୃଜନକ୍ଷମ ବୈଜ୍ଞାନିକମାନେ ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ପାଇଁ ସବୁବେଳେ ପ୍ରଯତ୍ନଶୀଳ । ବହୁ ଶିଳ୍ପାନୁଷ୍ଠାନର ସୁଦକ୍ଷ ବୈଜ୍ଞାନିକମାନଙ୍କର କାର୍ଯ୍ୟପଦ୍ଧତିକୁ ପର୍ଯ୍ୟବେକ୍ଷଣ କରି ଦେଖାଯାଇଛି ଯେ ବୈଜ୍ଞାନିକମାନେ ଉତ୍ପାଦନଶୀଳତା ଅପେକ୍ଷା ଉତ୍ପାଦିତ ବସ୍ତୁର ଗୁଣ ଓ ମୌଳିକତା ଉପରେ ଅଧିକ ଗୁରୁତ୍ୱ ଦିଅନ୍ତି । ସେମାନେ ଅନୁଷ୍ଠାନର ଗତାନୁଗତିକ ନିୟମକୁ ସ୍ଥଳବିଶେଷରେ ବିରୋଧ କରନ୍ତି ଏବଂ ଚିନ୍ତାଧାରାର ସ୍ୱାତନ୍ତ୍ର୍ୟ ପାଇଁ ସଂଗ୍ରାମ କରନ୍ତି । ମନୋବିଜ୍ଞାନୀ ନାପ୍ ଦର୍ଶାଇଛନ୍ତି ଯେ ସୃଜନକାମୀ ଗବେଷକମାନେ ବହୁ ସମୟରେ ସ୍ୱାଧୀନ ସମୟ ପାଇଁ ଉଦ୍ୟମ କରିଥାନ୍ତି । ଏହି ସ୍ୱାଧୀନ ସମୟରେ ବୈଜ୍ଞାନିକ ରୁଟିନବନ୍ଧା କାର୍ଯ୍ୟରୁ ନିଜକୁ ମୁକ୍ତ କରି ଉତ୍ପାଦନ ଓ ରୁଟିନ ସହିତ ଜଡ଼ିତ ନ ଥିବା କିଛି କାର୍ଯ୍ୟ କରନ୍ତି । ଏପରି ସ୍ଥଳରେ ଗବେଷକ ଲାଭ-କ୍ଷତିର ବିଚାରରେ ପୀଡ଼ିତ ନ ହୋଇ ସୃଜନାତ୍ମକ କାର୍ଯ୍ୟରେ ସମସ୍ତ ବିନିଯୋଗ କରନ୍ତି ଏବଂ ମୌଳିକତା ପ୍ରଦର୍ଶନ କରନ୍ତି ।

ବୈଜ୍ଞାନିକମାନଙ୍କର ଆଉ ଏକ ବୈଶିଷ୍ଟ୍ୟ ହେଉଛି ସେମାନେ କେତେକାଂଶରେ ସୁଦକ୍ଷ ବ୍ୟବସାୟୀ ସହିତ ସମାନ । ଜଣେ ସୁଦକ୍ଷ ବ୍ୟବସାୟୀ ଯେପରି କେତେକ ସ୍ଥଳରେ କ୍ଷତିର ସମ୍ଭାବନା ଥିଲେ ମଧ୍ୟ ସେ କାର୍ଯ୍ୟଟି ହାତକୁ ନେବାକୁ ଆଗଭର ହୁଏ ଏବଂ ସେ କାମଟି କରିବା ସମୟରେ ତାକୁ ଉପଭୋଗ କରେ, ବୈଜ୍ଞାନିକମାନେ ମଧ୍ୟ କ୍ଷତିର ସମ୍ଭାବନା ଥିବା ସ୍ଥଳେ କେତେକ କାର୍ଯ୍ୟରେ ସମୟ ଦେଇ ଥାଆନ୍ତି । ପ୍ରାୟ ପ୍ରତ୍ୟେକ ବୈଜ୍ଞାନିକ କିଛି ପରିମାଣରେ କ୍ଷତିର ସମ୍ଭାବନା ଥିବା ଗବେଷଣା ଗ୍ରହଣ କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ । ଏହି ଗବେଷଣା ମଧ୍ୟରେ ସେ ଆନନ୍ଦ ପାଆନ୍ତି ଏବଂ ଅଧିକରୁ ଅଧିକ ସୃଷ୍ଟି କରିବା ପାଇଁ ଉଦ୍ୟମ କରନ୍ତି । ଅବଶ୍ୟ ଏ କଥା ନୁହେଁ ଯେ ବୈଜ୍ଞାନିକ କୌଣସି ଉଦ୍ଦେଶ୍ୟହୀନ ଭାବରେ କାର୍ଯ୍ୟରେ ଲାଗେଇଯାଆନ୍ତି । ପ୍ରଖ୍ୟାତ ମନୋବିଜ୍ଞାନୀ ମାକକ୍ଲିଲାଣ୍ଡଙ୍କ ମତରେ ପ୍ରତି ବୈଜ୍ଞାନିକ ବିଶେଷ ଭାବରେ ଲକ୍ଷ୍ୟ ସାଧନମୁଖୀ । ସାଧାରଣ ଲୋକଙ୍କ ତୁଳନାରେ ନିଜର ଲକ୍ଷ୍ୟ ପ୍ରତି ସେମାନଙ୍କର ସ୍ଥିରତା, ଦୃଢ଼ତା ଓ ଆତ୍ମମୁଖ୍ୟ ଖୁବ ବେଶି । କିନ୍ତୁ ଲକ୍ଷ୍ୟ ସାଧନ ବେଳେ ଏମାନେ ସବୁବେଳେ ଲାଭ କ୍ଷତିର ବିଚାରରେ ପ୍ରଭାବିତ ହୋଇ ନ ଥାନ୍ତି । ଦୁଃସାହସିକତା ଏମାନଙ୍କ ଲକ୍ଷ୍ୟ ସାଧନର ଏକ ବିଶିଷ୍ଟ ସ୍ୱରୂପ ଏବଂ ସୃଜନଶୀଳ ବୈଜ୍ଞାନିକମାନେ ବିପଦର ସମ୍ଭାବନା ଥିବା କ୍ଷେତ୍ରରେ ମଧ୍ୟ ନିଜର ଶକ୍ତି ଓ ସମୟ ନିୟୋଜନ କରନ୍ତି ।

## ସୃଜନ ପ୍ରକ୍ରିୟା

ସୃଜନଶୀଳ ବୈଜ୍ଞାନିକମାନଙ୍କ ପରି ବିଜ୍ଞାନ-ଭିତ୍ତିକ ସୃଜନ ପ୍ରକ୍ରିୟାର ମଧ୍ୟ କେତେକ ବୈଶିଷ୍ଟ୍ୟ ରହିଛି । ବୈଜ୍ଞାନିକ ଚିନ୍ତା ପ୍ରକ୍ରିୟା ମଧ୍ୟରେ ବୈଜ୍ଞାନିକର ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଜଡ଼ିତ ଥାଏ । ବୈଜ୍ଞାନିକ ଚିନ୍ତାରାଜ୍ୟରେ କୌଣସି ଏକ ସମସ୍ୟା ସମାଧାନ କରିବାକୁ ଏ ପ୍ରକ୍ରିୟା ଆରମ୍ଭ ହୁଏ । ବେଳେ ବେଳେ ଜନ ଜୀବନରେ କୌଣସି ଏକ ସମସ୍ୟାର ସମାଧାନ କରିବା ପାଇଁ କିମ୍ବା ଜନଜୀବନର କୌଣସି ଏକ ଦିଗକୁ ସୁଖକର କରିବା ପାଇଁ ବୈଜ୍ଞାନିକ ସୃଜନ ପ୍ରକ୍ରିୟାର ଆରମ୍ଭ ଘଟେ । ପ୍ରଖ୍ୟାତ ବୈଜ୍ଞାନିକ କୁନ୍‌ଙ୍କ ମତରେ ପ୍ରଥମେ ବୈଜ୍ଞାନିକଙ୍କ ମନରେ ଏକ ସଙ୍ଘର୍ଷ ସୃଷ୍ଟି ହୁଏ । ବୈଜ୍ଞାନିକ ଜଣକ ଯେତେବେଳେ ଅନୁଭବ କରନ୍ତି ଯେ ପୂର୍ବରୁ ପ୍ରଚଳିତ ଜ୍ଞାନ, ଧାରଣା ଓ ପଦ୍ଧତି ଦ୍ୱାରା ଅନ୍ୟ କେତେଗୁଡ଼ିଏ ଜିନିଷକୁ ବୁଝିବା ସମ୍ଭବପର ହେଉନାହିଁ, ତାହା ବୈଜ୍ଞାନିକ ମନରେ ଆଲୋଡ଼ନ ସୃଷ୍ଟି କରେ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ବହୁ ପୂର୍ବରୁ ବିଶ୍ୱାସ କରି ଯାଉଥିଲେ ଯେ ପୃଥିବୀର ଆକାର ଚଟକା । ଏ ବିଶ୍ୱାସ ଥାଇ ମଧ୍ୟ ବିଶ୍ୱରେ ଲୋକେ ଜଳଯାତ୍ରା କରୁଥିଲେ ଏବଂ ନୌବାଣିଜ୍ୟ ଚାଲିଥିଲା । ମାତ୍ର ପରେ ଦେଖାଗଲା ଯେ ପୃଥିବୀକୁ ଚଟକା ମନେ କରି ଯେଉଁ ସବୁ ହିସାବ ଆସୁଛି, ସେ ଅନୁସାରେ କେତେକ କାର୍ଯ୍ୟ ହୋଇ ପାରୁନାହିଁ । ଏହା ବୈଜ୍ଞାନିକ ଚିନ୍ତା ରାଜ୍ୟରେ ଗଭୀର ଆଲୋଡ଼ନ ସୃଷ୍ଟି କଲା ।

ବୈଜ୍ଞାନିକମାନେ ନିଜର ସୃଜନାତ୍ମକ କାର୍ଯ୍ୟ ମାଧ୍ୟମରେ ନୂତନ ସିଦ୍ଧାନ୍ତରେ ପହଞ୍ଚିଲେ ଯେ ପୃଥିବୀ ହେଉଛି ଗୋଲକାର ।

ଗବେଷଣାରୁ ଆହୁରି ମଧ୍ୟ ଦେଖାଯାଇଛି ଯେ ବୈଜ୍ଞାନିକ ସୃଜନ ପ୍ରକ୍ରିୟା ସମୟରେ ମାନସିକ ଆଲୋଡ଼ନ ସହିତ ଶାରୀରିକ ଦୋଳନ ମଧ୍ୟ ଦେଖାଯାଏ । ବୈଜ୍ଞାନିକ ନିଜ ମାଂସପେଶୀରେ ଦୋଳନ ଅନୁଭବ କରନ୍ତି ଏବଂ ଭାବନାର ପ୍ରଖରତା ସହିତ ଏହି ଦୋଳନର ଗତି ମଧ୍ୟ ବୃଦ୍ଧି ପାଏ । ସୃଜନ ପ୍ରକ୍ରିୟା ଆରମ୍ଭ ହେବାର ପରେ ପରେ ଯେ ବୈଜ୍ଞାନିକ ସ୍ଥିର ସିଦ୍ଧାନ୍ତ ପାଇଯାଆନ୍ତି, ସେ କଥା ନୁହେଁ । ପ୍ରାଥମିକ ଅବସ୍ଥାରେ ବହୁ ଭ୍ରମ, ବହୁ ପ୍ରମାଦ ତାଙ୍କ କାର୍ଯ୍ୟରେ ଦେଖାଯାଇ ପାରେ । ମାତ୍ର ସୃଜନପ୍ରକ୍ରିୟା ଅଧିକରୁ ଅଧିକ ଗତି କରିବା ସଙ୍ଗେ ସଙ୍ଗେ ଭ୍ରମାତ୍ମକ ଚିନ୍ତାର ସଂଖ୍ୟା କମେ ଓ ଚିନ୍ତାଧାରା ଅଧିକ ସଂଗଠିତ ହୁଏ । ବହୁ କ୍ଷେତ୍ରରେ ଦେଖାଯାଇଛି ଯେ ବୈଜ୍ଞାନିକମାନେ ଦୀର୍ଘଦିନ ଧରି କୌଣସି ଏକ ବିଷୟରେ ଗବେଷଣା କରି ମଝିରେ କିଛିଦିନ ଛାଡ଼ିଦିଅନ୍ତି ଏବଂ କିଛିଦିନ ପରେ ପୁଣି କାମ ଆରମ୍ଭ କରନ୍ତି । ବାସ୍ତବରେ ଛାଡ଼ିଦେଇଥିବା ଦିନ ଗୁଡ଼ିକରେ ବାହ୍ୟିକ କାର୍ଯ୍ୟର ବିରତି ଘଟିଥିଲେ ମଧ୍ୟ ମାନସିକ କାର୍ଯ୍ୟ ଅବ୍ୟାହତ ଥାଏ । ଏହି ସମୟକୁ ଅଧିପାଳନ (Incubation)ର ସମୟ ବୁଝାଯାଏ ।

ବୈଜ୍ଞାନିକ ସୃଜନ ପ୍ରକ୍ରିୟାର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ଚେତନ ଓ ଅବଚେତନ କାର୍ଯ୍ୟର ସମନ୍ୱୟ । ସାଧାରଣତଃ ବୈଜ୍ଞାନିକର କାର୍ଯ୍ୟ ଏକ ଲକ୍ଷ୍ୟ ବିନ୍ଦୁରୁ ଆରମ୍ଭ ହେଲେ ମଧ୍ୟ ତା'ର ଯେଉଁ ସୃଜନାତ୍ମକ ସମାଧାନ ହୁଏ, ସେ ସମାଧାନର ପରିପ୍ରେକ୍ଷୀ ପ୍ରଥମେ ଅସ୍ପଷ୍ଟ ଥାଏ । କିଛି ଅସ୍ପଷ୍ଟ ଧାରଣା, ଅସ୍ପଷ୍ଟ ଆବେଗ ଓ ଅସଂଗଠିତ ଭାବନାରାଜି ମଧ୍ୟରେ ସୃଜନଶୀଳ ଚିନ୍ତାଟି ଜନ୍ମ ନିଏ । ଏହି ଅବସ୍ଥାରୁ ଚିନ୍ତାଟି ଏକ ସଂଗଠିତ ରୂପକୁ ଗତି କରେ ଏବଂ ପୂର୍ବର ଆବେଗଜଡ଼ିତ ଭାବନା କିଛି ସମୟ ବ୍ୟବଧାନରେ ସ୍ପଷ୍ଟ ରୂପ ଗ୍ରହଣ କରେ । ଅସ୍ପଷ୍ଟ ଅବସ୍ଥାରୁ ସ୍ପଷ୍ଟ ରୂପରେଖକୁ ଗତି ପ୍ରକ୍ରିୟା ସ୍ୱତଃସ୍ଫୂର୍ତ୍ତି ଓ ଅବଚେତନ ପ୍ରସୂତ ହୋଇଥାଏ । ସୃଜନଶୀଳ ଧାରଣାଟି ସ୍ପଷ୍ଟ ରୂପ ପାଇବାରେ ବୈଜ୍ଞାନିକ ଉତ୍ସାହ ଉଦ୍ଦୀପନା ଅନୁଭବ କରନ୍ତି ଏବଂ ଏକ ଗଭୀର ଆନନ୍ଦ ତାଙ୍କୁ ସ୍ପର୍ଶ କରେ ।

ସୃଜନାତ୍ମକ ପ୍ରକ୍ରିୟାରେ ଆବେଗର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । କାର୍ଯ୍ୟକାଳ ମଧ୍ୟରେ ବୈଜ୍ଞାନିକ ସାଧାରଣତଃ ଚଞ୍ଚଳତା ଅନୁଭବ କରନ୍ତି । ଏହି ଚଞ୍ଚଳତା ତାଙ୍କ ଶରୀରର ବିଭିନ୍ନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରେ ଏବଂ କାର୍ଯ୍ୟକୁ ଗତିଶୀଳ କରେ । ଜଣେ ସୃଜନକ୍ଷମ ବୈଜ୍ଞାନିକ ଏହି ଚଞ୍ଚଳତାକୁ ନିଜ ଶରୀରରେ ସୀମିତ ରଖି କାର୍ଯ୍ୟ କରିଥାଆନ୍ତି । ନିଜ କାର୍ଯ୍ୟର ସଫଳ ରୂପାୟନ ପାଇଁ ସେ ଅତ୍ୟଧିକ ବ୍ୟସ୍ତ ହୋଇ ନିଜର ସୃଜନାତ୍ମକ ଉଦ୍ୟମକୁ କ୍ଷିପ୍ର କରନ୍ତି ନାହିଁ । ନିଜର

ଉଚ୍ଚ'ଶକ୍ତି ପ୍ରୟୋଗ କରି ଷ୍ଟବନାର ଗତିକୁ ନିୟନ୍ତ୍ରଣ କରନ୍ତି । ବୈଜ୍ଞାନିକ ପ୍ରକ୍ରିୟାର ପୃଷ୍ଠଭୂମି ଓ ପରିପ୍ରେକ୍ଷୀ ପାଇଁ ବୈଜ୍ଞାନିକର ଇଚ୍ଛା ଓ ସଙ୍କଳ୍ପ ଯେପରି ଆବଶ୍ୟକ, ପ୍ରକ୍ରିୟାର ପ୍ରବାହ ଓ ସଫଳ ରୂପାୟନ ପାଇଁ ଅନ୍ତର୍ଦୃଷ୍ଟି ସେପରି ଆବଶ୍ୟକ । ମାନସିକ ଅବସ୍ଥା ବ୍ୟତୀତ ପାରିପାର୍ଶ୍ୱିକ କେତେକ ଘଟଣା ସୃଜନ ପ୍ରକ୍ରିୟାର ପ୍ରବାହକୁ ନିୟନ୍ତ୍ରଣ କରେ ।

## ବ୍ୟକ୍ତିଗତ ସମସ୍ୟା ଓ ସୃଜନଶୀଳତା :

ବୈଜ୍ଞାନିକ ଅନ୍ୟମାନଙ୍କ ପରି ଜଣେ ମନୁଷ୍ୟ । ଜୀବନ ଘଟଣା ବହୁଳ ହେଲେ ପରି ବୈଜ୍ଞାନିକଙ୍କର ମଧ୍ୟ ବ୍ୟକ୍ତିଗତ ସମସ୍ୟା ସୃଷ୍ଟି ହୁଏ । କିନ୍ତୁ ଆମର ସମାଜ ସଂସ୍ଥାରେ ବୈଜ୍ଞାନିକ ଓ ତାଙ୍କର ଦାନର ଗୁରୁତ୍ୱ ଦୃଷ୍ଟିରୁ ବୈଜ୍ଞାନିକର ବ୍ୟକ୍ତିଗତ ସମସ୍ୟା ତା'ର ସୃଜନମୁଖୀ କାର୍ଯ୍ୟଧାରାକୁ କିପରି ପ୍ରଭାବିତ କରେ, ତାହା ଅନୁଶୀଳନ କରିବା ଏକ ସାମାଜିକ ଦାୟିତ୍ୱ । ସ୍କୁଲ ଶିକ୍ଷାଲାଭ ଆରମ୍ଭ କାଳରୁ ଶେଷ ଜୀବନ ପର୍ଯ୍ୟନ୍ତ ଉଦ୍ଭୂତ ବହୁ ସମସ୍ୟା ବୈଜ୍ଞାନିକର କାର୍ଯ୍ୟକୁ ପ୍ରଭାବିତ କରେ । ସବୁ ସମସ୍ୟା ଯେ ସମସ୍ତ ବୈଜ୍ଞାନିକଙ୍କୁ କ୍ଷତିଗ୍ରସ୍ତ କରେ, ତା ନୁହେଁ । ତଥାପି ଏ ସମସ୍ୟାଗୁଡ଼ିକର ଉତ୍ସ ଓ ରୂପରେଖକୁ ବୁଝିଲେ, କେତେକ ସ୍ଥଳରେ ତାହାର ନିରାକରଣ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିବା ସମ୍ଭବ ହୁଏ ।

ବୈଜ୍ଞାନିକ ଜଣଙ୍କର କୈଶୋର ଜୀବନରେ ପ୍ରଥମ ସମସ୍ୟା ସୃଷ୍ଟି ହୋଇପାରେ ନିଜ ପରିବାର ମଧ୍ୟରେ । ଭବିଷ୍ୟତର ବୈଜ୍ଞାନିକ ନିଜର ସ୍କୁଲ ଶିକ୍ଷା ସମୟରେ ଏକ ନିର୍ଦ୍ଦିଷ୍ଟ ମୂଲ୍ୟବୋଧ ଶିକ୍ଷା କରନ୍ତି । ସ୍କୁଲର ଏହି ମୂଲ୍ୟବୋଧ ସହିତ ପାରିବାରିକ ମୂଲ୍ୟବୋଧର ମେଳ ନ ଥିଲେ, ଏକ ଅସ୍ୱସ୍ତିକର ଅବସ୍ଥା ସୃଷ୍ଟି ହୁଏ । ସ୍କୁଲ ମୂଲ୍ୟବୋଧରେ ପୁସ୍ତକ ଅଧ୍ୟୟନ ଓ ଆଲୋଚନାର ଏକ ଗୁରୁତ୍ୱ ରହିଛି । ଜଣେ ଉଦୀୟମାନ କିଶୋରର ପରିବାରରେ ପୁସ୍ତକ ଅଧ୍ୟୟନକୁ ଗୁରୁତ୍ୱ ଦିଆ ନ ଯିବା ଅସମ୍ଭବ ନୁହେଁ ଏହା ଯେ କେବଳ ନିମ୍ନବିତ୍ତ ପରିବାରରେ ହୁଏ ତା ନୁହେଁ ଉଚ୍ଚବିତ୍ତ ପରିବାରରେ ମଧ୍ୟ ଅଧ୍ୟୟନ ଅପେକ୍ଷା ବ୍ୟବସାୟ ଓ ରାଜନୀତି ଇତ୍ୟାଦି ଅର୍ଥକରି ପନ୍ଥା ଉପରେ ଅଧିକ ପ୍ରାଧାନ୍ୟ ଦିଆଯାଇଥାଏ । ପରିବାର ଓ ବିଦ୍ୟାଳୟର ପରସ୍ପର ବିରୋଧୀ ମୂଲ୍ୟବୋଧ ମଧ୍ୟରେ ପ୍ରତିଭାଶାଳୀ ଛାତ୍ର ଜଣକ ଦ୍ୱନ୍ଦ୍ୱ ଅନୁଭବ କରନ୍ତି ।

ପ୍ରତିଭାଶାଳୀ ଛାତ୍ରର ଦ୍ୱନ୍ଦ୍ୱ ଆଉ ଏକ ସ୍ତରରେ ମଧ୍ୟ ସୃଷ୍ଟି ହୁଏ । ତାହା ହେଉଛି ସାଧାରଣ ଛାତ୍ରମାନଙ୍କଠାରୁ ଦୂରେଇ ଯିବାର ଦ୍ୱନ୍ଦ୍ୱ । ସ୍କୁଲରେ ସାଧାରଣତଃ ଦେଖାଯାଏ ଯେ ଗୋଟିଏ ପିଲା ଅଧିକ ଦୀର୍ଘକାୟ ହେଲେ, ତାକୁ ଦଳରେ ଅନ୍ତର୍ଭୁକ୍ତ କରାଯାଇ ନାହିଁ । ଅତିବେଶି ଖର୍ବକାୟ ହେଲେ ଦଳରେ ଅନ୍ତର୍ଭୁକ୍ତ କରାଯାଇ ନାହିଁ । ପ୍ରଚ୍ଛନ୍ନଭାବେ ବୈଜ୍ଞାନିକ ପ୍ରତିଭା ଥିବା ଛାତ୍ରମାନେ ଅସାଧାରଣ ବୁଦ୍ଧିସମ୍ପନ୍ନ ହୋଇ-

ଥିବାରୁ ଗ୍ରୁପଦଳରେ ସ୍ଥାନ ପାଇବାରେ ତାର ଅସୁବିଧା ହୋଇପାରେ । ସୌଭାଗ୍ୟବଶତଃ ଯଦି ସେ ଏକ କ୍ଷୁଦ୍ର ଦଳର ଅନ୍ତର୍ଭୁକ୍ତ ହୁଏ, ତେବେ ଏହା ଏକ ସମସ୍ୟା ହୋଇ ରହିବନାହିଁ । ସ୍କୁଲ ଜୀବନର ଅନ୍ୟତମ ସମସ୍ୟା ହେଉଛି ସ୍କୁଲ ପାଠ୍ୟକ୍ରମରେ ଭାଷା-ଜ୍ଞାନ ଉପରେ ଦିଆଯାଉଥିବା ଗୁରୁତ୍ୱ । ବିଜ୍ଞାନ ଶିକ୍ଷା-ମୁଖୀ ବହୁ ଛାତ୍ରଙ୍କର କମ୍ ପରି-ମାଣରେ ଭାଷାଗତ ଦକ୍ଷତା ଥାଇପାରେ । କିନ୍ତୁ ଭାଷାଗତ ଦକ୍ଷତା ଉପରେ ଶିକ୍ଷକଙ୍କ ଗୁରୁତ୍ୱ ଆରୋପ କେତେକାଂଶରେ ସୃଜନଶୀଳ ଛାତ୍ର ପକ୍ଷରେ ସମସ୍ୟା ସୃଷ୍ଟି କରେ । କେତେକ ସ୍ଥଳରେ ଶିକ୍ଷକ ଭାଷାଗତ ଦକ୍ଷତାକୁ ଯୋଗାଯୋଗର ଏକ ସୁଗମ ମାଧ୍ୟମ ମଧ୍ୟରେ ସୀମିତ ନ ରଖି ତା ପ୍ରତି ଏକ ନୈତିକତା ବିଜଡ଼ିତ ଔଚିତ୍ୟବୋଧ ଆରୋପ କରନ୍ତି । ସେହିପରି ଶୁଦ୍ଧ ବନାନ୍ ଓ ଶୁଦ୍ଧ ଉଚ୍ଚାରଣ ଉପରେ ମାତ୍ରାଧିକ ଗୁରୁତ୍ୱ ସୃଜନ-ଶୀଳ ବୈଜ୍ଞାନିକ ପାଇଁ ସମସ୍ୟା ସୃଷ୍ଟି କରେ । ଶିକ୍ଷକମାନେ ଅନ୍ୟ କେତେକ ସ୍ଥଳରେ ଛାତ୍ରର ଅସ୍ୱାଭାବିକ ଧାରଣାକୁ ବନ୍ୟ ଓ ନିର୍ବୋଧ ଆଖ୍ୟା ଦେଇ ଚିନ୍ତାଧାରାର ସହଜ ସ୍ୱାଭାବିକ ପ୍ରକାଶକୁ ବିରୋଧ କରନ୍ତି । ଏହା ସୃଜନଶୀଳତାର ଅନ୍ତରାୟ ।

ସୃଜନକାମୀ ବୈଜ୍ଞାନିକର ଅନ୍ୟ ଏକ ସମସ୍ୟା ହେଉଛି ତାର ଅନୁସନ୍ଧିତ୍ସା ପ୍ରତି ବିରୋଧଭାବ । କେତେକ ସ୍ଥଳରେ ଛାତ୍ରର ମାତ୍ରାଧିକ କୌତୂହଳ ଛାତ୍ର ତଥା ଅନ୍ୟମାନଙ୍କର ଜୀବନକୁ ବିପନ୍ନ କରିପାରେ । ଅତିବେଶି କୌତୂହଳୀ ହୋଇ ପିଲାଟି ଦିଆସିଲର ଅନିୟନ୍ତ୍ରିତ ବ୍ୟବହାର କଲେ ଜୀବନକୁ ହାନି ହୁଏ । କିନ୍ତୁ ଅନ୍ୟ କେତେକ ସ୍ଥଳରେ ଶିକ୍ଷକ ଓ ଅଭିଭାବକମାନେ ଅଯଥା ଭାବିବସନ୍ତି ଯେ ଛାତ୍ରର ଅଧିକ କୌତୂହଳ ତା' ନିଜ ବିକାଶର ଅନ୍ତରାୟ । ଉପଯୁକ୍ତ ତତ୍ତ୍ୱାବଧାନ ମଧ୍ୟରେ ଛାତ୍ରର କୌତୂହଳର ପରିସର ପରିବ୍ୟାପ୍ତ ହେଲେ ଏହା ତାହାର ମାନସିକ ବିକାଶରେ ସହାୟକ ହୁଏ ।

ସୃଜନମୁଖୀ ବୈଜ୍ଞାନିକ ନିଜର ଚିନ୍ତାଧାରା ଓ କାର୍ଯ୍ୟରେ ଖୁବ୍ ବେଶି ସମୟ ଦେଉଥିବାରୁ ସାମାଜିକ ସମ୍ପର୍କ ରକ୍ଷା ଦିଗରେ ସମସ୍ୟା ସୃଷ୍ଟି ହୋଇପାରେ । ବିଶେଷ କରି ସୃଜନଶୀଳ ବ୍ୟକ୍ତି ନିଜର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ପାଇଁ ପ୍ରଯତ୍ନଶୀଳ ହେବା ସମୟରେ ତା'ର ସାମାଜିକ ଜୀବନ କିଛି ପରିମାଣରେ କ୍ଷତିଗ୍ରସ୍ତ ହୋଇପାରେ । ତଥାପି କେତେକ ବୈଜ୍ଞାନିକଙ୍କ ଜୀବନୀ ଅନୁଶୀଳନରୁ ଦେଖାଯାଏ ଯେ ସେମାନଙ୍କ ସାମାଜିକ ଜୀବନ ସୁଖମୟ ଥିଲା । ସ୍ୱାଧୀନତା ସବୁବେଳେ ସମ୍ବେଦନଶୀଳତାର ବିରୋଧୀ ନୁହେଁ । ବୈଜ୍ଞାନିକ ଜଣେ ନିଜର ସ୍ୱାଧୀନତାକୁ ଅତୁଟ ରଖି ପୂର୍ଣ୍ଣାଙ୍ଗ ସାମାଜିକ ଜୀବନଯାପନ କରିପାରନ୍ତି, କିନ୍ତୁ ଏଥିପାଇଁ ସଚେତନଶୀଳ ଉଦ୍ୟମ ଆବଶ୍ୟକ । ସେହିପରି ବୈଜ୍ଞାନିକ ଜଣକ ଗବେଷଣାରେ ବହୁ ସମୟ ଦେଉଥିବାରୁ ନିଜର ପେଶା ଓ ପରିବାର ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇପାରେ । କେତେକ ବୈଜ୍ଞାନିକଙ୍କ ଜୀବନରେ ପାରିବାରିକ ବିପର୍ଯ୍ୟୟ ପରିଲକ୍ଷିତ ହୋଇଛି । ଅନ୍ୟ ପକ୍ଷରେ କେତେକ ବୈଜ୍ଞାନିକ ପାରିବାରିକ ଆନନ୍ଦ ଲାଭରୁ

ବଞ୍ଚିତ ହୋଇନାହାନ୍ତି । ଏ ଦ୍ୱନ୍ଦ୍ୱ ଯେ ଏକ ସମସ୍ୟାର ରୂପ ନେଇ ପାରେ, ସେ ସଚେତନଶୀଳତା ବ୍ୟକ୍ତି ପକ୍ଷରେ ନିତାନ୍ତ ପ୍ରୟୋଜନ ।

ବୈଜ୍ଞାନିକ ସୃଜନଶୀଳତା କ୍ଷେତ୍ରରେ ଆଉ ଗୋଟିଏ ସମସ୍ୟା ପ୍ରତି ଦୃଷ୍ଟି ଦେବା ବିଧେୟ । ଅନୁଶୀଳନରୁ ଦେଖାଯାଇଛି ଯେ ବୈଜ୍ଞାନିକ କୃତି ଅନେକ ସମୟରେ ଏକ ଅସ୍ୱାଭାବିକ ମାନସିକସ୍ତର ଦେଇ ଗତି କରିଥାଏ । ବୈଜ୍ଞାନିକର ଚିନ୍ତା ବହୁ ସମୟରେ ସ୍ୱାଭାବିକତା ନିୟମର ଊର୍ଦ୍ଧ୍ୱକୁ ଯାଇ ସଫଳତାର ସ୍ପର୍ଶ ପାଏ । ଏ ଦୃଷ୍ଟିରୁ କେତେକ ବୈଜ୍ଞାନିକ ଭାବନ୍ତି ଯେ ସୃଜନଶୀଳ ହେବା ପାଇଁ ସେମାନଙ୍କୁ ଅସ୍ୱାଭାବୀ ହେବାକୁ ପଡ଼ିବ, ବାତୁଳତାର ଆଶ୍ରୟ ନେବାକୁ ହେବ । କିନ୍ତୁ ସୃଜନ ପ୍ରକ୍ରିୟା କେତେକାଂଶରେ ଅସ୍ୱାଭାବିକତାର ନିୟମରେ ପରିଚାଳିତ ହେଲେ ମଧ୍ୟ ବୈଜ୍ଞାନିକଙ୍କୁ ଯେ ପାଗଳ ବା ଅସ୍ୱାଭାବୀ ହେବାକୁ ପଡ଼ିବ, ତାହା ନୁହେଁ । ଡାର୍‌ୱିନ୍ ଓ ଆଇନ୍‌ଷ୍ଟାଇନ୍‌ଙ୍କ ପରି ପ୍ରତିଭା ସମ୍ପନ୍ନ ବ୍ୟକ୍ତିମାନେ ସ୍ଥିରତାପୂର୍ଣ୍ଣ ଜୀବନଯାପନ କରିଛନ୍ତି ଏବଂ ଏକ ପରିତୃପ୍ତିର ଜୀବନାନୁଭୂତି ଲାଭ କରିଛନ୍ତି । ଜଣେ ସଚେତନଶୀଳ ବୈଜ୍ଞାନିକ ନିଜ ସାମାଜିକ ଜୀବନର ସମୃଦ୍ଧି ପାଇଁ ଯେପରି ଉଦ୍ୟମ କରିବ, ଏକ ଦାୟିତ୍ୱ ସମ୍ପନ୍ନ ସମାଜ ବୈଜ୍ଞାନିକର ବୌଦ୍ଧିକ ବିକାଶ ପାଇଁ ସେପରି ଉଦ୍ୟମ କରିପାରିବ ।

ବିଜ୍ଞାନଭିତ୍ତିକ ସୃଜନଶୀଳତାକୁ ତ୍ୱରାନ୍ୱିତ କରିବା ପାଇଁ ଉପଯୁକ୍ତ ବାତାବରଣ ଆବଶ୍ୟକ । ମନୋବିଜ୍ଞାନୀ ପେଲ୍‌ଜଙ୍କ ମତରେ ବୈଜ୍ଞାନିକମାନେ ତିନୋଟି କ୍ଷେତ୍ର ଉପରେ ବିଶେଷ ଗୁରୁତ୍ୱ ଦିଅନ୍ତି ଏବଂ ପ୍ରତି ଅନୁଷ୍ଠାନ ଓ ସମାଜ ଏ ଗୁଡ଼ିକର ପରିପୂରଣ ଦିଗରେ ଉଦ୍ୟମ କରିବା ଆବଶ୍ୟକ । ପ୍ରଥମତଃ ପରିବେଶ ଏପରି ହେବା ଉଚିତ, ଯେପରିକି ବୈଜ୍ଞାନିକମାନେ ଅନୁଭବ କରିବେ ଯେ, ବୈଜ୍ଞାନିକ ଜ୍ଞାନରାଜ୍ୟକୁ ସମୃଦ୍ଧ କରିବା ପାଇଁ ସେମାନଙ୍କର ସୁବିଧା ସୁଯୋଗ ରହିଛି । ଦ୍ୱିତୀୟତଃ ବ୍ୟକ୍ତିର ଲବ୍‌ଧଜ୍ଞାନ ଓ ଦକ୍ଷତାର ବିନିଯୋଗ ପାଇଁ ଅନୁକୂଳ ବ୍ୟବସ୍ଥା ଆବଶ୍ୟକ । ତୃତୀୟତଃ ମୌଳିକତା ପାଇଁ ଆବଶ୍ୟକ ସ୍ୱାଧୀନତା ପ୍ରୟୋଜନ ।

ପରିଶେଷରେ ମନେ ରଖିବାକୁ ହେବ ଯେ ବୈଜ୍ଞାନିକ ଚିନ୍ତାଧାରାର ଉନ୍ମେଷ ଓ ବିକାଶ ପାଇଁ ଅନୁକୂଳ ବାତାବରଣର ବିଶିଷ୍ଟ ଗୁଣ ହେଉଛି ସାମାଜିକ ସହନଶୀଳତା । ଅନେକ ସମୟରେ କୌଣସି ବ୍ୟକ୍ତି ଆମଠାରୁ ପୃଥକ୍ ଚିନ୍ତା ଦର୍ଶାଇଲେ ମାତ୍ରେ ସେ ତିରସ୍କୃତ ହୁଏ ଏବଂ ଉପହାସର ଶରବ୍ୟ ହୁଏ । ଏହା ବୈଜ୍ଞାନିକ ସୃଜନଶୀଳତାର ପରିପନ୍ଥୀ । ବିଭିନ୍ନ ଚିନ୍ତାଧାରାକୁ ସମ୍ମାନ ଦେବା ଏବଂ ବ୍ୟକ୍ତିକୁ ତା' ଚିନ୍ତାଧାରାର ସ୍ୱାତନ୍ତ୍ର୍ୟ ପାଇଁ ଉତ୍ସାହ ଦେଲେ ସମାଜରେ ସୃଜନଶୀଳତାର ବିକାଶ ଘଟେ ଏବଂ ଗୋଷ୍ଠୀଗତ ଜୀବନ ସୃଜନାତ୍ମକ କ୍ରିୟାରେ ଋଦ୍ଧିମନ୍ତ ହୁଏ ।

———

# ମନର ପରିଧି

## ଯୋଗ : ଏକ ମନୋବୈଜ୍ଞାନିକ ବିଚାର

କାଲିର କଳ୍ପନା-ବିଳାସ ଆଜିର ବିଜ୍ଞାନ-ଲବ୍ଧ ବାସ୍ତବତା । ସାଧାରଣ ଚକ୍ଷୁରେ କଳ୍ପନାବିଳାସ ଓ ବୈଜ୍ଞାନିକ ଚିନ୍ତାଧାରା ମଧ୍ୟରେ ଅମାପ ଦୂରତ୍ୱ । ମାତ୍ର ଅନ୍ୟ ଏକ ଦୃଷ୍ଟିକୋଣରୁ ଏ ଦୂରତ୍ୱ ମିଳାଇଯାଏ । ବିଶେଷତଃ କେତେକ ସୃଜନଶୀଳ ବ୍ୟକ୍ତି ଏ ଦୂରତ୍ୱ ନ ଦେଖି, ଦେଖନ୍ତି ଏ ଦୁଇ ମଧ୍ୟରେ ଥିବା ଏକ ନିବିଡ଼ ଯୋଗସୂତ୍ର । କଳ୍ପନାବିଳାସକୁ ବୈଜ୍ଞାନିକ ଭାବଧାରା ଭିତରକୁ ଟାଣି ଆଣିବାର ପ୍ରୟାସରୁ ସୃଷ୍ଟି ହୋଇଛି ବିଜ୍ଞାନର ବିଭିନ୍ନ କଳାକୌଶଳ । ପ୍ରାଚୀନ ଭାରତରେ ବହୁ ପ୍ରତିଷ୍ଠିତ ଯୋଗ ଏବଂ ତା'ର ଆନୁସଙ୍ଗିକ ଉପଯୋଗିତା ଏହାର ନିଦର୍ଶନ ।

ବିଶ୍ୱଚିନ୍ତାଧାରାକୁ 'ଯୋଗ' ଭାରତର ଏକ ଗୁରୁତ୍ୱପୂର୍ଣ୍ଣ ଦାନ । ଆଧୁନିକ ଯୁଗରେ ଦେଶ ବିଦେଶରେ ଯୋଗର ଲୋକପ୍ରିୟତା ତଥା କାର୍ଯ୍ୟକାରିତା ଆଲୋଚନା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ଯେଉଁ ବୈଜ୍ଞାନିକ ତଥ୍ୟ ଉପରେ ଯୋଗ ସୁପ୍ରତିଷ୍ଠିତ, ତାକୁ ବୋଧଗମ୍ୟ ଭାଷାରେ ସାଧାରଣ ପାଠକଙ୍କ ପାଖରେ ଉପସ୍ଥାପନ କରିବା ଏହାର ଲକ୍ଷ୍ୟ । ଦିନ ଥିଲା, ଯେତେବେଳେ ଅତୀତର ମୁନିଋଷିମାନଙ୍କର ନିରୋଗ ଶରୀର, ଶତୋତ୍ତର ବର୍ଷୀୟ ଦୀର୍ଘାୟୁ ଓ ବିମଳ ଆନନ୍ଦ ପରିପୂର୍ଣ୍ଣ ଜୀବନର କଥା କାହାଣୀ ପରି ମନେ ହେଉଥିଲା । କିନ୍ତୁ ଆଧୁନିକ ପରିପ୍ରେକ୍ଷୀରେ ଏହାର ସମ୍ଭାବନା ବିଜ୍ଞାନର ସବଳ ଯୁକ୍ତି ଓ ବିଜ୍ଞାନାଗାରର ପ୍ରମାଣ ଉପରେ ପ୍ରତିଷ୍ଠିତ । ଏହି ମୌଳିକ ତଥ୍ୟକୁ ଜୈବ

ପ୍ରତିଯୋଗାଣ (Bio-feedback) ନୀତି କୁହାଯାଇ ପାରେ । ଏ ନୀତିଟି ମନୋବିଜ୍ଞାନର ପ୍ରୋତ୍ସାହନ ନିୟମର ଏକ ବିଶିଷ୍ଟ ରୂପ । ପ୍ରଥମେ ପ୍ରୋତ୍ସାହନ ନିୟମର ସୂଚନା ଦିଆଗଲେ ଜୈବ ପ୍ରତିଯୋଗାଣ ନୀତିକୁ ବୁଝିବା ସହଜ ହେବ ।

**ପ୍ରୋତ୍ସାହନ ନିୟମ :**

ପ୍ରୋତ୍ସାହନ ନିୟମ ଖୁବ୍ ସରଳ । ଆମେ ଜାଣୁ, କୌଣସି ବ୍ୟକ୍ତିକୁ ପୁରସ୍କାର ବା ପ୍ରୋତ୍ସାହନ ଦେବା ମୂଳରେ ଲକ୍ଷ୍ୟ ଥାଏ ଯେ, ବ୍ୟକ୍ତିଟି ଯେଉଁ ବ୍ୟବହାର ଲାଗି ପୁରସ୍କୃତ ହୋଇଛି, ତା'ର ସେହି ବ୍ୟବହାରଟି ଦୃଢ଼ରୁ ଦୃଢ଼ତର ହେଉ । ପ୍ରକାରାନ୍ତରେ କହିଲେ, ପୁରସ୍କାର ଦେଇ ସ୍ପୃହଣୀୟ ବ୍ୟବହାରକୁ ଦୃଢ଼ୀଭୂତ କରାଇବା ଏକ ସାଧାରଣ କଥା । ମାତ୍ର ଜଣେ ସୁବିଖ୍ୟାତ ମାର୍କିନ ମନୋବିଜ୍ଞାନୀ ସ୍କିନର ଏହାକୁ ଏକ ସୁପରିକଳ୍ପିତ ରୂପ ଦେଇ ବିଜ୍ଞାନାଗାରରେ ପ୍ରଦର୍ଶନ କଲେ । ସେ ଗୋଟିଏ ବିଶିଷ୍ଟ ଧରଣର ପାରାର ପଞ୍ଜୁରୀ ତିଆରି କରି ସେଥିରେ ଗୋଟିଏ ସରଦଣ୍ଡ ଖଞ୍ଜିଲେ । ସରଦଣ୍ଡଟି ଏପରି ଭାବରେ ଖଞ୍ଜା ଯାଇଥିଲା ଯେ, ଦଣ୍ଡଟିର ଗୋଟିଏ ପାର୍ଶ୍ୱରେ ଚାପ ପ୍ରଦାନ କଲେ ଦଣ୍ଡର ତଳେ ଥିବା ଗୋଟିଏ ପାତ୍ରରେ କିଛି ଖାଦ୍ୟ ରହିଯିବ । ଏପରି ପଞ୍ଜୁରୀ ମଧ୍ୟରେ ଗୋଟିଏ ପାରାକୁ ଛାଡ଼ି ଦିଆଯିବାରୁ ଦେଖାଗଲା ଯେ ପାରାଟି ତା'ର ବିଭିନ୍ନ କାର୍ଯ୍ୟ କରିବା ଭିତରେ ଥରେ ଦୁଇଥର ଆକସ୍ମିକ ଭାବରେ ସରଦଣ୍ଡରେ ଚାପ ଦେଉଛି । ଚାପ ଦେଲା ମାତ୍ରେ ଖାଦ୍ୟ ପଦାର୍ଥ ପାଇ ଖୁସିରେ ଖାଉଛି । ପରେ ପରେ ସରଦଣ୍ଡ ଉପରେ ଚାପ ଦେବାର ସଂଖ୍ୟା ବଢ଼ିବାରେ ଲାଗିଛି । ବେଶ୍ କିଛି ସମୟ ପରେ ପାରାଟି ସରଦଣ୍ଡ ଏବଂ ଖାଦ୍ୟ ଲାଭ ମଧ୍ୟରେ ଥିବା ସମ୍ପର୍କ ବୁଝି ଖାଦ୍ୟଲାଭ ପାଇଁ ଚାପ ପ୍ରଦାନରେ ବହୁତ ସମୟ ଦେଉଛି ।

ସ୍କିନରଙ୍କର ଏହି ପରୀକ୍ଷାଟି ଅତି ସରଳ ଥିଲେ ମଧ୍ୟ ଏହାର ପ୍ରଭାବ ଥିଲା ଖୁବ୍ ବ୍ୟାପକ । ସ୍କିନରଙ୍କର ପରବର୍ତ୍ତୀ ଗବେଷଣା ଏବଂ ଅନ୍ୟାନ୍ୟ ମନୋବିଜ୍ଞାନୀମାନଙ୍କ ସମଧର୍ମୀ ଗବେଷଣା ପ୍ରମାଣ କଲା ଯେ, ପୁରସ୍କାର ବା ପ୍ରୋତ୍ସାହନ ଦେଇ ବିଭିନ୍ନ ପ୍ରକାର ବ୍ୟବହାରକୁ ପ୍ରତିଷ୍ଠିତ କରାଯାଇପାରେ । ଏ ବ୍ୟବହାର କେବଳ ସରଦଣ୍ଡରେ ଚାପ ପ୍ରଦାନ ନ ହୋଇ କାଣିବା, ଦୌଡ଼ିବା ବା ସେହିପରି ସବୁ ପ୍ରକାର ଇଚ୍ଛାକୃତ ବ୍ୟବହାର ହୋଇପାରେ । ସେହିପରି ପ୍ରୋତ୍ସାହନ କେବଳ କ୍ଷୁଧା, ତୃଷା, ଯୌନ ପିପାସାର ପରିତୃପ୍ତି ନ ହୋଇ ପ୍ରଶଂସା ଓ ସାମାଜିକ ଯଶ ଇତ୍ୟାଦି ହୋଇପାରେ । ପାରାର ବ୍ୟବହାର ଉପରେ ଗବେଷିତ ତଥ୍ୟ ମନୁଷ୍ୟ ଜୀବନର ବିଭିନ୍ନ କ୍ଷେତ୍ରରେ ପ୍ରଯୁଜ୍ୟ । ଏହି ପ୍ରୋତ୍ସାହନର ଏକ ବିଶିଷ୍ଟ ରୂପ ହେଉଛି ପ୍ରଶଂସା । ବ୍ୟକ୍ତିର କୌଣସି କାର୍ଯ୍ୟକୁ ପ୍ରଶଂସା କଲେ ତା' କାର୍ଯ୍ୟରେ ପୁନରାବୃତ୍ତିର ସମ୍ଭାବନା ବଢ଼ିଯାଏ । ପ୍ରଶଂସାକୁ କଥୋପକଥନ ଛଳରେ ଦେବାକୁ ହେଲେ "ଖୁବ୍ ଭଲ" ବା "ଭଲ କାର୍ଯ୍ୟ"—ଏହିପରି କିଛି କହିବାକୁ ହେବ । ପ୍ରଶଂସା ରୂପକ ପ୍ରୋତ୍ସାହନକୁ ଅନ୍ୟ ଏକ ପ୍ରକାରରେ ମଧ୍ୟ ଦିଆଯାଇ ପାରେ ।

ତାହା ହେଉଛି, କାର୍ଯ୍ୟର ଫଳାଫଳ ଘୋଷଣା । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇ ପାରେ ଯେ ଗୋଟିଏ ସାଧାରଣ ବୁଦ୍ଧିର ପିଲା ଅଙ୍କ କଷିବା ପରେ ପରେ ଆମେ ଯଦି ତାକୁ କହୁ ଯେ ଦଶଟି ଅଙ୍କରୁ ଆଠଟି ଠିକ୍ ହୋଇଛି, ତେବେ ସେ ଏକପ୍ରକାର ପ୍ରୋତ୍ସାହନ ଲାଭ କରେ । ଏପରି ବାରମ୍ବାର ଫଳାଫଳ ଜ୍ଞାତବ୍ୟ କରି କାର୍ଯ୍ୟ କୁଶଳତା ବୃଦ୍ଧି କରାଇବା ବିଜ୍ଞାନସମ୍ମତ ।

## ଅନିଚ୍ଛାକୃତ ବ୍ୟବହାର ଓ ପ୍ରୋତ୍ସାହନ :

ପ୍ରାୟ କୋଡ଼ିଏ ବର୍ଷ ପୂର୍ବରୁ ବିଶ୍ୱାସ କରାଯାଉ ଥିଲା ଯେ, ପ୍ରୋତ୍ସାହନ ନୀତି ଅନୁସରଣ କରି ମଣିଷର ସବୁ ପ୍ରକାର ଇଚ୍ଛାକୃତ (voluntary) ବ୍ୟବହାରକୁ ପ୍ରତିଷ୍ଠା କରିହେବ ଏବଂ ପରିବର୍ତ୍ତନ ମଧ୍ୟ କରିହେବ । ଯେପରି ମଣିଷର ଚାଲିବା, ବସିବା, ଦୌଡ଼ିବା, ସାମାଜିକ ବ୍ୟବହାର ଓ ବ୍ୟକ୍ତିଗତ ବ୍ୟବହାର ଇତ୍ୟାଦିର ନିୟନ୍ତ୍ରଣ କରି-ହେବ । ମାତ୍ର ପ୍ରୋତ୍ସାହନ ନିୟମରେ ମଣିଷର ରକ୍ତ ସଞ୍ଚାଳନ, ନିଃଶ୍ୱାସ କାର୍ଯ୍ୟ, ଅନ୍ତ୍ର ସଞ୍ଚାଳନ ଓ ମସ୍ତିଷ୍କ ସ୍ପନ୍ଦନ ଇତ୍ୟାଦି ଅନିଚ୍ଛାକୃତ (Involuntary) କାର୍ଯ୍ୟକୁ ନିୟନ୍ତ୍ରଣ ବା ପରିବର୍ତ୍ତନ କରିବା ସମ୍ଭବ ନୁହେଁ । କିନ୍ତୁ ଯେଉଁ ଦିନ ଏ ସମ୍ଭାବନା ବିଜ୍ଞାନାଗାରରେ ପ୍ରଦର୍ଶିତ ହେଲା, ସେ ଦିନ ବ୍ୟବହାର ବିଜ୍ଞାନର ଏକ ନୂତନ ଦ୍ୱାର ଉନ୍ମୋଚିତ ହୋଇଗଲା ।

ଓଲଡ଼୍ସ ଓ ମିଲ୍ନର ନାମକ ଦୁଇଜଣ ମନୋବିଜ୍ଞାନୀ ପ୍ରଥମେ ମୂଷା ଉପରେ ଗବେଷଣା କରି ଦେଖାଇଲେ ଯେ ମୂଷାର ହୃତ୍ସ୍ପନ୍ଦନର ଗତିକୁ ଏକ ନିର୍ଦ୍ଦିଷ୍ଟ ଗତି ମଧ୍ୟରେ ସୀମିତ ରଖାଯାଇପାରେ । ମୂଷାର ହୃତସ୍ପନ୍ଦନ ଆମର ହୃତ୍ସ୍ପନ୍ଦନ ପରି ପ୍ରତି ମିନିଟରେ ବଦଳେ । ଉଦାହରଣ ସ୍ୱରୂପ ମନୁଷ୍ୟର ସାଧାରଣତଃ ହୃତ୍ସ୍ପନ୍ଦନ ମିନିଟ୍ରେ ୭୦-୮୦ ଥର ହେଲେ ମଧ୍ୟ ଆମେ କୌଣସି ବ୍ୟକ୍ତିର ହୃତ୍ସ୍ପନ୍ଦନ ମାପ କଲେ ଦେଖିବା ଯେ ପ୍ରଥମ ମିନିଟରେ ୭୪ ଥର ହେଲେ, ପର ମିନିଟ୍ରେ ୭୦ ଥର, ତା'ପର ମିନିଟରେ ୭୭ଥର, ତା'ପର ମିନିଟରେ ୮୦ ଥର—ଏହିପରି ବିଭିନ୍ନ ଗତିରେ ହେଉଛି । ମୂଷାଟିର ମଧ୍ୟ ସେହିପରି ପରିବର୍ତ୍ତିତ ହେଉଥିଲା । ମନୋବିଜ୍ଞାନୀ ଦୁଇଜଣ ପୂର୍ବଯୋଜନା ଅନୁଯାୟୀ ମୂଷାଟି ଯେତେବେଳେ ଏକ ନିର୍ଦ୍ଦିଷ୍ଟ ଗତିର ହୃତ୍ସ୍ପନ୍ଦନ (ଧରାଯାଉ ମିନିଟରେ ୭୫ଥର) ଦେଖାଇଲା, ସେତେବେଳେ ଏକ ବୈଦ୍ୟୁତିକ ପ୍ରଣାଳୀରେ ମୂଷାର ମସ୍ତିଷ୍କର ଆନନ୍ଦ କେନ୍ଦ୍ରକୁ କ୍ରିୟାଶୀଳ କଲେ । ଏହି ଆନନ୍ଦ କେନ୍ଦ୍ରର କ୍ରିୟାଶୀଳତା ମୂଷା ପାଇଁ ପ୍ରୋତ୍ସାହନ । ଏହି ପଦ୍ଧତିଟିକୁ ବାରମ୍ବାର ପୁନରାବୃତ୍ତି କଲା ପରେ ଦେଖାଗଲା ଯେ ମୂଷାଟିର ହୃତ୍ସ୍ପନ୍ଦନ କେବଳ ୭୫ ଉପରେ ପର୍ଯ୍ୟବସିତ । ଅନ୍ୟ ଭାଷାରେ କହିଲେ ପ୍ରୋତ୍ସାହନ ଦେଇ ହୃତ୍ସ୍ପନ୍ଦନକୁ ଏକ ନିର୍ଦ୍ଦିଷ୍ଟ ଗତି ଦେବା ସମ୍ଭବ ବୋଲି ପରୀକ୍ଷାଟି ପ୍ରମାଣ କଲା ।

ପରେ ପରେ ବହୁ ମନୋବିଜ୍ଞାନୀ ରକ୍ତ ସଞ୍ଚାଳନ, ଅସ୍ଥି ସଞ୍ଚାଳନ ଓ ମସ୍ତିଷ୍କ ତରଙ୍ଗକୁ ନିୟନ୍ତ୍ରଣ କରିବା ପାଇଁ ବିଭିନ୍ନ ଜୀବଜନ୍ତୁ ଏବଂ ମଣିଷ ଉପରେ ପରୀକ୍ଷା ନିରୀକ୍ଷା ଆରମ୍ଭ କଲେ । ଲେଖକ ନାନାଡାର ଯେଉଁ ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିଲେ, ସେହି ବିଶ୍ୱ-ବିଦ୍ୟାଳୟର ଅସ୍ଥି ବିଭାଗର ଅଧ୍ୟାପକ ବାସମାନ୍ ଜ୍ୟାନ୍ ଦେଖାଇଲେ ଯେ, ପ୍ରୋତ୍ସାହନ ଦ୍ୱାରା କିଛି ସମୟ ପାଇଁ ହାତ ପାପୁଲିର ଏକ ନିର୍ଦ୍ଦିଷ୍ଟ ଶିରାକୁ କ୍ରିୟାଶୀଳ ରଖି ଅନ୍ୟ ଶିରାମାନଙ୍କ ଅପେକ୍ଷାକୃତ କ୍ରିୟାହୀନ ରଖାଯାଇପାରେ । ସେ ପାପୁଲି ସହିତ ଏକ ଯନ୍ତ୍ର ସଂଯୁକ୍ତ କରିଦେଲେ, ଯେଉଁଥିରେ ଜଣାପଡ଼ିବ ଯେ କେଉଁ କେଉଁ ଶିରା କେତେବେଳେ ଅଧିକ କ୍ରିୟାଶୀଳ । ଯନ୍ତ୍ରଟିକୁ ପର୍ଯ୍ୟବେକ୍ଷଣ କଲେ ବିଭିନ୍ନ ସମୟରେ ବିଭିନ୍ନ ଶିରା କ୍ରିୟାଶୀଳ ହେଉଥାଏ । ଗବେଷକ କେଉଁ ଶିରାଟିକୁ ଅଧିକ କ୍ରିୟାଶୀଳ କରିବେ, ତାହା ଠିକ୍ କରି ସାରିବା ପରେ ଯନ୍ତ୍ରଟି ଆଡ଼କୁ ଲକ୍ଷ୍ୟ ରଖିଥାଆନ୍ତି । ଯେତେବେଳେ ଉକ୍ତ ଶିରାଟି ଅଧିକ କ୍ରିୟାଶୀଳ ହୁଏ, ସେତେବେଳେ ସେ ଉଚ୍ଚ ଓ ପରିଷ୍କାର ସ୍ୱରରେ ଯନ୍ତ୍ର ସଂଯୁକ୍ତ ବ୍ୟକ୍ତି ଆଡ଼କୁ ଚାହିଁ କହନ୍ତି "ଖୁବ୍ ଭଲ" । ଯେତେବେଳେ ଅନ୍ୟ ଶିରା ସବୁ କ୍ରିୟାଶୀଳ, ସେତେବେଳେ ଗବେଷକ ନୀରବ । ପୁଣି କିଛି ସମୟ ପରେ ନିର୍ଦ୍ଦିଷ୍ଟ ଶିରାଟି କ୍ରିୟାଶୀଳ ହେଲେ ତାଙ୍କର ପ୍ରଶଂସାସୂଚକ "ଖୁବ ଭଲ" ଶବ୍ଦଟି ଶୁଣାନ୍ତି । ଏହି କ୍ରମ ପର୍ଯ୍ୟାୟଶୀଳ ପ୍ରୋତ୍ସାହନ ଦେବା ପରେ ଯନ୍ତ୍ରରେ ସ୍ପଷ୍ଟ ଦେଖାଗଲା, ନିର୍ଦ୍ଦିଷ୍ଟ ଶିରାଟି ନିରବଚ୍ଛିନ୍ନ ଭାବେ ଅଧିକ କ୍ରିୟାଶୀଳ ।

ସ୍ଥୂଳତଃ ପ୍ରୋତ୍ସାହନର ମାଧ୍ୟମ ଯାହା ହେଉନା କାହିଁକି, ଶରୀରର ବିଭିନ୍ନ ଜୈବିକ କାର୍ଯ୍ୟ ଯେ ନିୟନ୍ତ୍ରଣଶୀଳ, ତାହା ପ୍ରମାଣିତ ହେଲା । ଏହି ନିୟନ୍ତ୍ରଣ ପାଇଁ ବିଭିନ୍ନ ପଦ୍ଧତି ଅନୁସୃତ ହେଲେ ମଧ୍ୟ ମୌଳିକ ନୀତି ଥିଲା ଏକ । ତାହା ହେଉଛି ପ୍ରୋତ୍ସାହନ ଦେଇ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟକୁ ସକ୍ରିୟ କରିବା ।

## ନିୟନ୍ତ୍ରଣର ଉପଯୋଗିତା :

ବର୍ତ୍ତମାନ ପ୍ରଶ୍ନ ଉଠୁଛି, ଯଦି ଅନିଚ୍ଛାକୃତ ବ୍ୟବହାର ନିୟନ୍ତ୍ରଣର ସମ୍ଭାବନା ଅଛି, ତେବେ ସେ ନିୟନ୍ତ୍ରଣର ଦିଗ କ'ଣ ? କେଉଁ ସ୍ତରକୁ ନିୟନ୍ତ୍ରଣ କରାଯିବ, ତାହା ଠିକ୍ କରିବ କିଏ ? ଏ ପ୍ରଶ୍ନର ଉତ୍ତର ଖୁବ୍ ଜଟିଳ ନୁହେଁ । ଆମେ ଜାଣୁ ଯେ ଶରୀରରେ ଯେଉଁ ସମସ୍ତ କ୍ରିୟାକଳାପ ଚାଲିଛି, ତା'ର ଗୋଟିଏ ଦିଗ ହେଉଛି କ୍ଷୟଶୀଳତା । ଏହି କ୍ଷୟଧର୍ମୀ କାର୍ଯ୍ୟ ବୃଦ୍ଧି ପାଇଲେ ଶରୀର ଅସୁସ୍ଥ ହୁଏ, ବାର୍ଦ୍ଧକ୍ୟ ଆସନ୍ନ ହୁଏ ଏବଂ ମୃତ୍ୟୁର ସଙ୍କେତ ମିଳେ । ରକ୍ତର ଚାପ ବଢ଼ିବା ବା କମିବା ଅସୁସ୍ଥତାର ଲକ୍ଷଣ ବୋଲି ସମସ୍ତେ ଜାଣନ୍ତି । ସେହିପରି ଅସ୍ୱାଭାବିକ ଗତିରେ ହୃତ୍ସ୍ପନ୍ଦନ ମଙ୍ଗଳଜନକ ନୁହେଁ । ଅନ୍ୟ ଭାଷାରେ କହିଲେ, ଶରୀରର ମସ୍ତିଷ୍କ ତରଙ୍ଗ, ହୃତସ୍ପନ୍ଦନ, ରକ୍ତଚାପ, ରକ୍ତ ସଞ୍ଚାଳନ ଓ ଅସ୍ଥି ଚାଳନ ଇତ୍ୟାଦିର ଏକ ଉପଯୋଗୀ ସ୍ତର ଅଛି । ତା'ର ବ୍ୟତିକ୍ରମ ପ୍ରାଣୀକୁ କ୍ଷୟ-

ଶୀଳତା ଆଡ଼କୁ ଟାଣିନିଏ । ଏହି ଉପଯୋଗୀ ସ୍ତର ନିର୍ଣ୍ଣୟ କରିବା ଜୀବବିଜ୍ଞାନ ଓ ଚିକିତ୍ସା ବିଜ୍ଞାନର ପରିସରଭୁକ୍ତ ଏବଂ ଏହା ଅସାଧ୍ୟ ନୁହେଁ ।

ଜୀବ ବିଜ୍ଞାନ ଓ ଚିକିତ୍ସା ବିଜ୍ଞାନର ସହାୟତାରେ ପ୍ରତ୍ୟେକ ଅନିଚ୍ଛାକୃତ କାର୍ଯ୍ୟ ପାଇଁ ଉପଯୋଗୀ ସ୍ତର ନିର୍ଣ୍ଣୟ କଲା ପରେ ପ୍ରୋତ୍ସାହନ ନୀତି ଅନୁସରଣ କରି ସେହି ସ୍ତରରେ କାର୍ଯ୍ୟକଳାପକୁ ସୀମିତ ରଖିବା ସମ୍ଭବ ହୁଏ । ଦୃଷ୍ଟାନ୍ତ ସ୍ୱରୂପ ମସ୍ତିଷ୍କ ତରଙ୍ଗର କାର୍ଯ୍ୟ ଆଲୋଚନା କରାଯାଉ । ମସ୍ତିଷ୍କ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାରର ତରଙ୍ଗ ସୃଷ୍ଟି କରେ । ତା'ର ମାପ ପାଇଁ ଏକ ନିର୍ଦ୍ଦିଷ୍ଟ ବୈଦ୍ୟୁତିକ ଯନ୍ତ୍ର ଅଛି । ଏହି ଯନ୍ତ୍ର ବ୍ୟବହାର କରି ଦେଖାଯାଇଛି ଯେ, କୌଣସି ବ୍ୟକ୍ତି ଶାନ୍ତ ମନରେ ଅବସର ବିନୋଦନରେ ଥିବା-ବେଳେ ତା'ର ମସ୍ତିଷ୍କ ଏକ ସ୍ୱତନ୍ତ୍ର ଧରଣର ମସ୍ତିଷ୍କ-ତରଙ୍ଗ ସୃଷ୍ଟି କରେ । ପୁଣି ମନଧ୍ୟାନ ଦେଇ କାମ କଲା ବେଳେ ଅନ୍ୟ ପ୍ରକାରର ତରଙ୍ଗ,ଭୟ ଓ ଉଦବେଗ ଥିବା ବେଳେ ଅନ୍ୟ ପ୍ରକାରର ତରଙ୍ଗ । ଏହି ତିନୋଟି ମଧ୍ୟରୁ କେଉଁଟି ମାନସିକ ସ୍ୱାସ୍ଥ୍ୟ ପାଇଁ ବେଶୀ ଦରକାରୀ, ତାହା ସହଜେ ଅନୁମେୟ । ଯଦି ପ୍ରୋତ୍ସାହନର ନିୟମରେ କେବଳ ସେହି ଉପଯୋଗୀ ତରଙ୍ଗଟି ସୃଷ୍ଟି କରାଯାଇ ଅନିଷ୍ଟକର ତରଙ୍ଗ ଶ୍ରେଣୀକୁ ଦୂର କରାଯାଇ ପାରେ, ତେବେ ବ୍ୟକ୍ତିର ମାନସିକ ସ୍ୱାସ୍ଥ୍ୟ ସହିତ ଶାରୀରିକ ସ୍ୱାସ୍ଥ୍ୟରେ ମଧ୍ୟ ଉନ୍ନତି ଘଟିବ ।

## ଯୋଗ—ପ୍ରୋତ୍ସାହନ ଓ ନିୟନ୍ତ୍ରଣ :

ଦୈହିକ ଓ ମାନସିକ ସ୍ୱାସ୍ଥ୍ୟର ମଙ୍ଗଳ ପାଇଁ ଯଦି ବୈଜ୍ଞାନିକ ଉପାୟରେ ଜୈବିକ କାର୍ଯ୍ୟକଳାପର ନିୟନ୍ତ୍ରଣ ସମ୍ଭବ ହୁଏ, ତେବେ ପୂର୍ବ କାଳରେ ତାହା ଅସଙ୍ଗତ ହେବ ବା କାହିଁକି ? ପ୍ରକୃତରେ ପ୍ରଶ୍ନ ହେଉଛି, ପ୍ରାଚୀନ ଭାରତର ଋଷି ମୁନିମାନେ ନିଜ ଶରୀରର କ୍ଷୟଶୀଳ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରି ଏହାକୁ ଉପଯୋଗୀ ସ୍ତରକୁ ନେଲାବେଳେ କି ପ୍ରକାର ପ୍ରୋତ୍ସାହନ ପାଉଥିଲେ ? ଉପର ଆଲୋଚନାରୁ ସ୍ପଷ୍ଟ ହୁଏ ଯେ, ମୂଷାର କ୍ରିୟାକଳାପ ବା ବ୍ୟକ୍ତିର କ୍ରିୟାକଳାପ ନିୟନ୍ତ୍ରଣ ବେଳେ ସକ୍ରିୟ ଅଂଶ ନିଅନ୍ତି ଗବେଷକ ବା ମନୋବିଜ୍ଞାନୀ । ଜୀବକୁ ବା ବ୍ୟକ୍ତିକୁ ସେ ବାହାର ପରିବେଶରୁ ପ୍ରୋତ୍ସାହନ ଦିଅନ୍ତି । କିନ୍ତୁ କୌଣସି ବ୍ୟକ୍ତି ନିଜେ ନିଜକୁ ପ୍ରୋତ୍ସାହନ ଦେଇ ନିଜ ବ୍ୟବହାରକୁ ନିୟନ୍ତ୍ରଣ କରିପାରେ କି ?

ଆପାତତଃ ଏହା ଅବାସ୍ତବ ମନେ ହେଲେ ହେଁ ଏହା ସମ୍ଭବ । ପ୍ରୋତ୍ସାହନ ନିୟମର ସୂକ୍ଷ୍ମ ବିଚାର କଲେ ଜଣାଯାଏ ଯେ, ପ୍ରଶଂସାସୂଚକ ଶବ୍ଦ ବା ପ୍ରୋତ୍ସାହନମୂଳକ ଖାଦ୍ୟ ଉପରେ ଗୁରୁତ୍ୱ ନାହିଁ । ଗୁରୁତ୍ୱ ରହିଛି ଉଦ୍ଦିଷ୍ଟ ପ୍ରୋତ୍ସାହନଟିକୁ ବ୍ୟକ୍ତି କିପରି ଭାବରେ ଗ୍ରହଣ କରୁଛି । କୌଣସି ଗୋଟିଏ ପିଲାକୁ ତାହାର କାମ ପାଇଁ ଗପ ବହି ବଦଳରେ ଖେଳନା ଦେଲେ ସେ ବେଶୀ ଖୁସି ହୋଇପାରେ । ଅନ୍ୟ ଗୋଟିଏ ପିଲା

ଖେଳନା ବଦଳରେ ଗପବହି ଟାଇ ଅଧିକ ଆନନ୍ଦିତ ହୁଏ । ସୁତରାଂ ପ୍ରୋତ୍ସାହନର ପ୍ରକାରଭାରେ ଭିନ୍ନତା ରହିଛି । ଦ୍ୱିତୀୟତଃ, ପ୍ରୋତ୍ସାହନ ଦେବା ପାଇଁ ଯେ ବାହାରର ଜଣେ ଲୋକ ଦରକାର, ତାହା ଠିକ ନୁହେଁ । ମନୋବିଜ୍ଞାନୀମାନେ ବର୍ତ୍ତମାନ ଏପରି ଯନ୍ତ୍ରର ପରିକଳ୍ପନା କରୁଛନ୍ତି, ଯେଉଁ ଯନ୍ତ୍ରଟି ବ୍ୟବହାର କରି ମନୁଷ୍ୟ ଆନନ୍ଦ ସମ୍ବେଦନ ପାଇ ପାରିବ । ସେହିପରି ମଧ୍ୟ ବ୍ୟକ୍ତି ନିଜକୁ ନିଜେ ପ୍ରୋତ୍ସାହନ ଦେବା ସମ୍ଭବ । ପୂର୍ବକାଳର ମୁନି ଋଷିମାନେ ସେମାନଙ୍କର ମନ୍ତ୍ର ଉଚ୍ଚାରଣ, ଓଁ କାର ଶବ୍ଦର ପୁନରାବୃତ୍ତି ଏବଂ ନାମଜପ ମାଧ୍ୟମରେ ନିଜକୁ ପ୍ରୋତ୍ସାହନ ଦେଇ ଶରୀରର ଯାବତୀୟ କ୍ରିୟାକଳାପକୁ ଉପଯୋଗୀ ସ୍ତରକୁ ଆଣୁଥିଲେ । ମସ୍ତିଷ୍କ ତରଙ୍ଗର ନିୟନ୍ତ୍ରଣ ଫଳରେ ମାନସିକ ଆନନ୍ଦ ପ୍ରାପ୍ତି ମଧ୍ୟ ସମ୍ଭବ ଥିଲା । ଭାରତର ମୁନିଋଷିମାନଙ୍କ ପରି ଜାପାନ ଦେଶର ଜେନ୍‌ମାନେ ଜୈବିକ କ୍ରିୟା ନିୟୋଜନର ବିଜ୍ଞାନସମ୍ମତ ଦୃଷ୍ଟାନ୍ତ ଦେଖାଇଛନ୍ତି ।

ଆଧୁନିକ ଯୁଗରେ ଯୋଗର ଲୋକପ୍ରିୟତା ଏକ ଖାମ୍‌ଖେୟାଲର ସୂଚନା ନୁହେଁ । ମନୁଷ୍ୟର ଶାରୀରିକ ଓ ମାନସିକ ସୁସ୍ଥତା ଅଭିବୃଦ୍ଧିରେ ଏହା ଏକ ବିଜ୍ଞାନଧର୍ମୀ ମାଧ୍ୟମ । ବର୍ତ୍ତମାନ ପାଶ୍ଚାତ୍ୟ ଜଗତରେ ପ୍ରୋତ୍ସାହନ ନିୟମର ଯେଉଁ ବ୍ୟାପକ କାର୍ଯ୍ୟକାରିତା ଦେଖାଦେଇଛି, ତାହା ଏକ ଭିନ୍ନ ରୂପରେ ପ୍ରମାଣିତ ହୋଇଥିଲା ପୂର୍ବପୁରୁଷମାନଙ୍କର ଜୀବନ-ପରୀକ୍ଷାଗାରରେ । ଏ ଦୃଷ୍ଟିରୁ ଯୋଗକୁ ପୃଥକ ଭାବେ ବିଚାର କରି ନ ଯାଇ ଏକ ପଦ୍ଧତିଗତ ଦାନ ହିସାବରେ ମୂଲ୍ୟାୟନ କରିବା ସମୀଚୀନ ।

## ଚେତନଶୀଳତାର ଏକ ରୂପାନ୍ତର

ଚିନ୍ତା ରାଜ୍ୟର ପରୀକ୍ଷା ଓ ଗବେଷଣାଗାରର ପରୀକ୍ଷା ମଧ୍ୟରେ ଚାଲିଥିବା ଦୌଡ଼ ପ୍ରତିଯୋଗିତା ସହ ଭାବୁକ ଗୋଷ୍ଠୀ ଖୁବ୍ ପରିଚିତ । ସେହି ପ୍ରତିଯୋଗିତାର ହାରଜିତ୍‌ର ହିସାବ ଦେଖିଲେ ଜଣାଯାଏ ଯେ ଚିନ୍ତା ରାଜ୍ୟର କେତେକ ଅଗ୍ରଗତି ଗବେଷଣାଗାରର ପ୍ରାମାଣିକତାକୁ ବହୁ ପଛରେ ପକାଇ ବିଜୟୀର ସ୍ଥାନ ନେଇଛି । ଆଇନ୍‌ଷ୍ଟାଇନ୍‌ଙ୍କ ପରିକଳ୍ପିତ ବହୁ ଚିନ୍ତାମୂଳକ ପରୀକ୍ଷା (thought experiments) ଏବେ ମାତ୍ର ଗବେଷଣାଗାରର ପରୀକ୍ଷା ମାଧ୍ୟମରେ ସତ୍ୟ ହେଉଛି । ଅନେକ ସମୟରେ ଗବେଷଣାଗାରର ପରୀକ୍ଷା ନିରୀକ୍ଷା ପାଇଁ ଆବଶ୍ୟକ କଳ କୌଶଳର ବିକାଶ ସମୟ ସାପେକ୍ଷ ହୋଇ ଥିବାରୁ କୌଣସି କୌଣସି ଚିନ୍ତାମୂଳକ ଅଗ୍ରଗତିକୁ ପରବର୍ତ୍ତୀ

ସମସ୍ତରେ ଗତାନୁଗତିକ ପଦ୍ଧତିରେ ପରୀକ୍ଷା କରାଯାଇ ଥାଏ । ପରୀକ୍ଷା ନିରୀକ୍ଷାର କଳା-କୌଶଳକୁ ସବୁ ସମୟରେ ଅପେକ୍ଷା କରି ରହିଲେ ବିନା ପରୀକ୍ଷାର ଉଦ୍ଦେଶ୍ୟ ବ୍ୟାହତ ହୁଏ । ଧ୍ୟାନ ପରି ଚେତନଶୀଳତାର ରୂପାନ୍ତର ସେହିପରି ଏକ ଜ୍ଞାନଗତ ଅନ୍ତର୍ଭୂମିର ସୃଚନା ଦିଏ, ଯାହାର ବିଜ୍ଞାନ-ସମ୍ମତ ପରୀକ୍ଷା ନିରୀକ୍ଷାକୁ ଏକ ସମସ୍ତ ସୀମେନ୍ଦ୍ର ବିସ୍ମୃତ ମାତ୍ରରେ ମୂଲ୍ୟାୟନ କରିବାକୁ ହେବ । ତଥାପି ଧ୍ୟାନର ବୈଜ୍ଞାନିକ ପୃଷ୍ଠଭୂମି ନେଇ ଦେଶ ବିଦେଶରେ ଯେଉଁ ଗବେଷଣା ଚାଲିଛି, ତାକୁ ବିଚାର କଲେ ସ୍ପଷ୍ଟ ଉପଲବ୍‌ଧି ହୁଏ ଯେ, ଧ୍ୟାନର ଉପାଦେୟତା କେବଳ ଆମର ପ୍ରାଚୀନ ଶାସ୍ତ୍ରର ଉପଦେଶ ମଧ୍ୟରେ ସୀମିତ ନୁହେଁ, ଏହାର କାର୍ଯ୍ୟକାରିତା ବିଜ୍ଞାନସମ୍ମତ ପରୀକ୍ଷା-ନିରୀକ୍ଷା ଉପରେ ପର୍ଯ୍ୟବସିତ ।

ଆମେ ଜାଣୁ ଯେ ଆମର ସ୍ୱାଭାବିକ ଚେତନଶୀଳତା କେତେକ ସାଧାରଣ ନିୟମର ବଶବର୍ତ୍ତୀ । ଯେତେବେଳେ ଏହି ସାଧାରଣ ନିୟମରୁ ବହିର୍ଭୂତ ଅନ୍ୟ କେତେକ ନିୟମ ଆମର ଚେତନଶୀଳତାକୁ ନିୟନ୍ତ୍ରଣ କରନ୍ତି, ସେତେବେଳେ ଚେତନଶୀଳତାର ରୂପାନ୍ତର ଘଟିଛି ବୋଲି ବୁଝାଯାଇ ପାରେ । ରୂପାନ୍ତରିତ ଚେତନଶୀଳତାକୁ ପ୍ରଭାବିତ କରୁଥିବା ନିୟମ ଗୁଡ଼ିକର ସାଧାରଣ ନିୟମ ଠାରୁ ଗୁଣାତ୍ମକ ଭିନ୍ନତା ଦେଖାଯାଏ । ବିଭିନ୍ନ କାରଣରୁ ଚେତନଶୀଳତାର ରୂପାନ୍ତର ଘଟିପାରେ । ସ୍ୱପ୍ନ, ସମ୍ମୋହନ (Hypnosis), ମଦ୍ୟପାନ, ମାଦକ ଦ୍ରବ୍ୟ ସେବନ ଇତ୍ୟାଦି ଦ୍ୱାରା ଚେତନଶୀଳତାର ରୂପାନ୍ତର ଘଟେ । ମାନସିକ ସ୍ୱାସ୍ଥ୍ୟର ବିକାଶ ଦୃଷ୍ଟିରୁ ଏ ସବୁ କ୍ଷତିକାରକ । ଅପର ପକ୍ଷରେ ବ୍ୟକ୍ତିର ବିକାଶ ଓ ମାନସିକ ସ୍ୱାସ୍ଥ୍ୟର ପ୍ରସାରଣ ପାଇଁ ଧ୍ୟାନ ଦ୍ୱାରା ଘଟୁଥିବା ରୂପାନ୍ତରିତ ଚେତନଶୀଳତାର ଏକ ବିଶିଷ୍ଟଭୂମିକା ରହିଛି ।

ଧ୍ୟାନ ମାନସିକ ଆନନ୍ଦପ୍ରାପ୍ତିର ଏକ ସୁଗମ ପନ୍ଥା । ଦୈନନ୍ଦିନ ଜୀବନ ଯନ୍ତ୍ରଣାରୁ ମୁକ୍ତ କରି ମନର ପ୍ରଶାନ୍ତି, ଶରୀରର କୌମାର୍ଯ୍ୟ ଓ ଅନ୍ତର୍ଦୃଷ୍ଟିର ଗଭୀରତା ଦେବା ପାଇଁ ଧ୍ୟାନ ଏକ ଉତ୍କୃଷ୍ଟ ମାଧ୍ୟମ । ବିଭିନ୍ନ ଧାର୍ମିକ ପରମ୍ପରାରେ ଧ୍ୟାନର ସ୍ଥାନ ବିଭିନ୍ନ ହୋଇପାରେ, ମାତ୍ର ଏହାର ଫଳାଫଳ ସମୀକ୍ଷାରେ ମତବାଦର ସମନ୍ୱୟ ଦେଖାଯାଏ । ବିଭିନ୍ନ ମତବାଦକୁ ତୁଳନା କରି ଧ୍ୟାନର ସାରବତ୍ତା ଉଲ୍ଲେଖ କରାଯାଇ-ପାରେ । ପ୍ରାୟ ସବୁ ମତବାଦ ବିଶ୍ୱାସ କରନ୍ତି ଯେ, ବ୍ୟକ୍ତି ସଂସାରରେ ଆନନ୍ଦ ଲାଭ କରିବା ଓ ଯନ୍ତ୍ରଣା ଦୂର କରିବାର ଉଦ୍ୟମ କରୁ କରୁ ତାର ଅନେକ ପ୍ରତ୍ୟକ୍ଷଗତ ଜ୍ଞାନ ଓ ବିଶ୍ୱାସ ଜନ୍ମେ । ମାତ୍ର ଏ ସବୁ ଅଧିକାଂଶ ଜ୍ଞାନ ବିଶ୍ୱାସ ଅତି ମାତ୍ରାରେ ବ୍ୟକ୍ତିଗତ । ଭ୍ରମ ପ୍ରତ୍ୟକ୍ଷରେ ଆବଦ୍ଧ । ବ୍ୟକ୍ତିର ଜୀବନ କାଳ ମଧ୍ୟରେ ଏହି ଭ୍ରମ ପ୍ରତ୍ୟକ୍ଷ ଏକ ପ୍ରାଚୀର ସୃଷ୍ଟି କରେ ବ୍ୟକ୍ତି ଓ ବାହ୍ୟ ଜଗତ ମଧ୍ୟରେ । ଫଳରେ ପ୍ରକୃତ ସତ୍ୟ ଲାଭରୁ ବ୍ୟକ୍ତି ବଞ୍ଚିତ ହୁଏ । ସାମୁଦ୍ରିକ ପରିବେଷ୍ଟନୀରୁ ବେଳେ ବେଳେ ଆନନ୍ଦ ଓ ଲକ୍ଷ୍ୟ ସାଧନ

ଚିନ୍ତାକଲେ ମଧ୍ୟ ଶେଷ ପରିଣାମ ହୁଏ ଯନ୍ତ୍ରଣା ଓ ମୃତ୍ୟୁ ମଧ୍ୟରେ । ଧ୍ୟାନର ଏ ପ୍ରକାର ତାତ୍ତ୍ୱିକ ଭିତ୍ତି କେତେଦୂର ସତ୍ୟ, ତାହା ଏଠାରେ ଆଲୋଚ୍ୟ ନୁହେଁ । କିନ୍ତୁ ଧ୍ୟାନର ଧାର୍ମିକ ପରମ୍ପରା ଯାହା ହେଉନା କାହିଁକି, ଏହା ଯେ ମାନସିକ ଆନନ୍ଦ ପ୍ରାପ୍ତିର ଏକ ବିଶିଷ୍ଟ ମାଧ୍ୟମ, ତାହା ଜନଗଣ ଏକ ପ୍ରତିଷ୍ଠିତ ତଥ୍ୟ ରୂପେ ସ୍ୱୀକୃତ ଲାଭ କରୁଛି ।

ଧ୍ୟାନ ପାଇଁ ବିଭିନ୍ନ ପ୍ରକାର କୌଶଳ ଅନୁସୃତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ, ଜଣେ କେବଳ ସିଧା ସଳଖ ବସି ନିଜର ପେଟର ଗତି ଉପରେ ଅଭିନିବିଷ୍ଟ ହୋଇପାରେ, କିମ୍ବା ଯୋଗରେ ପ୍ରାଣାୟାମ ଉପାୟରେ ସ୍ଥିରତା ଆଣିଲା ପରି ବିଭିନ୍ନ କୃତ୍ରିମ ବାୟୁ ପ୍ରବାହର ବ୍ୟାୟାମ ଉପରେ ଦୃଷ୍ଟିନିବଦ୍ଧ କରିପାରେ । ଅନେକେ ବିଶ୍ୱାସ କରନ୍ତି ଯେ ଏକ ନିର୍ଦ୍ଦିଷ୍ଟ ମନ୍ତ୍ର ଉପରେ ମନୋଯୋଗ ଦେବା ଶ୍ରେୟସ୍କର । ମନ୍ତ୍ରର ଏକ ଶବ୍ଦଗତ ଶୃଙ୍ଖଳା ଥିବାରୁ ଏହା ଭଲ କାର୍ଯ୍ୟ କରିପାରେ । ଏହି ମନ୍ତ୍ର ଉଚ୍ଚାରଣ କରାଯାଇ ପାରେ ଅଥବା ଧ୍ୟାନୀ ନିଜ ମଧ୍ୟରେ ମନ୍ତ୍ରକୁ ଆବୃତ୍ତି କରିପାରନ୍ତି । ମନ୍ତ୍ର ବ୍ୟତୀତ ଧ୍ୟାନରେ ଯନ୍ତ୍ରର ମଧ୍ୟ ସାହାଯ୍ୟ ନିଆଯାଇପାରେ । କେତେକ ଦୃଶ୍ୟମାନ ଛାଞ୍ଚକୁ ଯନ୍ତ୍ର କୁହାଯାଏ । ଜଳୁଥିବା ଏକ ମହମବତୀ ଯନ୍ତ୍ର ରୂପେ ଗ୍ରହଣ କରାଯାଇ ପାରେ କିମ୍ବା କୌଣସି ଧର୍ମସମ୍ମତ ବସ୍ତୁକୁ ଯନ୍ତ୍ର ରୂପେ ନିଆଯାଇ ପାରେ । କେହି କେହି ମଣ୍ଡଳ ପରି ଜଟିଳ ଚିତ୍ରକୁ ଯନ୍ତ୍ର ରୂପେ ମଧ୍ୟ ବ୍ୟବହାର କରନ୍ତି । ମୂଳତଃ ମନ୍ତ୍ର ବା ଯନ୍ତ୍ର ଉପରେ ଅଭିନିବିଷ୍ଟ ହୋଇ ମନର ସ୍ଥିରତା ଆଣିବାର ପ୍ରୟାସ ଧ୍ୟାନର ଏକ ମୁଖ୍ୟ ଅଙ୍ଗ ।

ଧ୍ୟାନର କୌଶଳ ଉପରେ ନିର୍ଭର କରି ଧ୍ୟାନକୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ତାହା ଏକମୁଖୀ ଧ୍ୟାନ ଓ ଉନ୍ମୁଖୀ ଧ୍ୟାନ ।

### ଏକମୁଖୀ ଧ୍ୟାନ :

ଏକମୁଖିତା ଏ ପ୍ରକାର ଧ୍ୟାନର ସ୍ୱରୂପ । ଏକ ନିର୍ଦ୍ଦିଷ୍ଟ ବସ୍ତୁ ପ୍ରତି ଦୀର୍ଘ ସମୟ ଧରି ଅଭିନିବିଷ୍ଟ ହେବା ଏ ଧ୍ୟାନର ମୂଳ ଲକ୍ଷ୍ୟ । ଉଦାହରଣ ସ୍ୱରୂପ ମହେଶ ଯୋଗୀଙ୍କ ଦ୍ୱାରା ପ୍ରସାରିତ ଭାବାତୀତ ଧ୍ୟାନରେ ଗୋଟିଏ ମନ୍ତ୍ର ଉପରେ ଅଭିନିବେଶ ରଖି ଶିକ୍ଷାର୍ଥୀ ଧ୍ୟାନ ଅଭ୍ୟାସ କରେ । ଆରମ୍ଭ ଅବସ୍ଥାରେ ପ୍ରତ୍ୟହ ଅଧଘଣ୍ଟା କରି ଦୁଇଥର ଏପରି ଅଭ୍ୟାସ କରିବାକୁ ଉପଦେଶ ଦିଆଯାଏ । ମୂଳ ବିନ୍ଦୁଠାରୁ ଦୂରକୁ ଚାଲି ଯାଉଥିବା ମନକୁ ଆୟତ୍ତାଧୀନ କରି ପୁଣି ଲକ୍ଷ୍ୟ ବିନ୍ଦୁକୁ ଫେରାଇ ଆଣିବାର ଶିକ୍ଷା ଉପରେ ଗୁରୁତ୍ୱ ଦିଆଯାଏ । ଅବଶ୍ୟ ଏ କ୍ଷେତ୍ରରେ ବଳ ପ୍ରୟୋଗ କରି ମନର ଅବସ୍ଥାକୁ ପରିବର୍ତ୍ତିତ କରିବା ଧ୍ୟାନୋଚିତ ପନ୍ଥା ନୁହେଁ । ଏକାଗ୍ରତା ଧ୍ୟାନ ଖୁବ୍ ଆୟାସ ସାଧ୍ୟ । କେହି କେହି କେତେକ ସପ୍ତାହ ବା ମାସରେ ଦକ୍ଷତା ଅର୍ଜନ କଲେ ମଧ୍ୟ କେତେକଙ୍କୁ ଏଥିପାଇଁ ବର୍ଷ ବର୍ଷ ଅଭ୍ୟାସ କରିବାକୁ ପଡ଼େ ।

ଏପରି ଏକମୁଖୀ ଧ୍ୟାନର ଉପଯୋଗିତା କଣ ? ସାଧକ ନିଜ ଭାଷାରେ ଏପରି ଧ୍ୟାନଗତ ଅଭିଜ୍ଞତାକୁ ଅବର୍ଣ୍ଣନୀୟ କହେ । ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କଲେ ବୋଧହୁଏ ଯେ ଚେତନଶୀଳତାର ଏପରି ରୂପାନ୍ତର ଏକପ୍ରକାର ଶୂନ୍ୟତା ସୃଷ୍ଟି କରେ । ଇନ୍ଦ୍ରିୟାନୁଭୂତ ସମ୍ବେଦନ ସାମୟିକ ଭାବେ ବନ୍ଦ ହୁଏ, ବାହ୍ୟ ଜଗତର ପ୍ରତ୍ୟକ୍ଷ କିଛି ସମୟ ପାଇଁ ଭୁଲିଯାଏ ଓ ଚିନ୍ତା ଭାବନା ଦିବାନିଦ୍ରା ପରି ଅଭ୍ୟନ୍ତରୀଣ ମାନସିକ କ୍ରିୟା କଳାପ ମଧ୍ୟ କିଛିକାଳ ପାଇଁ ଦୂରେଇଯାଏ । ଏ ପ୍ରକାର ଅବସ୍ଥା ପ୍ରକୃତ ସତ୍ୟ ଦର୍ଶନରେ ସମର୍ଥ ହୁଏ କି ନାହିଁ ତାହା ବିବାଦୀୟ ହୋଇପାରେ । କିନ୍ତୁ ଏପରି ଏକ ଶୂନ୍ୟତା ପ୍ରାପ୍ତିର ପରେ ପରେ ବ୍ୟକ୍ତି ନିଜକୁ ସତେଜ ମନେକରେ ଏବଂ ନିଜକୁ ଓ ଜଗତକୁ ଏକ ନୂତନ ଦୃଷ୍ଟିରେ ଦେଖିବାରେ ଆନନ୍ଦ ଲାଭ କରେ । ତାର ଧାରଣା ହୁଏ, ଯେପରି ତାର ସ୍ୱାଭାବିକ ପ୍ରତ୍ୟକ୍ଷ ଓ ସମ୍ବେଦନ ଏକ ସୁନ୍ଦର ପରଦା ମଧ୍ୟରେ ଛାଣିହୋଇ ଆସି ତା ପାଖରେ ପହଞ୍ଚୁଛି । ବସ୍ତୁଗତ ଓ ବ୍ୟକ୍ତିଗତ ଲୋଭ ଉନ୍ମୋଚିତ ହୁଏ ଏବଂ ବିମଳ ଆନନ୍ଦ ପ୍ରାପ୍ତିର ସମ୍ଭାବନା ବୃଦ୍ଧି ପାଏ ।

ଏ ପ୍ରକାର ଧ୍ୟାନ ଦେଶ ବିଦେଶରେ ବେଶ୍ ପ୍ରସାର ଲାଭ କରିଛି । ପାଶ୍ଚାତ୍ୟ ଦେଶମାନଙ୍କରେ ଏପରି ସହର ନାହିଁ, ଯେଉଁଠାରେ ଭାବାତୀତ ଧ୍ୟାନ ବିଧିବଦ୍ଧ ଭାବରେ ଶିକ୍ଷା ଦିଆଯାଉ ନାହିଁ । ୧୯୬୮ ମସିହାରେ ଏହା ଯୁକ୍ତରାଷ୍ଟ୍ର ଆମେରିକାରେ ଆରମ୍ଭ ହେବା ଦିନଠାରୁ ଏହାର ଲୋକପ୍ରିୟତା ବୃଦ୍ଧି ପାଇବାରେ ଲାଗିଛି । ହାର୍ଭାର୍ଡ଼ ବିଶ୍ୱ-ବିଦ୍ୟାଳୟର ପ୍ରଖ୍ୟାତ ଚିକିତ୍ସକ ଓ ଶରୀର ବିଜ୍ଞାନୀ ଡ଼ : କିଥ ଓ୍ୱାଲସ୍ ମତ ଦିଅନ୍ତି ଯେ ଧ୍ୟାନ ସମୟରେ ଶରୀରର କ୍ଷୟଶୀଳ ପ୍ରକ୍ରିୟା ଖୁବ୍ କମିଯାଏ । ଅମ୍ଳଜାନର କ୍ଷୟ ଶତକଡ଼ା ୨୦ ଭାଗ କମେ ଓ ହୃଦ୍‌ଯନ୍ତ୍ର ଉପରୁ ଚାପ ଶତକଡ଼ା ୨୫ ଭାଗ କମିଯାଏ । ସେହିପରି ଧ୍ୟାନ ସମୟରେ ଶାରୀରିକ କ୍ରିୟା କଳାପ ଗବେଷଣା କରି ଲଣ୍ଡନର ଡ଼: ଜନ ଆଲିସନ୍ କହିଛନ୍ତି ଯେ—ଧ୍ୟାନର ଆରମ୍ଭ ଓ ଶେଷ ସମୟରେ ଯେଉଁ ଶାରୀରିକ ପରି-ବର୍ତ୍ତନ ଘଟେ, ତାହା ଖୁବ୍ ଉପକାରୀ ଓ ଖୁବ୍ ସୁସ୍ପଷ୍ଟ ।

ଭାରତ ବ୍ୟତୀତ ଜାପାନର ଜେନ୍ ସନ୍ୟାସୀମାନେ ଏପରି ଧ୍ୟାନର ଉପକାରିତା ଦର୍ଶାଇଛନ୍ତି । ଜଣେ ଜେନ୍ ପ୍ରବକ୍ତା କହିଛନ୍ତି—'ଜଣେ ପୂର୍ଣ୍ଣତା ଲାଭ କରିଥିବା ମନୁଷ୍ୟ ନିଜର ମନକୁ ଏକ ଦର୍ପଣ ସଦୃଶ ବ୍ୟବହାର କରେ । ଏହା ଆପେ ଆପେ କିଛି ଟାଣି ନିଏନାହିଁ, କୌଣସି ଜିନିଷ ଆସି ପ୍ରତିଫଳିତ ହେଲେ ତାହା ଉପେକ୍ଷା କରେନାହିଁ । ଏହା ବିଭିନ୍ନ ବସ୍ତୁକୁ ଦେଖାଏ, ମାତ୍ର ସବୁବେଳେ ଧରି ରଖେନାହିଁ । ବ୍ୟକ୍ତି ଅମଳିନ ହୋଇ ସବୁ ପ୍ରତ୍ୟକ୍ଷ କରେ ।' ଜେନ୍ ସମ୍ପ୍ରଦାୟର ଭକ୍ତ ମଧ୍ୟରେ ଧ୍ୟାନର ବିଶେଷତ୍ୱ ସୀମିତ ନୁହେଁ । ବହୁ ଗବେଷଣାରେ ଦେଖାଯାଇଛି ଯେ ଧ୍ୟାନ ଅଭ୍ୟାସକାରୀ ଜେନ୍‌ମାନଙ୍କର

ମସ୍ତିଷ୍କ ତରଙ୍ଗ ଏକ ସ୍ୱତନ୍ତ୍ର ଧରଣର । ଏହା ଭୟ, ଉଦ୍‌ବେଗ ଏବଂ ଅସ୍ଥିରତାର ସୂଚକ ନୁହେଁ, ବରଂ ମାନସିକ ପ୍ରଶାନ୍ତିର ସୂଚକ ।

## ଉନ୍ମୁଖୀ ଧ୍ୟାନ :

ଦ୍ୱିତୀୟ ପ୍ରକାର ଧ୍ୟାନରେ ବ୍ୟକ୍ତିର ପରିପାର୍ଶ୍ୱରେ ଘଟି ଯାଉଥିବା ସମସ୍ତ ଘଟଣା ପ୍ରତି ପୂର୍ଣ୍ଣ ଅଭିନିବେଶ ଦିଆଯାଏ । ପ୍ରଥମାବସ୍ଥାରେ ଏହା କ୍ଳାନ୍ତିଦାୟକ ମନେହୁଏ । ତେଣୁ ମାତ୍ର କେତେକ ମିନିଟରୁ ଆରମ୍ଭ କରି ଅଧଘଣ୍ଟା ପର୍ଯ୍ୟନ୍ତ ଏ ଧ୍ୟାନ ଅଭ୍ୟାସ କରାଯାଏ । ଧ୍ୟାନ ସମୟରେ କୌଣସି ଚିନ୍ତା/ସ୍ୱପ୍ନ ବା ବିଚଳିତତାକୁ ପ୍ରଶ୍ରୟ ଦିଆଯାଏ ନାହିଁ । ଧ୍ୟାନୀ ତାର ପରିପାର୍ଶ୍ୱରେ ଘଟି ଯାଉଥିବା ସବୁ ବିଷୟ ପ୍ରତି ଦୃଷ୍ଟି ଦିଅନ୍ତି ଓ ନିଜର କ୍ରିୟା-ପ୍ରତିକ୍ରିୟା ପ୍ରତି ମଧ୍ୟ ଅଭିନିବିଷ୍ଟ ହୁଅନ୍ତି ।

ଏକମୁଖୀ ଧ୍ୟାନ ଠାରୁ ଏହାର ଏକ ତାରତମ୍ୟ ଅଛି । ସାଧାରଣତଃ ଏକମୁଖୀ ଧ୍ୟାନ ସମାପିତ ହେଲା ପରେ ବ୍ୟକ୍ତି ଫଳ ଲାଭ କରେ, ମାନସିକ ଶାନ୍ତି ଲାଭ କରେ । ମାତ୍ର ବିଶ୍ୱାସ କରାଯାଏ ଯେ ଉନ୍ମୁଖୀ ଧ୍ୟାନରେ ବ୍ୟକ୍ତି ସଙ୍ଗେ ସଙ୍ଗେ ନିଜ ଓ ଜଗତ ବିଷୟରେ ଏକ ଅମଳିନ ପ୍ରତ୍ୟକ୍ଷ ଲାଭ କରେ ।

## ଆତ୍ମସ୍ମରଣ :

ଉନ୍ମୁଖୀ ଧ୍ୟାନ ପରି ଏକ ସମକାଳୀନ ପ୍ରକ୍ରିୟାକୁ ଗବେଷକମାନେ 'ଆତ୍ମସ୍ମରଣ' ଆଖ୍ୟା ଦେଇଛନ୍ତି । ଏ ନାମକରଣର ଏକ ବିଶେଷ ତାତ୍ପର୍ଯ୍ୟ ଅଛି । ଅନେକ ସମୟରେ ମନୁଷ୍ୟ ନିଜ ପ୍ରତି ଘଟୁଥିବା ଘଟଣାବଳୀ ଓ ନିଜର ଅନୁଭୂତି ସହିତ ଏପରି ନିଜକୁ ଜଡ଼ାଇ ଦିଏ ଯେ ସେ ସବୁ ଘଟଣା ବା ଅନୁଭୂତିର ଦାସ ହୋଇପଡ଼େ । ଏହି ଘଟଣା ଓ ଅନୁଭୂତି ଗୁଡ଼ିକ ବ୍ୟକ୍ତିକୁ କବଳିତ କରି ତାକୁ ନିଜ ଇଚ୍ଛାରେ ଚଳାନ୍ତି । ବ୍ୟକ୍ତିର ନିଜ ଉଦ୍ଦେଶ୍ୟ ଓ କାମନା ସବୁ ବିକୃତ ହୋଇ ତାର ପ୍ରତ୍ୟକ୍ଷକୁ ଆଚ୍ଛାଦିତ କରେ । ବ୍ୟକ୍ତି ଏକ ଜାଗ୍ରତ ସ୍ୱପ୍ନରେ ବିଚରଣ କରେ । ନିଜ ଅଭିନିବେଶର ଗୋଟିଏ ଅଂଶମାତ୍ର ସେ ସ୍ୱାଧୀନ ଭାବରେ ବ୍ୟବହାର କରେ । ଯଦି ଏହି ଅଂଶ ବିଶେଷଟିର ସଦୁପଯୋଗ କରି ସେ ନିଜେ ଜାଗ୍ରତ ହେବାର ଜାଗୃତି ଲାଭ କରେ, ତେବେ ସେ ପ୍ରକୃତ ସ୍ୱାଧୀନତା ଲାଭ କରେ । ଫଳରେ ଘଟଣା ବା ଅନୁଭୂତିର ଦାସ ହୋଇ ସେ ଆଉ ରହେନାହିଁ । ଘଟଣା ଠାରୁ ନିଜକୁ ମୁକ୍ତ କରିବାର କୌଶଳ ନିର୍ଭର କରେ ବ୍ୟକ୍ତି ନିଜର ଅଭିନିବେଶକୁ କିପରି ପ୍ରୟୋଗ କରୁଛି । ଯଦି ଅଭିନିବେଶକୁ ଦୁଇଭାଗ କରି ଗୋଟିଏ ଭାଗ ଦ୍ୱାରା ସେ ଘଟଣା ଓ ଚିନ୍ତାକୁ ପର୍ଯ୍ୟବେକ୍ଷଣ କରେ ଏବଂ ଅନ୍ୟ ଭାଗ ସାହାଯ୍ୟରେ ସେ ନିଜ ପର୍ଯ୍ୟବେକ୍ଷଣରେ ଜାଗୃତି ଲାଭ କରିପାରେ, ତେବେ ଲକ୍ଷ୍ୟ ସିଦ୍ଧି ହୁଏ । ଏ କ୍ଷେତ୍ରରେ ପର୍ଯ୍ୟ-

ଦେଷ୍ଟକର ଭୂମିକା ହେଉଛି କେବଳ ପର୍ଯ୍ୟବେକ୍ଷଣ କରିବାର ଦକ୍ଷତା । ସେ କୌଣସି ଘଟଣା ବା ଚିନ୍ତାକୁ ନିନ୍ଦା କରେନି କି ପ୍ରଶଂସା କରେନାହିଁ । କୌଣସି କାମକୁ ଆରମ୍ଭ କରେନାହିଁ କି ବନ୍ଦ କରେ ନାହିଁ ।

ଆତ୍ମ ସ୍ମରଣ ଅଭ୍ୟାସ କଷ୍ଟସାଧ୍ୟ । ଖୁବ୍ କମ୍ ଲୋକ ଏଥିରେ ସଫଳତା ଲାଭ କରନ୍ତି । ସଫଳତା ଲାଭ କଲା ପରେ ପୂର୍ଣ୍ଣ ଚେତନା ପ୍ରାପ୍ତି ହୁଏ । ସେତେବେଳେ ଘଟଣା ତା' ଉପରେ ନିଜର ଅଧିପତ୍ୟ ସାବ୍ୟସ୍ତ କରିପାରେ ନାହିଁ । ସେ କେଉଁ ପ୍ରକାର ପ୍ରତିକ୍ରିୟା ଦେଖାଇବ, ତାହା ସେ ସ୍ୱାଧୀନ ଭାବରେ ସ୍ଥିର କରେ । ମାନସିକ ଅଭିବୃଦ୍ଧିର ଏ ଏକ ସୁକଳ୍ପିତ ଦିଗ ।

ଧ୍ୟାନର ଶ୍ରେଣୀକରଣ ଯାହା ହେଉନା କାହିଁକି, ଧ୍ୟାନର ମୂଲ୍ୟାୟନ ଦିଗରେ ବହୁ ପରୀକ୍ଷାମୂଳକ ଗବେଷଣା କରାଯାଇଛି । ୧୯୬୦ ମସିହାରେ ଦଳେ ଦଳେ ଗବେଷକ ଭାରତୀୟ ଧ୍ୟାନୀମାନଙ୍କର ମସ୍ତିଷ୍କ ତରଙ୍ଗ ଅନୁଧ୍ୟାନ ସପକ୍ଷରେ ମତ ଦେଇଛନ୍ତି । ଏହି ଯୋଗୀମାନଙ୍କ ସମ୍ମୁଖରେ ବିଭିନ୍ନ ଉଜ୍ଜ୍ୱଳ ଆଲୋକ, ଉଚ୍ଚଶବ୍ଦ ଓ ଉତ୍ତପ୍ତ ଲୌହ ସ୍ପର୍ଶ ଇତ୍ୟାଦି ତୀବ୍ର ଉଦ୍ଦୀପକ ପ୍ରୟୋଗ କଲେ ମଧ୍ୟ ଧ୍ୟାନସ୍ଥିତ ଅବସ୍ଥା ପରିବର୍ତ୍ତିତ ହୋଇ ନ ଥିଲା । ସେହିପରି ଜାପାନର ଜେନ୍ ସମ୍ପ୍ରଦାୟଙ୍କ ଉପରେ କରାଯାଇଥିବା ମସ୍ତିଷ୍କ ତରଙ୍ଗର ଗବେଷଣା ସବୁ ଧ୍ୟାନର ଉପଯୋଗିତା ଦର୍ଶାଇ ଥାଏ । ଏ ଦୃଷ୍ଟିରୁ ଧ୍ୟାନର ଆବଶ୍ୟକତା ଆଧୁନିକ ଜନ ଜୀବନ ଓ ଗୋଷ୍ଠୀ ଜୀବନର ଏକ ବିକାଶକ ରୂପେ ବିସ୍ତାର କରିବା ସମୀଚୀନ ।

## ଗଞ୍ଜା ନିଶା

ମନୁଷ୍ୟର ବ୍ୟବହାର ଜଟିଳ । ଏହି ଜଟିଳତାର ଏକ ବିଶିଷ୍ଟ ଦିଗ ହେଉଛି ମନୁଷ୍ୟର ଚେତନଶୀଳତାର ରୂପାନ୍ତର । ସାଧାରଣ ଅବସ୍ଥାରେ ବ୍ୟକ୍ତିର ବ୍ୟବହାର ତା'ର ସ୍ୱାଭାବିକ ଚେତନଶୀଳତାଦ୍ୱାରା ନିୟନ୍ତ୍ରିତ ହୁଏ । କିନ୍ତୁ ସ୍ଥଳ ବିଶେଷରେ ଏହି ସ୍ୱାଭାବିକ ଚେତନଶୀଳତାର ପରିବର୍ତ୍ତନ ଘଟେ ଏବଂ ଏହି ପରିବର୍ତ୍ତିତ ଚେତନାଶୀଳତା ତା'ର ବ୍ୟବହାରକୁ ନୂତନ ରୂପରେଖ ଦିଏ । ଧ୍ୟାନ, ସ୍ୱପ୍ନ, ସମ୍ମୋହନ, ଦେହାତୀତ ଅନୁଭୂତି ଓ ନିଶାଦ୍ରବ୍ୟ ସେବନ ପ୍ରଭୃତି ଦ୍ୱାରା ଚେତନଶୀଳତାର ରୂପାନ୍ତର ଘଟେ । ମଦ୍ୟପାନ, ଔଷଧ ଓ ଅନ୍ୟାନ୍ୟ

ନିଶାଦ୍ରବ୍ୟ ସେବନ ଦ୍ୱାରା କୃତ୍ରିମ ଉପାୟରେ ଚେତନଶୀଳତାର ପରିବର୍ତ୍ତନ ଆଣାଯାଇପାରେ । ବିଶେଷତଃ ଗଞ୍ଜା ଦ୍ୱାରା ଯେଉଁସବୁ ପରିବର୍ତ୍ତନ ଘଟେ, ତା'ର ମନସ୍ତାତ୍ତ୍ୱିକ ପର୍ଯ୍ୟାଲୋଚନା ବେଶ୍ କୌତୂହଳପୂର୍ଣ୍ଣ । ବହୁବର୍ଷ ପୂର୍ବେ ଗଞ୍ଜାକୁ ଏକ ନିଶାଦ୍ରବ୍ୟରୂପେ ବିବେଚନା କରାଯାଉଥିଲେ ମଧ୍ୟ ଏହାର ପ୍ରଭାବକୁ ବିଜ୍ଞାନସମ୍ମତ ଭାବରେ ଅନୁଧ୍ୟାନ କରିବା ମାତ୍ର ଅଳ୍ପକିଛି ବର୍ଷ ପୂର୍ବରୁ ଆରମ୍ଭ ହୋଇଛି । ଉଦାହରଣ ସ୍ୱରୂପ କୁହାଯାଇ ପାରେ ଯେ ଗଞ୍ଜାର ପ୍ରଧାନ ଉପାଦାନ ଟେଟ୍ରାହାଇଡ୍ରୋକାନାବାଇନଲ ବ୍ୟବସ୍ଥା THCକୁ ଚିହ୍ନଟ କରାଯାଇ ତାକୁ ବିଜ୍ଞାନାଗାରରେ ମାତ୍ର ଷଷ୍ଠ-ଦଶକରେ ପ୍ରସ୍ତୁତ କରାଗଲା । ଗଞ୍ଜା ସେବନ ଜନିତ ଚେତନଶୀଳତାର ରୂପାନ୍ତର କଥା ବିଚାର କଲାବେଳେ ଆମକୁ ମନେରଖିବାକୁ ହେବ ଯେ ଏହାର ପ୍ରଭାବ କେବଳ ଗଞ୍ଜାର ଔଷଧଗତ ଗୁଣଦ୍ୱାରା ନିୟନ୍ତ୍ରିତ ହୁଏନାହିଁ; ଏହା ବହୁ ପରିମାଣରେ ମନସ୍ତାତ୍ତ୍ୱିକ କାରଣଦ୍ୱାରା ପ୍ରଭାବିତ ହୁଏ । ବାସ୍ତବରେ ଗଞ୍ଜାର ଗୁଣ ଓ ପରିମାଣକୁ ବାଦ୍ ଦେଲେ ରୂପାନ୍ତରିତ ଚେତନଶୀଳତାକୁ ପ୍ରଭାବିତ କରୁଥିବା ସମସ୍ତ ଅବସ୍ଥା ଗୁଡ଼ିକ ମନସ୍ତାତ୍ତ୍ୱିକ । ଗଞ୍ଜା ବ୍ୟବହାର କରିଥିବା ବ୍ୟକ୍ତିର ବ୍ୟକ୍ତିତ୍ୱ, ଆଶା, କାମନା ଓ ମିଜାଜ ପ୍ରଭୃତିର ପ୍ରଭାବ ଖୁବ୍ ବେଶି । ଗଞ୍ଜା ସହିତ ଜଡ଼ିତ ନ ଥିବା ଅନ୍ୟାନ୍ୟ ଅବସ୍ଥାଗୁଡ଼ିକ ହେଉଛି ବାହ୍ୟିକ ପରିବେଶ ଓ ବ୍ୟକ୍ତିର ଶାରୀରିକ ଅବସ୍ଥା ।

ଗଞ୍ଜା ସେବନ ଫଳରେ ଯେଉଁସବୁ ମନସ୍ତାତ୍ତ୍ୱିକ ଅନୁଭୂତି ସୃଷ୍ଟି ହୁଏ, ତାହା ଦୁଇ ଶ୍ରେଣୀର । ପ୍ରଥମଟିକୁ ବିଶୁଦ୍ଧ ଔଷଧଗତ ପ୍ରଭାବ କୁହାଯାଇପାରେ । ଗଞ୍ଜା ସେବନ ଜନିତ ରାସାୟନିକ ପ୍ରକ୍ରିୟା ଫଳରେ ମନୁଷ୍ୟର ସ୍ନାୟୁସଂସ୍ଥାରେ ଯେଉଁ ପରିବର୍ତ୍ତନ ଘଟେ, ତାହା ଔଷଧଗତ ପ୍ରଭାବ । ଦ୍ୱିତୀୟ ପ୍ରକାର ପ୍ରଭାବକୁ ସମ୍ଭାବ୍ୟ ପରିଣାମ ଆଖ୍ୟା ଦିଆଯାଇପାରେ । ସ୍ନାୟୁସଂସ୍ଥାରେ ରାସାୟନିକ ପ୍ରକ୍ରିୟା ସହିତ ମନସ୍ତାତ୍ତ୍ୱିକ ଅବସ୍ଥା ଜଡ଼ିତଥିଲେ କେତେକ ପ୍ରକାରର ଅନୁଭୂତି ସୃଷ୍ଟି ହେବାର ସମ୍ଭାବନା ଥାଏ । ଏହି ସମ୍ଭାବିତ ପ୍ରଭାବ ଗୁଡ଼ିକର ସଂଖ୍ୟା ଔଷଧଗତ ପ୍ରଭାବଠାରୁ ଯଥେଷ୍ଟ ବେଶି ।

ଉପରୋକ୍ତ ଦୁଇ ପ୍ରକାର ପ୍ରଭାବକୁ ବିସ୍ତାରକୁ ନେଇ ମୁଖ୍ୟ ଅନୁଭୂତିର ଆଲୋଚନା କରାଯାଇ ପାରେ । ବ୍ୟକ୍ତିର ପ୍ରତ୍ୟକ୍ଷ, ଆବେଗ, ଜ୍ଞାନ-ଧାରଣା, ସ୍ମରଣକାର୍ଯ୍ୟ, ନିଜ ସମ୍ପର୍କରେ ଧାରଣା, ସମୟବୋଧ ଓ କାର୍ଯ୍ୟପ୍ରଣାଳୀରେ ଯେଉଁ ସବୁ ପରିବର୍ତ୍ତନ ଘଟେ ସେଗୁଡ଼ିକ ମନସ୍ତାତ୍ତ୍ୱିକ ପ୍ରଭାବର ଅନ୍ତର୍ଭୁକ୍ତ ।

ଗଞ୍ଜାନିଶା ଫଳରେ ବ୍ୟକ୍ତିର ପ୍ରତ୍ୟକ୍ଷ ଅନୁଭୂତିରେ ପ୍ରଭୂତ ପରିବର୍ତ୍ତନ ଘଟେ । ତା'ର ପ୍ରତ୍ୟକ୍ଷ କାର୍ଯ୍ୟ ବୃଦ୍ଧି ପାଇଛି ବୋଲି ସେ ଅନୁଭବ କରେ । ତା'ର ଧାରଣା ହୁଏ ଯେ ସେ ବସ୍ତୁର ପ୍ରକୃତ ଗୁଣସବୁ ନିର୍ଭୁଲଭାବେ ପ୍ରତ୍ୟକ୍ଷ କରୁଛି । ସାଧାରଣତଃ ଏପରି ପ୍ରଭାବ ଖୁବ୍ ଆନନ୍ଦ ଦାୟକ । ଗଞ୍ଜା ବ୍ୟବହାର କରିଥିବା ବ୍ୟକ୍ତି ଶବ୍ଦ, ସ୍ୱାଦ ଓ ସ୍ପର୍ଶର

ନୂତନ ଗୁଣ ପ୍ରତ୍ୟକ୍ଷ କରିପାରେ; ଗୀତର ଭାବାର୍ଥକୁ ବେଶି ବୁଝିପାରେ ଓ ଖାଦ୍ୟଗ୍ରହଣ ବେଳେ ଅଧିକ ଆନନ୍ଦ ଉପଭୋଗ କରିପାରେ । ସେ ଅନୁଭବ କରେ ଯେ ସେ ସ୍ପର୍ଶ କରି ଅଧିକ ଇନ୍ଦ୍ରିୟ ସୁଖ ଲାଭ କରି ପାରୁଛି ଏବଂ ଅର୍ଥହୀନ ଦୃଶ୍ୟ ବସ୍ତୁରେ ନୂତନ ଛାଞ୍ଚ ଦେଖିବାରେ ସାମର୍ଥ୍ୟ ଲାଭ କରୁଛି । ଶରୀର ଭିତରର ବିଭିନ୍ନ ନୂତନ ସମ୍ବେଦନ ସେ ପାଏ ଓ ଏ ସମ୍ବେଦନ ତାକୁ ଆମୋଦ ଦିଏ । କେତେକଙ୍କ ମନରେ ଗଞ୍ଜା ସେବନ ପରେ ଚକ୍ଷୁ, କର୍ଣ୍ଣ, ନାସା ଇତ୍ୟାଦି ଇନ୍ଦ୍ରିୟର କାର୍ଯ୍ୟ ଖୁବ୍ ତୀକ୍ଷଣ ହୋଇ ଉଠେ ଏବଂ ଖୁବ୍ କମ ଶବ୍ଦ ସମ୍ପନ୍ନ ଆଲୋକ, ଶବ୍ଦ ଓ ଗନ୍ଧ ଇତ୍ୟାଦି ଗ୍ରହଣ କରିପାରେ । ମାତ୍ର ବିଜ୍ଞାନାଗାରରେ ଏହା ପ୍ରମାଣିତ ହୋଇପାରି ନାହିଁ ।

ଅଭିଜ୍ଞ ଗଞ୍ଜା ସେବନକାରୀ ନିଶାଗ୍ରସ୍ତ ହେଲେ ସବୁବେଳେ ଆନନ୍ଦ ଅନୁଭବ କରେ । କିନ୍ତୁ ଆନନ୍ଦଦାୟକ ଓ ବିରକ୍ତିଦାୟକ ଉଭୟ ପ୍ରକାର ଆବେଗର ମାତ୍ରା ଖୁବ୍ ବଢ଼ିଯାଏ । ପାଶ୍ଚାତ୍ୟଜଗତର ଏକ ସର୍ଭେରୁ ଜଣାଯାଇଛି ଯେ ପ୍ରାୟ ଶତକଡ଼ା ୫ ଭାଗରୁ ୧୦ ଭାଗ ଲୋକ ଗଞ୍ଜା ଆରମ୍ଭ କଲାବେଳେ ଖୁବ୍ ଖରାପ ପ୍ରତିକ୍ରିୟାର ଶିକାର୍ ହୋଇ ଗଞ୍ଜାସେବନ ତ୍ୟାଗ କରିଛନ୍ତି । ଏପରିକି ଅଭିଜ୍ଞ ସେବନକାରୀମାନଙ୍କର ମଧ୍ୟ ଅପ୍ରୀତିକର ଅନୁଭୂତି ରହିଛି । ବିଶେଷତଃ କୌଣସି ଅପ୍ରୀତିକର ଆବେଗରୁ ମୁକ୍ତିଲାଭ କରିବାକୁ ଗଞ୍ଜା ସେବନ କଲେ ଖରାପ ପ୍ରତିକ୍ରିୟା ଲାଭ କରିବାକୁ ହୋଇଥାଏ ।

ନିଶାକାଳୀନ ଜ୍ଞାନଧାରଣାର ପରିବର୍ତ୍ତନ ଘଟେ । ଏ ସମୟର ଭାବନାଗୁଡ଼ିକ ଦୈନନ୍ଦିନ ଯୁକ୍ତିଦ୍ୱାରା ଆବଦ୍ଧ ନ ହୋଇ ବ୍ୟକ୍ତିଗତ ବୁଦ୍ଧିଦ୍ୱାରା ପ୍ରଭାବିତ ବୋଲି ବ୍ୟକ୍ତି ଅନୁଭବ କରିପାରେ । ଅତି ବେଶି ନିଶାସେବନ ହୋଇ ନ ଥିଲେ ବ୍ୟକ୍ତି ନିଜର ଭାବନା କ୍ରିୟାଗୁଡ଼ିକୁ ଭଲରୂପେ ନିୟନ୍ତ୍ରଣ କରିପାରେ । ଇଚ୍ଛା କଲେ ନିଶାର ପ୍ରଭାବରୁ ନିଜକୁ ମୁକ୍ତ କରିପାରେ, କିଶୋର ସୁଲଭ ଅନୁଭୂତି ଲାଭ କରିପାରେ ଓ ଅନ୍ୟର ମତାମତ ପ୍ରତି ଅଭିନିବିଷ୍ଟ ହୋଇପାରେ । ସେ ଅନୁଭବ କରିପାରେ ଯେ ଅନ୍ୟ ସମ୍ପର୍କରେ ଓ ନିଜ ସମ୍ପର୍କରେ ତା'ର ଅନ୍ତର୍ଦୃଷ୍ଟିର ଉଦୟ ହେଉଛି । ଭବିଷ୍ୟତ ସମ୍ପର୍କରେ ଅଧିକ ଭାବନାଗ୍ରସ୍ତ ନ ହୋଇ ସେ ଉପସ୍ଥିତ ବର୍ତ୍ତମାନ ଓ ନିକଟସ୍ଥ ପରିବେଶ ପ୍ରତି ଅଧିକ ଭାବନା ଓ ଅନୁଭୂତି ପ୍ରୟୋଗ କରେ । ଖୁବ୍ ସୂକ୍ଷ୍ମ ହାସ୍ୟରସ ଗ୍ରହଣ କରିପାରେ ଓ ଅନ୍ୟର ବିରୋଧାତ୍ମକ ମତାମତ ପ୍ରତି ସହନଶୀଳ ମନୋଭାବ ଦର୍ଶାଇପାରେ ।

ଗଞ୍ଜା ନିଶା ସମୟରେ ବ୍ୟକ୍ତିର ସ୍ମରଣ କାର୍ଯ୍ୟରେ ହ୍ରାସ ଘଟେ । ଏହି ହ୍ରାସପ୍ରାପ୍ତ ସ୍ମରଣ ପ୍ରକ୍ରିୟାର ଏକ ବୈଶିଷ୍ଟ୍ୟ ହେଉଛି ଯେ ବ୍ୟକ୍ତି ଗୋଟିଏ ପଲକରେ ଯେତୋଟି ଜିନିଷ ମନେ ରଖିବାର କଥା, ତା'ଠାରୁ କମ ସଂଖ୍ୟକ ବସ୍ତୁ ମନେ ରଖେ । ଫଳରେ କଥାବାର୍ତ୍ତା ଆରମ୍ଭର ଅଳ୍ପସମୟ ପରେ ଆରମ୍ଭ କଥାବାର୍ତ୍ତା ଗୁଡ଼ିକୁ ଭୁଲିଯାଏ । ଅବଶ୍ୟ

ଏ ପ୍ରକାର ଅସ୍ୱାଭାବିକତାକୁ ଦୂର କରିବାକୁ ସଚେଷ୍ଟ ହେବାର ଆବଶ୍ୟକତା ସେ ଅନୁଭବ କରେ । ବିମୂର୍ତ୍ତିଚିନ୍ତା ପରିବର୍ତ୍ତେ ମାନସିକ ଚିତ୍ରବହୁଳ ଭାବନା ମାଧ୍ୟମରେ ଅଧିକାଂଶ ସ୍ମରଣକ୍ରିୟା ସମାହିତ ହୁଏ । ଅତ୍ୟଧିକ ନିଶା ହେଲେ ଗୋଟିଏ ବାକ୍ୟର ଆରମ୍ଭ ଭାଗ ମଧ୍ୟ ସେ ଭୁଲିଯାଇ ପାରେ । ସ୍ମରଣପ୍ରକ୍ରିୟାର ଏପରି ହ୍ରାସ ଯୋଗୁ ବିଭିନ୍ନ ଜଟିଳ କାର୍ଯ୍ୟ ସବୁ କରିବା କଷ୍ଟସାଧ୍ୟ ହୋଇପଡ଼େ । ସାଧାରଣତଃ ଅଭିଜ୍ଞ ଗଞ୍ଜା ସେବନକାରୀ-ମାନେ ଏପରି ସ୍ମରଣ ହ୍ରାସ ଦ୍ୱାରା ଅସୁବିଧାରେ ପଡ଼ନ୍ତି ନାହିଁ । କୌଣସି କ୍ଷେତ୍ରରେ କାର୍ଯ୍ୟ ସମ୍ପାଦନ ପାଇଁ ସ୍ମରଣ କ୍ରିୟାର ଆବଶ୍ୟକତା ଥିଲେ ସେମାନେ ଗଞ୍ଜା ସେବନରୁ ନିବୃତ୍ତ ରୁହନ୍ତି ।

ନିଜ ସମ୍ପର୍କରେ ସାଧାରଣ ପରିବର୍ତ୍ତନ ମଧ୍ୟ ଘଟେ । କିଶୋର ସୁଲଭ ଭାବ-ଭଙ୍ଗୀର ବଶବର୍ତ୍ତୀ ହେବା ଓ ଅନ୍ୟର ଅନୁଭୂତିକୁ ବୁଝିବା ପାଇଁ ଚେଷ୍ଟା କରିବା କଥା ପୂର୍ବରୁ ଉଲ୍ଲେଖ କରାଯାଇଛି । ଅନ୍ୟାନ୍ୟ ବୈଶିଷ୍ଟ୍ୟ ହେଉଛି ନିଶାସେବନକାରୀ ବ୍ୟକ୍ତି ଘଟିଥିବା ଘଟଣାକୁ ଗ୍ରହଣ କରିନେଇ ପାରେ ଓ ସେ ଘଟଣାଗୁଡ଼ିକୁ ନିୟନ୍ତ୍ରଣ କରିବାର ତୀବ୍ର ଇଚ୍ଛା ନ ଥାଏ । ସମାଜିକ କ୍ରୀଡ଼ାରେ ଅଂଶ ଗ୍ରହଣ କରିପାରେ ନାହିଁ; ଅନ୍ୟ ସମ୍ପର୍କରେ ଅନ୍ତର୍ଦୃଷ୍ଟି ଲାଭ କଲା ପରି ଅନୁଭୂତି ଆସେ । ସମସ୍ତ ଖୁବ୍ ଧୀରେ ଧୀରେ କଟୁଛି ବୋଲି ନିଶାଗ୍ରସ୍ତ ବ୍ୟକ୍ତିର ମନେ ହୁଏ । କିନ୍ତୁ ସାଧାରଣ ସେବନକାରୀ ଅନୁଭବ-କରେ ଯେ ସମସ୍ତ ଖୁବ୍ ଶୀଘ୍ର ଗତିକରୁଛି । ଅନ୍ୟ ଏକ ଦୃଷ୍ଟିକୋଣରୁ ତାର ବର୍ତ୍ତମାନ ଓ ଉପସ୍ଥିତ ଘଟଣାପ୍ରତି ଅଧିକ ଆଗ୍ରହ ଅନୁଭୂତ ହୁଏ ।

ଗଞ୍ଜା ନିଶା ଫଳରେ ଅଭିଜ୍ଞ ସେବନକାରୀ ଖୁବ୍ କ୍ଳାନ୍ତିହୀନ ଅନୁଭବ କରେ ଏବଂ ଚଳପ୍ରଚଳ କରିବା ପାଇଁ ବେଶି ଇଚ୍ଛା କରେ ନାହିଁ । ଗବେଷଣାଗାରର ପରୀକ୍ଷାରୁ ଦେଖାଯାଇଛି ଯେ ବ୍ୟକ୍ତିର କୌଣସି ଏକ କାର୍ଯ୍ୟରେ ଦୃଢ଼ ଅଭିଜ୍ଞତା ଥିଲେ ଓ କାର୍ଯ୍ୟଟି ଅଙ୍ଗଚାଳନା ଉପରେ ନିର୍ଭର କରୁଥିଲେ ଗଞ୍ଜାସେବନ ଦ୍ୱାରା କାର୍ଯ୍ୟଦକ୍ଷତା ବିଶେଷ ବ୍ୟାହତ ହୁଏନାହିଁ । କାର୍ଯ୍ୟର ଜଟିଳତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ କାର୍ଯ୍ୟଦକ୍ଷତା ବ୍ୟାହତ ହେବାର ସମ୍ଭାବନା ବୃଦ୍ଧିପାଏ । କିନ୍ତୁ ନୂଆ କରି ଗଞ୍ଜା ସେବନ ଆରମ୍ଭ କରୁଥିବା ବ୍ୟକ୍ତି ଗଞ୍ଜା ଖାଇଲେ ଖୁବ୍ ସରଳ କାର୍ଯ୍ୟ ମଧ୍ୟ ସୁଚାରୁ ରୂପେ ସମ୍ପାଦନ କରି-ପାରେନାହିଁ ।

ଗଞ୍ଜା ନିଶାର ପ୍ରଶଂସକମାନେ ଏହାର ଉପକାର ସପକ୍ଷରେ ଯୁକ୍ତି ବାଢ଼ନ୍ତି । ସେମାନଙ୍କ ମତରେ କ୍ଳାନ୍ତିନାଶ, ପୀଡ଼ନ ଦୂରୀକରଣ, ସୌନ୍ଦର୍ଯ୍ୟବୋଧର ଉଦ୍ରେକ, ଅନ୍ତର୍ଦୃଷ୍ଟି ଲାଭ, ଧାର୍ମିକ ଓ ଆଧ୍ୟାତ୍ମିକ ଅନୁଭୂତି ଲାଭ ଇତ୍ୟାଦି ଗଞ୍ଜାନିଶା ମାଧ୍ୟମରେ ସମ୍ଭବ ହୁଏ । ପ୍ରକୃତରେ ପୂର୍ବବର୍ତ୍ତିତ କେତେକ ସାମୟିକ ସୁବିଧା ମିଳୁଥିଲେ ହେଁ ଗଞ୍ଜା-

ନିଶାଦ୍ୱାରା ଦୀର୍ଘକାଳୀନ ସୁବିଧା ମିଳିବାର ପ୍ରମାଣ ଏ ପର୍ଯ୍ୟନ୍ତ ମିଳୁନାହିଁ । ଅଧିକାଂଶ ଦେଶରେ ଗଞ୍ଜା ବ୍ୟବହାର ସହିତ ଅପରାଧମୂଳକ କାର୍ଯ୍ୟକଳାପର ସମ୍ପର୍କ ଲକ୍ଷ୍ୟକରାଯାଇଛି । ଅଧିକାଂଶ ଦେଶରେ ଗଞ୍ଜା ବ୍ୟବହାର ନିୟମ ବହିର୍ଭୂତ ହୋଇଥିବାରୁ ନିଶା-ସେବନକାରୀଙ୍କୁ ଆଇନ ଅନୁଯାୟୀ ଦଣ୍ଡିତ ହେବାକୁ ପଡ଼ିପାରେ । ତେବେ ନିଶା ସେବନ ଦ୍ୱାରା ଯେଉଁ କୁଫଳ ହୁଏ ବୋଲି କୁହାଯାଏ, ତାହା ଅନେକ ସ୍ଥଳରେ ଅତିରଞ୍ଜିତ ହୋଇଥାଏ । ମଦ୍ୟପାନ ଦ୍ୱାରା ଯେଉଁସବୁ କୁଫଳ ମିଳେ, ଗଞ୍ଜା ସେବନଦ୍ୱାରା ତାଠାରୁ ଅଧିକ କ୍ଷତି ହେବାର ବୈଜ୍ଞାନିକ ପ୍ରମାଣ ନାହିଁ । ତଥାପି ମାନସିକ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଗଞ୍ଜାସେବନ ଅନୁମୋଦନୀୟ ନୁହେଁ । ଗଞ୍ଜାର କ୍ରମାଗତ ବ୍ୟବହାର ଫଳରେ ବ୍ୟକ୍ତିର ଏପରି ଏକ ନିର୍ଭରଶୀଳତା ସୃଷ୍ଟି ହୁଏ ଯେ ଗଞ୍ଜାରୁ ନିବୃତ୍ତ କଲେ ବ୍ୟକ୍ତି ତୀବ୍ର ଉଦ୍‌ବେଗ ଅନୁଭବ କରେ । ଏହା ମାନସିକ ସୁସ୍ଥତାର ଲକ୍ଷଣ ନୁହେଁ । ଦୈନନ୍ଦିନ ଜୀବନର ବିଭିନ୍ନ ଘଟଣା ସହିତ ସମନ୍ୱୟ ରକ୍ଷା କରିବାରେ ଏହା ଅନ୍ତରାୟ ହୋଇଥାଏ ।

## ସମ୍ମୋହନ ( ହିପ୍‌ନୋସିସ୍ )

ସମ୍ମୋହନ (Hypnosis) ରୂପାନ୍ତରିତ ଚେତନଶୀଳତାର ଏକ ବିଶିଷ୍ଟ ପ୍ରକାଶ । ସମ୍ମୋହନକୁ କେନ୍ଦ୍ର କରି ଏତେ ବେଶୀ ଗଳ୍ପ, ଉପନ୍ୟାସ ତଥା ବୈଜ୍ଞାନିକ ଉପନ୍ୟାସ ସୃଷ୍ଟି ହୋଇଛି ଯେ, ଏହାର ବିଜ୍ଞାନ ସମ୍ମତ ରୂପରେଖକୁ କାଳ୍ପନିକ ଚିତ୍ରରୁ ପୃଥକ କରିବା କଷ୍ଟକର । ତଥାପି ଆଧୁନିକ ଯୁଗରେ ସମ୍ମୋହନ ସମ୍ପର୍କରେ ଗବେଷଣା ଖୁବ୍ ବ୍ୟାପକ । ସମ୍ମୋହନକୁ ଏକ ପ୍ରକାର ମାନସିକ ବିରତି ବା ଗତିଶୀଳ ଭାବନାର ବିରାମ-ମୂଳକ ଅବସ୍ଥା ରୂପେ ବର୍ଣ୍ଣନା କରାଯାଇପାରେ । ବାହ୍ୟଜଗତର ସଙ୍କେତକୁ ଅତି ବେଶୀ ମାତ୍ରାରେ ଗ୍ରହଣ କରିନେବାର ଏହା ଏକ ନିଦ୍ରାଭୁଲ୍ୟ ଅବସ୍ଥା ।

ବ୍ୟକ୍ତି ଶାନ୍ତ ମନରେ ବସିଥିଲା ବେଳେ ବା ବିଛଣାରେ ଆରାମ କରୁଥିବାବେଳେ ସମ୍ମୋହନ ପ୍ରୟୋଗ କରାଯାଏ । ସମ୍ମୋହକ (Hypnotist) ବ୍ୟକ୍ତିଟିକୁ ଶାନ୍ତ ଓ ନୀରବ ହେବାକୁ ଏବଂ ଅନ୍ୟକିଛି ବିଷୟରେ ଚିନ୍ତା ନ କରିବାକୁ କହନ୍ତି । ସାଧାରଣତଃ ବ୍ୟକ୍ତିଟିକୁ ଇଙ୍ଗିତ ଦିଆଯାଏ ଯେ ତା'ର ଆଖି ଦୁଇଟି କ୍ରମଶଃ ତନ୍ଦ୍ରାଚ୍ଛନ୍ନ ହୋଇ-ପଡ଼ୁଛି ଓ ତାକୁ ନିଦ୍ରା ଆଚ୍ଛନ୍ନ କରୁଛି । କୌଣସି କୌଣସି ସମ୍ମୋହକ ସମ୍ମୋହନ ପ୍ରୟୋଗ କଲା ବେଳେ ବ୍ୟକ୍ତିଟିକୁ ସମ୍ମୋହକଙ୍କର କନିଷ୍ଠ ଅଙ୍ଗୁଳିର ଅଗ୍ରଭାଗ ବା ଗୃହର

କାଛରେ ଥିବା ଏକ ଉଜ୍ଜ୍ୱଳ ଜଳ ବୁନ୍ଦାକୁ ନିରବଚ୍ଛିନ୍ନ ଭାବେ ଏକ ଦୃଷ୍ଟିରେ ଚାହିଁ ରହିବା ପାଇଁ ନିର୍ଦ୍ଦେଶ ଦିଅନ୍ତି । ଆଉ କେତେ କେତେ ସମ୍ମୋହକ ନିଜକୁ ଅଧିକ ବିଶ୍ୱାସ-ଯୋଗ୍ୟରୂପେ ଉପସ୍ଥାପନ କରିବାକୁ ସୌଖୀନ ଯନ୍ତ୍ର ବା ସ୍ୱଚ୍ଛ ଗୋଲକ (Crystal ball) ବ୍ୟବହାର କରନ୍ତି । ଧୀରେ ଧୀରେ ବ୍ୟକ୍ତିଟି ହାଲୁକା ଅନୁଭବ କଲେ ସମ୍ମୋହକ ବାରମ୍ବାର ସମସ୍ୱରରେ କହି ଚାଲନ୍ତି ଯେ—ଆହୁରି ବେଶି ନିଦ୍ରା ବ୍ୟକ୍ତିଟିକୁ ଆଚ୍ଛନ୍ନ କରୁଛି । ଜଣେ ସୁଦକ୍ଷ ସମ୍ମୋହକ ଏପରି ଇଙ୍ଗିତ ଦେବା ମାଧ୍ୟମରେ ବ୍ୟକ୍ତିଟି ଯେପରି ସମ୍ମୋହନର ଗଭୀର ଅବସ୍ଥାକୁ ଯାଇ ପାରିବ, ସେପରି ପ୍ରତ୍ୟୟ ତା' ମନରେ ସୃଷ୍ଟି କରି ପାରନ୍ତି ।

ତନ୍ଦ୍ରା ଓ ନିଦ୍ରା ସୂଚନାର ଦୀର୍ଘ ସମୟ ପୁନରାବୃତ୍ତି ଫଳରେ ନିରପେକ୍ଷ ସମ୍ମୋହନ (Neutral hypnosis) ଅବସ୍ଥା ସୃଷ୍ଟି ହୁଏ । ଏପରି ସମ୍ମୋହନରେ ନିର୍ଦ୍ଦିଷ୍ଟ କିଛି ଘଟିବ ବୋଲି ବ୍ୟକ୍ତିକୁ ସଙ୍କେତ ଦିଆଯାଇ ନ ଥାଏ । ଏ ଅବସ୍ଥାରେ ଥିବା ବ୍ୟକ୍ତି ବା ବ୍ୟକ୍ତି ସମ୍ବନ୍ଧ ଏହାକୁ ଏକ ନିର୍ଲିପ୍ତ ଓ ମାନସିକ-ସ୍ଥିରତାପୂର୍ଣ୍ଣ ଅବସ୍ଥା ବୋଲି ବର୍ଣ୍ଣନା କରନ୍ତି । ସେମାନେ ସମ୍ପୂର୍ଣ୍ଣ ଭାବରେ ଶାନ୍ତ ଅନୁଭବ କରନ୍ତି ଓ ନିଜ ଶରୀରର ଅସ୍ତିତ୍ୱ ପାଶୋରି ପକାନ୍ତି । ସେମାନେ ସେତେବେଳେ କ'ଣ ଚିନ୍ତା କରୁଛନ୍ତି, ଏକଥା ପଚାରିଲେ, ସେମାନେ ଉତ୍ତର ଦିଅନ୍ତି—'କିଛି ନୁହେଁ ।'

ସମ୍ମୋହନର ପ୍ରୟୋଗ ପ୍ରଣାଳୀ ସରଳ ହୋଇଥିଲେ ମଧ୍ୟ ପ୍ରତ୍ୟେକ ବ୍ୟକ୍ତିକୁ ଯେ ସମ୍ମୋହିତ କରିହେବ, ସେ କଥା ନୁହେଁ । ଗବେଷଣାରୁ ଦେଖାଯାଇଛି ଯେ ଶତକଡ଼ା ପାଞ୍ଚରୁ ଦଶଭାଗ ଲୋକଙ୍କୁ ଆଦୌ ସମ୍ମୋହିତ କରିହେବ ନାହିଁ ଏବଂ ପ୍ରାୟ ଶତକଡ଼ା ୧୦ରୁ ୨୦ଭାଗ ଲୋକ ସମ୍ମୋହନର ଗଭୀରତମ ଅବସ୍ଥାକୁ ଚାଲିଯାଇ ପାରିବେ । ଅଧିକାଂଶ ଲୋକ ଏ ଦୁଇପ୍ରକାର ସମ୍ଭାବନାର ମଧ୍ୟଭାଗରେ ବିଭିନ୍ନ ସ୍ଥାନ ଅଧିକାର କରିବେ । ସେହିପରି ସମ୍ମୋହନ ପ୍ରୟୋଗ କରିବାରେ ସବୁ ସମ୍ମୋହକଙ୍କ ଦକ୍ଷତା ସମାନ ନୁହେଁ । ଜଣେ ଲୋକ ସମ୍ମାନ କରୁଥିବା ବ୍ୟକ୍ତିଦ୍ୱାରା ଯେତେ ସହଜରେ ସମ୍ମୋହିତ ହୋଇ ପାରିବ, ଅନ୍ୟ ଦ୍ୱାରା ସେତେ ସହଜରେ ସମ୍ମୋହିତ ହୋଇ ପାରିବ ନାହିଁ । ଆହୁରି ମଧ୍ୟ ଦେଖାଯାଇଛି ଯେ ଯେଉଁ ଲୋକମାନେ ଅନ୍ୟର ମତାମତକୁ ଅତି ସହଜରେ ଗ୍ରହଣ କରିନିଅନ୍ତି, ସେମାନେ ଅନାୟାସରେ ସମ୍ମୋହିତ ହୋଇପାରନ୍ତି ।

ସମ୍ମୋହିତ ଅବସ୍ଥାରେ ଅନେକଗୁଡ଼ିଏ ମାନସିକ ଓ ବ୍ୟାବହାରିକ ପରିବର୍ତ୍ତନ ଘଟେ । ସମ୍ମୋହନ ଫଳରେ ବହୁ ପ୍ରତ୍ୟକ୍ଷଗତ ପରିବର୍ତ୍ତନ ଅଣାଯାଇପାରେ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇ ପାରେ ଯେ, ସମ୍ମୋହିତ ବ୍ୟକ୍ତିଟି କିଛି ପରିଷ୍କାର ଭାବେ ଦେଖି ପାରିବ ନାହିଁ ବୋଲି ବ୍ୟକ୍ତିଟିକୁ କୁହାଗଲା ପରେ ସେ ଜଣାଏ ଯେ ତା'ର ଦୃଷ୍ଟିଶକ୍ତିର ହ୍ରାସ ଘଟିଛି ଓ ସେ କିଛି ପରିଷ୍କାର ଭାବେ ଦେଖି ପାରୁନାହିଁ । ସେହିପରି ଅନ୍ୟ କୌଣସି

ସମ୍ମୋହିତ ବ୍ୟକ୍ତିକୁ କୁହାଯାଇ ପାରେ ଯେ ସେ ଗନ୍ଧ ବାରି ପାରିବ ନାହିଁ । ଏହାପରେ ସେ ବ୍ୟକ୍ତିର ନାକ ପାଖରେ ଆମୋନିଆ ପୂର୍ଣ୍ଣ ଗୋଟିଏ ଖୋଲା ବୋତଲ ରଖିଲେ ମଧ୍ୟ ସେ କୌଣସି ପ୍ରତିକ୍ରିୟା ଦେଖାଇ ନ ଥାଏ । ଯନ୍ତ୍ରଣାର ସମ୍ବେଦନକୁ ସମ୍ମୋହନ ଦ୍ୱାରା ଦୂର କରିବା ସମ୍ଭବ ହେଉଥିବାରୁ ସମ୍ମୋହନକୁ ବହୁକ୍ଷେତ୍ରରେ ନିଶ୍ଚେତକ (Anesthesis) ରୂପେ ବ୍ୟବହାର କରାଯାଏ । ଅପର ପକ୍ଷରେ ସମ୍ମୋହକ ସଙ୍କେତ ଦ୍ୱାରା ବ୍ୟକ୍ତିର ଇନ୍ଦ୍ରିୟାନୁଭୂତିର ତୀକ୍ଷ୍ଣତା ବୃଦ୍ଧି କରାଯାଇ ପାରେ । ଏ କ୍ଷେତ୍ରରେ ବ୍ୟକ୍ତିକୁ ସୂଚନା ଦିଆଯାଏ ଯେ ତା'ର ଇନ୍ଦ୍ରିୟଗ୍ରାହ୍ୟତା ଖୁବ୍ ବେଶୀ । ପରେ ପରେ ବ୍ୟକ୍ତିର ପରିପାର୍ଶ୍ୱରେ କୌଣସି ଉଦ୍ଦୀପନାର ଆଧିକ୍ୟ ନ ଥିଲେ ମଧ୍ୟ ବ୍ୟକ୍ତିଟି ନିଜ ଇନ୍ଦ୍ରିୟାନୁଭୂତିର ବୃଦ୍ଧି ଜଣାଇଥାଏ । ଏପରି ସଙ୍କେତ ବେଳେ ବେଳେ ଭ୍ରାନ୍ତ ପ୍ରତ୍ୟକ୍ଷ (Hallucination)ର ରୂପ ନିଏ । ଗୃହ ମଧ୍ୟରେ ଗୋଟିଏ ଭାଲୁ ବୁଲୁଛି ବୋଲି ସମ୍ମୋହକ ସୂଚନା ଦେବା ପରେ ସମ୍ମୋହିତ ବ୍ୟକ୍ତିଟି ଭାଲୁ ଦେଖୁଛି ବୋଲି ପ୍ରକାଶ କରେ । ଅବଶ୍ୟ ସମ୍ମୋହିତ ବ୍ୟକ୍ତିର ଭୟ ଦୂର କରିବାକୁ ଏପରି ସ୍ଥଳରେ ଜଣେ ସୁଦକ୍ଷ ସମ୍ମୋହକ ଏହା ଏକ ପୋଷାଭାଲୁ ବୋଲି ସୂଚନା ଦିଅନ୍ତି ।

ସମ୍ମୋହନ ସମୟରେ ଅନ୍ତର୍ନିହିତ କିମ୍ବା ବାହ୍ୟିକ ପ୍ରକ୍ରିୟା ଉପରେ ଚେତନଶୀଳତା ନିବଦ୍ଧ କରାଯାଇପାରେ । ଉଦାହରଣ ସ୍ୱରୂପ ସମ୍ମୋହିତ ବ୍ୟକ୍ତି ନିଜ ଶରୀର ଭିତରର କାର୍ଯ୍ୟକଳାପ ଅନୁଭବ କରିବାର ସାମର୍ଥ୍ୟ ଲାଭ କରିପାରେ । ଆହୁରି ଆଶ୍ଚର୍ଯ୍ୟର କଥା ଯେ, ବ୍ୟକ୍ତିର ଚେତନା ସହିତ ଜଡ଼ିତ ବହୁ ପ୍ରକ୍ରିୟାକୁ ଚେତନଶୀଳତା ଠାରୁ ବିଚ୍ଛିନ୍ନ କରାଯାଇ ପାରେ । ସମ୍ମୋହିତ ବ୍ୟକ୍ତିକୁ କୁହାଯାଇପାରେ ଯେ, ତାହାର ଚେତନାର ବାହାରେ ତା'ର ହାତଟି ବୃତ୍ତାକାର ହୋଇ ବୁଲିବ ଏବଂ ଦେଖାଯିବ ଯେ ତା'ର ହାତଟି ଘୂରୁଛି । ଅନ୍ୟ ଗୋଟିଏ ସମ୍ମୋହିତ ବ୍ୟକ୍ତିକୁ କୁହାଯାଇ ପାରେ ଯେ, ସେ ଧୀରେ ଧୀରେ ଅନ୍ଧ ହେଉଛି ଏବଂ ସମ୍ମୋହକ ଏକ ନିର୍ଦ୍ଦିଷ୍ଟ ଅଙ୍ଗଭଙ୍ଗୀ ଦେଖାଇଲା ମାତ୍ରେ ତା'ର ଅନ୍ଧତ୍ୱ ଚାଲିଯିବ । ଏପରି ସ୍ଥଳେ ବ୍ୟକ୍ତି ନିଜର ଅନ୍ଧତ୍ୱ ସୂଚାଇବ ଓ ଅନ୍ଧ ପରି ବ୍ୟବହାର କରିବ; ମାତ୍ର ସମ୍ମୋହକ ପୂର୍ବପ୍ରସ୍ତାବିତ ଅଙ୍ଗଭଙ୍ଗୀ ଦେଖାଇବା ପରେ ବ୍ୟକ୍ତିର ଅନ୍ଧତ୍ୱ ଦୂରୀଭୂତ ହେବ ।

ନିରପେକ୍ଷ ସମ୍ମୋହନରେ ସାଧାରଣତଃ କୌଣସି ଭାବଗତ ଆବେଗ ନ ଥାଏ । ସମ୍ମୋହକର ସଙ୍କେତଦ୍ୱାରା ଭାବଗତ ଆବେଗ ଅଣାଯାଇପାରେ । ଉଦ୍ଦୀପକଟି ଭାବ ସୃଷ୍ଟି ପାଇଁ ଅନୁପଯୋଗୀ ହେଲେ ସୁଦ୍ଧା ଆବେଗ ସୃଷ୍ଟି କରିଥାଏ । ଉଦାହରଣ ସ୍ୱରୂପ, ବ୍ୟକ୍ତିକୁ କୁହାଯାଇ ପାରେ ଯେ—"ତୁମେ ବର୍ତ୍ତମାନ ଗୋଟିଏ ମଜାକଥା ଶୁଣିବାକୁ ଯାଉଛ ।" ତା'ପରେ ସମ୍ମୋହକ କହିପାରନ୍ତି—"ଘାସ ସବୁଜ ।" ସମ୍ମୋହକଙ୍କର ଏପରି ଉକ୍ତିରେ ହସର କୌଣସି ଉପାଦାନ ନ ଥିଲେ ମଧ୍ୟ ସମ୍ମୋହିତ ବ୍ୟକ୍ତି ଖୁବ୍ ଜୋରରେ ହସିବାକୁ ଆରମ୍ଭ କରେ ।

ସମ୍ମୋହନକାଳୀନ ସ୍ମରଣ କାର୍ଯ୍ୟରେ ମଧ୍ୟ ପରିବର୍ତ୍ତନ ଅଣାଯାଇପାରେ । ସମ୍ମୋହିତ ବ୍ୟକ୍ତି କୌଣସି ଏକ ନିର୍ଦ୍ଦିଷ୍ଟ ଦିନ ସ୍ମରଣ କରିପାରିବ ନାହିଁ ବୋଲି ସମ୍ମୋହକ ଇଙ୍ଗିତ ଦେଲା ପରେ ସମ୍ମୋହିତ ବ୍ୟକ୍ତି ସେଗୁଡ଼ିକ ମନେ ପକାଇ ପାରନ୍ତି ନାହିଁ । ସମ୍ମୋହିତ ଅବସ୍ଥାରୁ ଜାଗ୍ରତ ଅବସ୍ଥାକୁ ଆସିବା ପରେ ସମ୍ମୋହିତ ଅବସ୍ଥାରେ ଘଟିଥିବା ଘଟଣା ସବୁ ବ୍ୟକ୍ତିର ମନେ ରହିବ ନାହିଁ—ଏପରି ସଙ୍କେତ ଦିଆଗଲେ ସମ୍ମୋହିତ ଘଟଣାବଳୀର ସ୍ମରଣ ବ୍ୟକ୍ତି ପକ୍ଷରେ ଅସମ୍ଭବ ହୋଇପଡ଼େ । ଅନ୍ୟ ପକ୍ଷରେ ବ୍ୟକ୍ତିର ସ୍ମରଣଶକ୍ତି ଅନନ୍ୟସାଧାରଣ ବୋଲି କୁହାଗଲେ ବ୍ୟକ୍ତି ତା'ର ସାଧାରଣ ସ୍ମରଣଶକ୍ତି ଠାରୁ ଯଥେଷ୍ଟ ବେଶୀ ସ୍ମରଣଶକ୍ତିର ପରିଚୟ ଦେଇଥାଏ ।

ବ୍ୟକ୍ତିର ନିଜ ବିଷୟରେ ଧାରଣାକୁ ପରିବର୍ତ୍ତନ କରିଦେବା ସମ୍ମୋହନ କ୍ରିୟାର ଏକ ବିସ୍ମୟକର ଦିଗ । ବ୍ୟକ୍ତିକୁ ସଙ୍କେତ ଦିଆଯାଇ ପାରେ ଯେ, ସେ ଏକ ଭିନ୍ନ ବ୍ୟକ୍ତି ରୂପେ ବ୍ୟବହାର କରିବ । ସଙ୍କେତ ପ୍ରଦାନ ପରେ ବ୍ୟକ୍ତିଟି ଏକ ପୃଥକ ବ୍ୟକ୍ତି ରୂପେ କାର୍ଯ୍ୟ କରେ । ଭିନ୍ନ ବ୍ୟକ୍ତିର ବ୍ୟକ୍ତିତ୍ୱର ସବୁ ମିଳିଥାଏ । ଅବଶ୍ୟ ଏପରି ଦ୍ୱିତୀୟ ବ୍ୟକ୍ତିତ୍ୱ ସୃଷ୍ଟିରେ କେତେକ ବିପଦର ସମ୍ଭାବନା ଥିବାରୁ ମୁଷ୍ଟିମେୟ ସମ୍ମୋହକ ଏପରି ସଙ୍କେତ ପ୍ରଦାନ କରନ୍ତି ।

ସମ୍ମୋହନ ମାଧ୍ୟମରେ ବ୍ୟକ୍ତିକୁ ତା' ଜୀବନର ଆରମ୍ଭକାଳକୁ ଫେରାଇ ନେବା ବେଶ୍ କୌତୂହଳପୂର୍ଣ୍ଣ । ବ୍ୟକ୍ତିକୁ ଯଦି କୁହାଯାଏ ତାକୁ ମାତ୍ର ଛ ବର୍ଷ, ତେବେ ସେ ଛ' ବର୍ଷର ଶିଶୁ ଭଳି କାର୍ଯ୍ୟ କରେ ଓ ଅନୁଭବ କରେ । କେତେକ ସ୍ଥଳରେ ତାକୁ ଛ' ବର୍ଷ ହୋଇଥିଲା ବେଳେ ଘଟିଥିବା ଘଟଣା ମନେ ପକାଇ ବର୍ଣ୍ଣନା କରେ । ସେତେବେଳେ ଅନ୍ୟ ବୟସର ଘଟଣା ତା'ର ମନେ ପଡ଼େ ନାହିଁ । ବେଳେବେଳେ କେତେକ ସମ୍ମୋହକ ବ୍ୟକ୍ତିକୁ କହିଥାଆନ୍ତି, ସେମାନଙ୍କ ପୂର୍ବଜନ୍ମକୁ ଫେରିଯାଇ ଘଟଣାବଳୀ ବର୍ଣ୍ଣନା କରିବାକୁ । ଏପରି ସ୍ଥଳରେ କେତେକ ବ୍ୟକ୍ତି ଘଟଣାବଳୀ ବର୍ଣ୍ଣନା କରିଛନ୍ତି । ମାତ୍ର ପୂର୍ବଜନ୍ମର ଅସ୍ତିତ୍ୱ ବିଷୟରେ ବିଜ୍ଞାନଭିତ୍ତିକ ପ୍ରମାଣ ନ ଥିବାରୁ ସମ୍ମୋହିତ ବ୍ୟକ୍ତିର ବର୍ଣ୍ଣନାରୁ ସତ୍ୟାସତ୍ୟ ନିରୂପଣ କରିବା ସମ୍ଭବ ନୁହେଁ ।

ସମ୍ମୋହନ ବଳରେ ବ୍ୟକ୍ତିର କାର୍ଯ୍ୟ କ୍ଷମତାର ରୂପାନ୍ତର ସମ୍ଭବ ହୁଏ । ଅନେକ ଭାବନ୍ତି ଯେ ସମ୍ମୋହିତ ବ୍ୟକ୍ତି ଖୁବ୍ ଅସହାୟ ନିଃସହାୟ ଭାବରେ କାମ କରେ । ଏହା ଆଂଶିକ ଭାବରେ ସତ । ସମ୍ମୋହକ ବ୍ୟକ୍ତି କିପରି ଘଟଣା ଆଶା କରନ୍ତି, ତା' ଉପରେ ତା'ର ସାମର୍ଥ୍ୟ ନିର୍ଭର କରେ । ଅନେକ ସମୟରେ ବ୍ୟକ୍ତିର ସାମର୍ଥ୍ୟ ପୂର୍ବପରି ଅପରି-ବର୍ତ୍ତିତ ଥାଏ । ବେଳେବେଳେ ସମ୍ମୋହିତ ବ୍ୟକ୍ତି ତା'ର ସାଧାରଣ ଅବସ୍ଥାଠାରୁ ଅଧିକ ଶକ୍ତିଶାଳୀ ବ୍ୟକ୍ତିରୂପେ ବ୍ୟବହାର କରିପାରେ କିମ୍ବା ଅଧିକ ଦକ୍ଷତାସୂଚକ କାର୍ଯ୍ୟ କରିପାରେ । ବାର୍ବର୍ ନାମକ ଜଣେ ପ୍ରଖ୍ୟାତ ଗବେଷକ ଦର୍ଶାଇଛନ୍ତି ଯେ, ଅନେକ ସମୟରେ ସମ୍ମୋହନ ପ୍ରୟୋଗ ନ କରି ମଧ୍ୟ କେବଳ ପ୍ରଶଂସା ସୂଚକ ଇଙ୍ଗିତ ଦେଇ

ବ୍ୟକ୍ତିଠାରୁ ବହୁ ଦକ୍ଷତାପୂର୍ଣ୍ଣ କାର୍ଯ୍ୟ ହାସଲ କରାଯାଇପାରେ । ଅନ୍ୟ ଭାଷାରେ କହିଲେ ବ୍ୟକ୍ତିର ଆଗ୍ରହ ବା ଅଭିପ୍ରେରଣାକୁ ବୃଦ୍ଧି କରି ତାକୁ ସାମର୍ଥ୍ୟସୂଚକ କାର୍ଯ୍ୟରେ ସଫଳଭାବେ ନିଯୁକ୍ତ କରାଯାଇପାରେ ।

ସମ୍ମୋହନର ଏକ ଆକର୍ଷଣୀୟ ବିଭାବ ହେଉଛି ସମ୍ମୋହନର ପରବର୍ତ୍ତୀ ପ୍ରଭାବ । ସମ୍ମୋହନ ମଧ୍ୟରେ ବ୍ୟକ୍ତିକୁ ଇଙ୍ଗିତ ଦିଆଯାଏ ଯେ, ତା'ର ସ୍ୱାଭାବିକ ଅବସ୍ଥା ପ୍ରାପ୍ତି ପରେ ଏକ ନିର୍ଦ୍ଦିଷ୍ଟ ଘଟଣା ଘଟିବ । ଉଦାହରଣ ସ୍ୱରୂପ ତାକୁ ସମ୍ମୋହନ ବଳରେ କୁହାଯାଇ ପାରେ ଯେ, ସେ ଜାଗ୍ରତ ଅବସ୍ଥାକୁ ଆସିବାର ପନ୍ଦର ମିନିଟ ପରେ ତୃଷା ଅନୁଭବ କରିବ ଏବଂ ଗିଲାସେ ପାଣି ଖୋଜିବ । ଦେଖାଯାଏ ଯେ ସମ୍ମୋହନ ଅବସ୍ଥା ପରେ ବ୍ୟକ୍ତିଟି ସ୍ୱାଭାବିକ ଅବସ୍ଥାକୁ ଆସି ତୃଷା ନିବାରଣ ପାଇଁ ପାଣି ଗିଲାସେ ଖୋଜୁଛି । ଏହିପରି ବିଭିନ୍ନପ୍ରକାର ସମ୍ମୋହନୋତ୍ତର ପ୍ରଭାବ ପରିଲକ୍ଷିତ ହୁଏ ।

ଉପରୋକ୍ତ ଆଲୋଚନାର ଅଂଶବିଶେଷ କାଳ୍ପନିକ ପରି ବୋଧ ହେଲେ ହେଁ ଏ ସବୁ ବିଜ୍ଞାନସମ୍ମତ । ସମ୍ମୋହନର ସଦୁପଯୋଗ ବହୁ କାର୍ଯ୍ୟରେ ଲାଗେ । ଏହାର ବହୁ ଚିକିତ୍ସାଗତ ଓ ମନୋରୋଗ ନିବାରଣଗତ ଭୂମିକା ରହିଛି । ନିଶ୍ଚେତକର ଉଦ୍ଭାବନ ପୂର୍ବରୁ ଏହା ଏକ ନିଶ୍ଚେତକ ରୂପେ ବ୍ୟବହୃତ ହେଉଥିଲା ଏବଂ ରାସାୟନିକ ନିଶ୍ଚେତକ ଅନୁପଯୋଗୀ ବିବେଚିତ ହେଲେ ସ୍ଥଳ-ବିଶେଷରେ ଏହା ଏବେ ମଧ୍ୟ ବ୍ୟବହୃତ ହେଉଛି । ଅନ୍ୟପକ୍ଷରେ ସମ୍ମୋହନର ଅପବ୍ୟବହାର ବିପଜ୍ଜନକ । ପ୍ରଥମତଃ କେତେକ ମାନସିକ ରୋଗୀ ରୋଗରୁ ମୁକ୍ତିଲାଭ କରିବାକୁ ସମ୍ମୋହକ ପାଖରୁ ଏକ କୁହୁକପୂର୍ଣ୍ଣ ଚିକିତ୍ସା ଆଶା କରନ୍ତି । ଏପରି ସ୍ଥଳରେ କେତେକ ଅସମ୍ବିଦ୍ଧାନ ସମ୍ମୋହକ ମାନସିକ ରୋଗୀର ଅଭିଜ୍ଞତା ଓ ଅନୁଭୂତିକୁ ସମ୍ମୋହନ ମାଧ୍ୟମରେ ଏକ ନୂତନ ରୂପ ଦେବାକୁ ଯାଇ ଜଟିଳତର ସମସ୍ୟା ସୃଷ୍ଟି କରିଥାଆନ୍ତି । ଦ୍ୱିତୀୟତଃ ସମ୍ମୋହନର ପ୍ରୟୋଗ ପ୍ରଣାଳୀ ବିଶେଷ କଷ୍ଟକର ହୋଇ ନ ଥିବାରୁ ମନୋବିଜ୍ଞାନ ବା ଚିକିତ୍ସା ବିଜ୍ଞାନରେ ତାଲିମ ପାଇ ନ ଥିବା କେତେକ ବ୍ୟକ୍ତି ଏ କୌଶଳ ଶିକ୍ଷା କରି ତା'ର ଅପବ୍ୟବହାର କରିପାରନ୍ତି । ବିଶେଷତଃ ଅନ୍ୟମାନଙ୍କୁ ନିୟନ୍ତ୍ରଣ କରିବାର ଇଚ୍ଛା ସେମାନଙ୍କୁ ଏ ପଥରେ ପ୍ରଲୋଭିତ କରେ । ଏ ଦୁଇଟି ଅପପ୍ରୟୋଗର ମିଳନରେ କେତେକ ଲୋକ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ଖୁବ୍ ବେଶୀ । ଅବଶ୍ୟ କେତେକ ଲୋକଙ୍କର ଧାରଣା ଯେ ସମ୍ମୋହକ ଇଚ୍ଛାକଲେ ଗୋଟିଏ ଲୋକକୁ ସମ୍ମୋହିତ କରି ତାକୁ ନିର୍ଦ୍ଦେଶ ଦେଇପାରନ୍ତି ଅନ୍ୟ ଗୋଟିଏ ଲୋକକୁ ହତ୍ୟା କରିବାକୁ ଏବଂ ସମ୍ମୋହିତ ବ୍ୟକ୍ତିଟି ଏପରି ନରହତ୍ୟାରେ ଭାଗ ନିଏ । ମାତ୍ର ଏହା ସମ୍ପୂର୍ଣ୍ଣ କାଳ୍ପନିକ ଓ ଗଳ୍ପ-ଉପନ୍ୟାସର କଥାବସ୍ତୁରେ ସୀମିତ । ବରଂ ପରୀକ୍ଷା କରାଯାଇ ଦେଖାଯାଇଛି ଯେ, କୌଣସି ବ୍ୟକ୍ତିକୁ ଖୁବ୍ ତୀକ୍ଷ୍ଣ ବା ଆଘାତସୂଚକ ଇଙ୍ଗିତ ଦେଲା ମାତ୍ରେ ବ୍ୟକ୍ତିଟି ସମ୍ମୋହନ ଅବସ୍ଥାରୁ ଜାଗ୍ରତ ଅବସ୍ଥାକୁ ହଠାତ୍ ଫେରିଆସୁଛି । ଗୋଟିଏ ପରୀକ୍ଷାରେ ଜଣେ ବ୍ୟକ୍ତିକୁ ଏକ ନକଲି ବା ଖେଳନା ବନ୍ଧୁକ

ବ୍ୟବହାର କରିବାକୁ କୁହାଯିବାରୁ ସେ ଖେଳନା ବନ୍ଧୁକଟି ବ୍ୟବହାର କଲା । ମାତ୍ର ପ୍ରକୃତ ବନ୍ଧୁକ ଦିଆଯାଇ ସମାନ ଇଙ୍ଗିତ ଦେବାରୁ ତା'ର ସମ୍ମୋହନ ଅବସ୍ଥା ତିରୋହିତ ହେଲା । ସେହିପରି ଅନ୍ୟ ଗୋଟିଏ ପରୀକ୍ଷାରେ ଜଣେ ସମ୍ମୋହିତା ମହିଳାଙ୍କୁ ବିବସ୍ତ୍ର ହେବାକୁ ଇଙ୍ଗିତ ଦେବା ମାତ୍ରେ ସେ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲେ । ସୁତରାଂ ସମ୍ମୋହିତ ବ୍ୟକ୍ତିକୁ ଆଯ୍ଞ ଦେଇ ସବୁ କାର୍ଯ୍ୟ ହାସଲ କରିବାର ପରିସର ସୀମିତ ।

ମସ୍ତିଷ୍କରେ ଘଟିଥିବା ଏକ ନିର୍ଦ୍ଦିଷ୍ଟ ପରିବର୍ତ୍ତନ ଫଳରେ ସମ୍ମୋହନ ସମ୍ଭବ ହୁଏ । ଏହି ପରିବର୍ତ୍ତନକୁ ବୈଜ୍ଞାନିକ ଭାଷାରେ ଅଭ୍ୟନ୍ତରୀଣ ଅନୁବାଧ (Conditioned inhibition) କହନ୍ତି । ସୀମିତ ପରିସର ମଧ୍ୟରେ ଏହାକୁ ବୁଝାଇବା କଷ୍ଟକର ହେଲେ ମଧ୍ୟ ଏତିକି କୁହାଯାଇପାରେ ଯେ, ସମ୍ମୋହନକାରୀଙ୍କ କୌଶଳ ଫଳରେ ସମ୍ମୋହିତ ବ୍ୟକ୍ତିର ମସ୍ତିଷ୍କର ପରିବର୍ତ୍ତନ ଘଟି ସ୍ୱାଭାବିକ ଚେତନଶୀଳତାର ସାମୟିକ ବିରତି ଘଟେ । ଫଳରେ ସମ୍ମୋହିତ ବ୍ୟକ୍ତି ବିନା ବିଚାରରେ ସମ୍ମୋହନକାରୀର ଅନେକ ସଙ୍କେତ ଗ୍ରହଣ କରିନିଏ । ସମ୍ମୋହନ ସମ୍ପର୍କରେ ଗବେଷଣା ବହୁଦିନର, ତଥାପି ଏହାର ବିଜ୍ଞାନଭିତ୍ତି ବିଷୟରେ ଅନୁଶୀଳନ ଏବେ ମଧ୍ୟ ସଂକ୍ଷିପ୍ତ । ଆଗାମୀ କାଳର ଅନୁଧ୍ୟାନ ଏହାର ପରିସରକୁ ବିସ୍ତୃତ ରୂପରେଖ ଦେବ—ଏ ସମ୍ଭାବନାର ଆଶାରେ ବିଜ୍ଞାନୀଗୋଷ୍ଠୀ ତତ୍ପରଶୀଳ ।

## ମାନସିକ ସ୍ୱଳ୍ପତା

ମାନସିକ ସ୍ୱଳ୍ପତା (Mental defficiency) ଏକ ସାମାଜିକ ଉଦ୍‌ବେଗର ବିଷୟ । ପ୍ରତି ସମାଜରେ ବେଶ୍ କିଛିସଂଖ୍ୟକ ଲୋକ ମାନସିକ ସ୍ୱଳ୍ପତା ସମ୍ପନ୍ନ ହୋଇଥିବାରୁ ଏପରି ସାମାଜିକ ଉଦ୍‌ବେଗ ଅସମୀଚୀନ ନୁହେଁ । ଦୁର୍ଭାଗ୍ୟବଶତଃ ସମାଜର ବହୁ ଆଗ୍ରହ ସତ୍ତ୍ୱେ ମାନସିକ ସ୍ୱଳ୍ପତାର କାରଣ ଓ ନିରାକରଣ ଦିଗରେ ଆମର ଜ୍ଞାନ ଖୁବ୍ ସୀମିତ । ମାନସିକ ସ୍ୱଳ୍ପତାର ସଂଜ୍ଞା ନେଇ ବିଶେଷଜ୍ଞମାନଙ୍କ ମଧ୍ୟରେ ମତାନୈକ୍ୟ ରହିଛି । ଅଧିକନ୍ତୁ ମାନସିକ ସ୍ୱଳ୍ପତା ପ୍ରାପ୍ତ ବ୍ୟକ୍ତିମାନେ ବହୁ କ୍ଷତିକର ଗଳ୍ପ, ପ୍ରବାଦ ଓ ଭିତ୍ତିମୂଳ ଅମୂଳକ ଧାରଣାର ଶିକାର ହୋଇଛନ୍ତି । ଏହି ଦୃଷ୍ଟିରୁ ମାନସିକ ସ୍ୱଳ୍ପତାର ସଂଜ୍ଞାକରଣ ଖୁବ୍ ସାବଧାନତାର ସହ କରିବାକୁ ହେବ ଏବଂ ଏହାର ବୈଶିଷ୍ଟ୍ୟ ସମ୍ପର୍କରେ ପ୍ରକୃତ ତଥ୍ୟକୁ କାଳ୍ପନିକ ବର୍ଣ୍ଣନାରୁ ପୃଥକ୍ କରିବାକୁ ହେବ ।

ଅଧିକାଂଶ ସମୟରେ ମାନସିକ ସ୍ୱଳ୍ପତାକୁ ସ୍ୱଳ୍ପବୁଦ୍ଧି ରୂପେ ବିବେଚନା କରାଯାଇ-ଥାଏ । ଏହା ସର୍ବସମ୍ମତ ଯେ, ବୁଦ୍ଧିମତ୍ତା ନେଇ ଲୋକମାନଙ୍କ ମଧ୍ୟରେ ତାରତମ୍ୟର ମାତ୍ରା ଖୁବ୍ ବେଶୀ । ଏହି ବୁଦ୍ଧିମତ୍ତା ଏକ ବିଭାଜକ ରେଖା । ଏହି ରେଖାର ଉପରକୁ ବେଶୀ ବୁଦ୍ଧିମତ୍ତାର ପରିଚୟ ଦେଉଥିବା ଲୋକମାନେ ବୁଦ୍ଧିପ୍ରାପ୍ତ ଏବଂ ଏହି ସୀମାରେଖାର ତଳକୁ ଥିବା ଅଳ୍ପବୁଦ୍ଧି ସମ୍ପନ୍ନ ବ୍ୟକ୍ତିମାନେ ମାନସିକ ସ୍ୱଳ୍ପତା ପ୍ରାପ୍ତ ବୋଲି ଅନେକ ସମୟରେ ଧରାଯାଇଥାଏ । ଏହି ସଂଜ୍ଞା ସ୍ଥୁଳତଃ ବୁଦ୍ଧିଅଙ୍କ ଉପରେ ପର୍ଯ୍ୟବସିତ । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ବ୍ୟକ୍ତିର ବୁଦ୍ଧିମତ୍ତାକୁ ସଂଖ୍ୟାତ୍ମକ ସୂଚକ ଦ୍ୱାରା ପ୍ରକାଶ କରାଯାଇ ପାରେ । ବୁଦ୍ଧି ମାପିବା ପାଇଁ ବିଭିନ୍ନ ପ୍ରକାର ମାପକ (Test) ଅଛି ଏବଂ ଏଗୁଡ଼ିକ ବ୍ୟବହାର କରି ବ୍ୟକ୍ତିର ବୁଦ୍ଧିଅଙ୍କ (Intelligence Quotient) ନିରୂପିତ ହୁଏ । ଏକ ନିର୍ଦ୍ଦିଷ୍ଟ ବୁଦ୍ଧି ଅଙ୍କକୁ ବିଭାଜକ ରେଖା ରୂପେ ନିଆଯାଇ ତାଠାରୁ କମ୍ ବୁଦ୍ଧିଅଙ୍କର ଲୋକମାନଙ୍କୁ ମାନସିକ ସ୍ୱଳ୍ପତା ପ୍ରାପ୍ତ ବୋଲି ବିଚାର କରାଯାଇଥାଏ । ଉଦାହରଣ ସ୍ୱରୂପ, ଆମେରିକା ଯୁକ୍ତରାଷ୍ଟ୍ରର ମାନସିକ ସ୍ୱଳ୍ପତା ସମିତିର ପ୍ରସ୍ତାବ ଅନୁଯାୟୀ ସମଗ୍ର ଜନସଂଖ୍ୟାର ସବୁଠାରୁ କମ୍ ବୁଦ୍ଧିସମ୍ପନ୍ନ ଶତକଡ଼ା ତିନିଭାଗ ଲୋକ ମାନସିକ ସ୍ୱଳ୍ପତାପ୍ରାପ୍ତ । ଅନ୍ୟ କେତେକ ଅନୁଷ୍ଠାନ ଓ ଗବେଷକ ଏକ ଭିନ୍ନ ବୁଦ୍ଧି ଅଙ୍କକୁ ବିଭାଜକ ରେଖା ରୂପେ ଗ୍ରହଣ କରନ୍ତି । ଏ ପ୍ରକାର ସଂଜ୍ଞାରେ ଏକ ବିଶେଷ ଅସୁବିଧା ଅଛି । କେଉଁ ବୁଦ୍ଧି ଅଙ୍କକୁ ବିଭାଜକ ରୂପେ ନିଆଯିବ, ସେ ସପକ୍ଷରେ କିଛି ଯୁକ୍ତିଯୁକ୍ତ ସ୍ଥିରତା ନାହିଁ । ଅନ୍ୟ ଏକ ଅସୁବିଧା ହେଉଛି ଏହାର ଆଇନଗତ ଜଟିଳତା । ଅନେକ ସମୟରେ ବୁଦ୍ଧି ଅଙ୍କ ଦ୍ୱାରା ବିଭାଗୀକୃତ ମାନସିକ ସ୍ୱଳ୍ପତା ସମ୍ପନ୍ନ ବ୍ୟକ୍ତିକୁ ଦାୟିତ୍ୱସମ୍ପନ୍ନ କାର୍ଯ୍ୟ କରିବାକୁ ସୁଯୋଗ ଦିଆଯାଏ ନାହିଁ । କିନ୍ତୁ ପ୍ରଶ୍ନ ହେଉଛି ଏପରି କଠୋରତା କେତେଦୂର ସମୀଚୀନ ? ବୁଦ୍ଧିଅଙ୍କ ୭୦ ପାଉଥିବା ପିଲା ପ୍ରକୃତରେ କଣ ବୁଦ୍ଧି ଅଙ୍କ ୭୧ ପାଉଥିବା ପିଲାଠାରୁ ଭିନ୍ନ ?

ଏସବୁ ଅସୁବିଧା ଦୃଷ୍ଟିରୁ ବହୁ ଗବେଷକ ବୁଦ୍ଧି ଅଙ୍କକୁ ସଂଜ୍ଞାକାଠି ରୂପେ ଗ୍ରହଣ ନ କରି ବ୍ୟକ୍ତିର ସାମାଜିକ ଦକ୍ଷତାକୁ ବିଚାରକୁ ନିଅନ୍ତି । ଏ ବିଚାରରେ ମାନସିକ ସ୍ୱଳ୍ପତାସମ୍ପନ୍ନ ବ୍ୟକ୍ତିମାନେ ଅକ୍ଷମ ବ୍ୟକ୍ତି ଏବଂ ସେମାନଙ୍କ ସାମାଜିକ କାର୍ଯ୍ୟ ଦକ୍ଷତା ଖୁବ୍ କମ୍ । ନିଜର ବୁଦ୍ଧି ପ୍ରୟୋଗ କରି ନିଜର ବା ସାମୁହିକ ସମସ୍ୟା ସମାଧାନ କରିବାରେ ଏମାନେ ଖୁବ୍ ଅପାରଗ । ବୁଦ୍ଧିଅଙ୍କ ପରିବର୍ତ୍ତେ ସାମାଜିକ ଦକ୍ଷତାକୁ ଭିତ୍ତି କରି ମାନସିକ ସ୍ୱଳ୍ପତାକୁ ବିଚାର କଲେ ଦେଖାଯାଏ ଯେ ଅପେକ୍ଷାକୃତ କମ୍ ସଂଖ୍ୟକ ଲୋକ ମାନସିକ ସ୍ୱଳ୍ପତାଗ୍ରସ୍ତ । ଖୁବ୍ କମ୍ ବୁଦ୍ଧିଅଙ୍କ ଥାଇ ମଧ୍ୟ ଜଣେ ବ୍ୟକ୍ତି ନିଜର ରକ୍ଷଣା-ବେକ୍ଷଣର ଦାୟିତ୍ୱ ନେଇ ପାରୁଥିଲେ ଏବଂ ନିଜର ଆବଶ୍ୟକତା ପରିପୂରଣ କରି ପାରୁଥିଲେ ତାଙ୍କୁ ମାନସିକ ସ୍ୱଳ୍ପତାସମ୍ପନ୍ନ ବୋଲି ଧରାଯାଏ ନାହିଁ । ଏପରି ବ୍ୟକ୍ତି ତାର ସାମାଜିକ ପରିବେଶରେ ଅନ୍ୟମାନଙ୍କ ପାଇଁ ସମସ୍ୟା ସୃଷ୍ଟି କରି ନ ଥାଏ ଏବଂ ନିଜେ ଆତ୍ମନିର୍ଭର-

ଶୀଳ ହେବା ପାଇଁ ଉଦ୍ୟମ କରେ । ତେଣୁ କେତେକଙ୍କ ମତରେ ମାନସିକ ସ୍ୱଳ୍ପତାକୁ ବିଗ୍ଭର କଲାବେଳେ ସମାଜିକ ଦକ୍ଷତାକୁ ନିର୍ଦ୍ଧାରକ ରୂପେ ଗ୍ରହଣ କରିବା ଉଚିତ । ତେବେ ଏ ପନ୍ଥାର କେତେକ ବ୍ୟତିକ୍ରମ ରହିଛି । ଅପରାଧୀ ଓ ମାନସିକ ବ୍ୟାଧି ଗ୍ରସ୍ତ ବ୍ୟକ୍ତିମାନେ ସାମାଜିକ କ୍ଷେତ୍ରରେ ଅପାରଗ । କିନ୍ତୁ ସେମାନଙ୍କୁ ମାନସିକ ସ୍ୱଳ୍ପତାପ୍ରାପ୍ତ ବୋଲି ବିଗ୍ଭର କରାଯାଏ ନାହିଁ । ଏ ସବୁ ଦୃଷ୍ଟିରୁ ମାନସିକ ସ୍ୱଳ୍ପତାକୁ ଖୁବ୍ କମ୍ ବୁଦ୍ଧି ଅଙ୍କ ଦ୍ୱାରା ସୂଚିତ କରାଯାଉଥିଲେ ମଧ୍ୟ ସାମାଜିକ ଅକ୍ଷମତାକୁ ବିଗ୍ଭରକୁ ନିଆଯାଏ ।

ମାନସିକ ସ୍ୱଳ୍ପତାକୁ କମ୍ ବୁଦ୍ଧିଅଙ୍କ ଦ୍ୱାରା ସୂଚିତ କରାଯାଉଥିଲେ ମଧ୍ୟ ଭାବିବା ଠିକ୍ ନୁହେଁ ଯେ, ମାନସିକ ସ୍ୱଳ୍ପତା ନୁହେଁ କେବଳ କମ୍ ବୁଦ୍ଧିର ଫଳ । ବୁଦ୍ଧିମାନ୍ ବ୍ୟକ୍ତିର ସବୁପ୍ରକାର ବ୍ୟବହାର କେବଳ ବୁଦ୍ଧିଦ୍ୱାରା ନିର୍ଦ୍ଧାରିତ ହୋଇ ନ ଥାଏ । ସେହିପରି ମାନସିକ ସ୍ୱଳ୍ପତାପ୍ରାପ୍ତ ବ୍ୟକ୍ତିର ବ୍ୟବହାର ଓ କାର୍ଯ୍ୟକଳାପ କେବଳ ତାର ବୁଦ୍ଧିଦ୍ୱାରା ନିୟନ୍ତ୍ରିତ ନ ହୋଇ ତାର ଲକ୍ଷ୍ୟ, ଇଚ୍ଛା ଓ ଅନ୍ୟାନ୍ୟ ପରିବେଶଗତ ଉପାଦାନ ଦ୍ୱାରା ଗ୍ଭଳିତ ହୁଏ । ଏହି ଦୃଷ୍ଟିରୁ ମାନସିକ ସ୍ୱଳ୍ପତାପ୍ରାପ୍ତ ବ୍ୟକ୍ତିମାନେ ବୁଦ୍ଧିମାନ ବ୍ୟକ୍ତିପରି ଖୁବ୍ ଜଟିଳ । କିନ୍ତୁ ଏପରି ମାନସିକ ସ୍ୱଳ୍ପତା ଥିଲେ ଏମାନଙ୍କ ବ୍ୟବହାର ପରିସ୍ଥିତି ସହିତ ସମନ୍ୱୟ ରକ୍ଷା କରିପାରେ ନାହିଁ । ଏମାନଙ୍କର ଖାପ ଖୁଆଇବା ପ୍ରଣାଳୀ ସାଧାରଣ ବୁଦ୍ଧିସମ୍ପନ୍ନ ବ୍ୟକ୍ତିମାନଙ୍କ ଖାପ ଖୁଆଇବା ଧାରା ଠାରୁ ପୃଥକ୍ । ଏମାନଙ୍କର ଖାପଖୁଆଇବା ପ୍ରଣାଳୀ ତ୍ରୁଟିପୂର୍ଣ୍ଣ ।

## ସ୍ୱଳ୍ପତାର କାରଣ—

ଏହି ତ୍ରୁଟିପୂର୍ଣ୍ଣ ପ୍ରଣାଳୀର ବହୁ କାରଣ ରହିଛି । ବ୍ୟକ୍ତିର ବୁଦ୍ଧିଅଙ୍କ ସେ କାରଣ ଗୁଡ଼ିକର ଉତ୍ସ ଓ ପ୍ରକୃତି ସମ୍ପର୍କରେ କୌଣସି ଆଲୋକପାତ କରେନାହିଁ । ପ୍ରକୃତରେ ମାନସିକ ସ୍ୱଳ୍ପତାର ପ୍ରାୟ ୧୫୦ କାରଣ ରହିଛି । ଏ କାରଣଗୁଡ଼ିକ ଦୃଷ୍ଟିରେ ରଖି ମାନସିକ ସ୍ୱଳ୍ପତାକୁ ଦୁଇଶ୍ରେଣୀରେ ବିଭକ୍ତ କରାଯାଇପାରେ । ପ୍ରଥମ ଶ୍ରେଣୀର ମାନସିକ ସ୍ୱଳ୍ପତାରେ କିଛିନା କିଛି ଜୈବିକ ଓ ଶାରୀରିକ ନିୟମହୀନତା ଥାଏ । ବଂଶଗତ ନିୟମହୀନତା, ମସ୍ତିଷ୍କରେ ଆଘାତ ଲାଗିବା, ବିଷାକ୍ତ ଦ୍ରବ୍ୟ ସଂସ୍ପର୍ଶରେ ଆସିବା ଓ ଜନ୍ମ ପୂର୍ବରୁ ତେଜସ୍କ୍ରିୟତାର ଶିକାର ହେବା ପ୍ରଭୃତି ଦ୍ୱାରା ସୃଷ୍ଟ ଶାରୀରିକ ଅସୁବିଧା ଦ୍ୱାରା ଏ ଶ୍ରେଣୀରେ ମାନସିକ ସ୍ୱଳ୍ପତା ସୃଷ୍ଟି ହୋଇଥାଏ । ଦ୍ୱିତୀୟ ଶ୍ରେଣୀର ମାନସିକ ସ୍ୱଳ୍ପତାଟି କୌଣସି ଶାରୀରିକ ନିୟମହୀନତା ନ ଥାଇ ମଧ୍ୟ ଦେଖା ଦେଇଥାଏ । ଏଗୁଡ଼ିକୁ ସାଂସ୍କୃତିକ ପାରିବାରିକ ନିୟମହୀନତା ଆଖ୍ୟା ଦିଆଯାଇ ପାରେ । ବିଭିନ୍ନ ପ୍ରକାର ମାନସିକ ସ୍ୱଳ୍ପତାର ପ୍ରାୟ ଶତକଡ଼ା ୭୫ଭାଗ ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଭୁକ୍ତ । କୌଣସି ମାନସିକ ସ୍ୱଳ୍ପତାର ରୋଗ ନିର୍ଣ୍ଣୟ ସମୟରେ ପରୀକ୍ଷା ନିରୀକ୍ଷା ସତ୍ତ୍ୱେ କୌଣସି ଶାରୀରିକ ପ୍ରକ୍ରିୟାର ଦୋଷତ୍ରୁଟି ନ ବାହାରିଲେ ତାକୁ ସାଂସ୍କୃତିକ-ପାରିବାରିକ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଏ ।

କେତେକ ସ୍ଥଳରେ ଏଇ ଦ୍ୱିତୀୟ ଶ୍ରେଣୀର ସ୍ୱଳ୍ପତା ବ୍ୟକ୍ତିର ବାପ ମା, ଭାଇ-ଭଉଣୀ ବା ଅନ୍ୟାନ୍ୟ ଆତ୍ମୀୟସ୍ୱଜନମାନଙ୍କ ଠାରେ ଦେଖାଯାଇ ଥାଏ ।

ପ୍ରଥମଶ୍ରେଣୀର ମାନସିକ ସ୍ୱଳ୍ପତା ମଧ୍ୟରେ ଡାଉନ ଲକ୍ଷଣ (Down Syndreme) PKU ଓ ବାମନତ୍ୱ ହେଉଛି ମୁଖ୍ୟ ସ୍ୱଳ୍ପତା । ଏଗୁଡ଼ିକ ସମ୍ପର୍କରେ ସଂକ୍ଷେପରେ ଆଲୋଚନା କରାଯାଇ ପାରେ ।

ଡାଉନ ଲକ୍ଷଣ—

ଶାରୀରିକ ଗଠନର କେତେକ ତ୍ରୁଟି ଲକ୍ଷ୍ୟ କରି ପ୍ରଥମେ ଏ ରୋଗର ନିର୍ଣ୍ଣୟ କରାଯାଏ । ଏପରି ରୋଗଗ୍ରସ୍ତ ପିଲାର ମୁଣ୍ଡଟି ସାଧାରଣତଃ ଛୋଟ ଓ ଗୋଲାକାର । ଆଖିଗୁଡ଼ିକ ଉପରକୁ ଓ ବାହାରକୁ ବଙ୍କା ହୋଇ ଉଠିଯାଇ ଥାଏ । ମୁହଁଟି ଛୋଟ ଓ କୋଣ ଦୁଇଟି ଭିତରକୁ ପଶିଯାଇଥାଏ, ଜିଭ ବାହାରକୁ ବାହାରି ଆସିଥାଏ । ଡାଉନ ଲକ୍ଷଣଯୁକ୍ତ ପିଲାମାନଙ୍କର ବୁଦ୍ଧିରେ ତାରତମ୍ୟ ଦେଖାଯାଏ । ଅଧିକାଂଶଙ୍କର ବୁଦ୍ଧିସ୍ତର ଖୁବ୍ କମ୍ । ଏ ପ୍ରକାର ମାନସିକ ସ୍ୱଳ୍ପତା ପ୍ରଥମେ ବ୍ରିଟିଶ ଚିକିତ୍ସକ ଲାଙ୍ଗଡନ୍ ଡାଉନ ବର୍ଣ୍ଣନା କରିଥିଲେ । ତେଣୁ ଏହାକୁ ଡାଉନ ଲକ୍ଷଣ କୁହାଯାଏ । ଶାରୀରିକ ଗଠନ ଅନେକାଂଶରେ ମଙ୍ଗୋଲୀୟ (ଚୀନ, ଜାପାନ, ପ୍ରଭୃତି ଦେଶର ଲୋକ) ଲୋକଙ୍କ ପରି ହୋଇଥିବାରୁ ପୂର୍ବରୁ ଏହାକୁ ମଙ୍ଗୋଲୀୟତ୍ୱ (Mongolism)ଏବଂ ଏପରି ସ୍ୱଳ୍ପତା ପ୍ରାପ୍ତ ପିଲାମାନଙ୍କୁ ମଙ୍ଗୋଲୀୟ (Mongoloid) କୁହାଯାଉଥିଲା । ୧୯୫୯ ପର୍ଯ୍ୟନ୍ତ ଏ ଲକ୍ଷଣର କାରଣ ଜଣାପଡ଼ି ନ ଥିଲା । ପରେ ଦେଖାଗଲା ଯେ ସାଧାରଣ ଲୋକଙ୍କର ୪୬ଟି କ୍ରୋମୋଜମ୍(Cromosome) ଥିବା ସ୍ଥଳେ ଏପରି ସ୍ୱଳ୍ପତାପ୍ରାପ୍ତ ବ୍ୟକ୍ତିର ୪୭ଟି କ୍ରୋମୋଜମ୍ ରହିଛି । କ୍ରୋମୋଜମ୍‌ରେ ଏପରି ନିୟମଗତ ବ୍ୟତିକ୍ରମ ଥିଲେ ମଧ୍ୟ ଏହା ଏକ ବଂଶାନୁଗତ ତ୍ରୁଟି ନୁହେଁ; କାରଣ ସାଧାରଣ ସ୍ୱାଭାବିକ ସ୍ତ୍ରୀଲୋକମାନେ ଡାଉନ୍ ଲକ୍ଷଣ ଯୁକ୍ତ ସନ୍ତାନ ଜନ୍ମ କରିପାରନ୍ତି ।

ଡାଉନ୍ ଲକ୍ଷଣର ଅନ୍ୟ ଏକ ବୈଶିଷ୍ଟ୍ୟରୁ ଆଉ ଗୋଟିଏ ସୂଚନା ମିଳିଥାଏ । ଡାଉନ୍ ଲକ୍ଷଣ କ୍ଷେତ୍ରରେ ସନ୍ତାନର ଜନ୍ମ ବେଳକୁ ମା'ର ବୟସ ଓ ଡାଉନ୍ ଲକ୍ଷଣ ପ୍ରକାଶ ପାଇବାର ସମ୍ଭାବନା ମଧ୍ୟରେ ଏକ ସମ୍ପର୍କ ଅଛି । ଡାଉନ୍ ଲକ୍ଷଣ ଯୁକ୍ତ ସନ୍ତାନ ଜନ୍ମ ହେବାର ସମ୍ଭାବନା ନିର୍ଭର କରେ—ଗର୍ଭାଣୁ (Ova) କେତେ ସମୟ ଧରି ନିସ୍ତାରିତ ହୋଇ ରହିଛି । ବଂଶ ବୟସ୍କା ମହିଳା ଅପେକ୍ଷା ଚାଳିଶୋର୍ଦ୍ଧ୍ୱ ବୟସ୍କା ଜନନୀର ଡାଉନ୍ ଲକ୍ଷଣଯୁକ୍ତ ସନ୍ତାନ ଜନ୍ମ ହେବାର ସମ୍ଭାବନା ବେଶୀ । ତାଛଡ଼ା ଗର୍ଭଧାରଣ ପୂର୍ବରୁ ପରିବେଶ ଗତ ଅସୁବିଧା (ତେଜଷ୍କ୍ରିୟତା, କୀଟାଣୁ ଓ ଅନ୍ୟାନ୍ୟ ରାସାୟନିକ ଜିନିଷର ପ୍ରଭାବ) କ୍ରୋମୋଜମ୍ ଉପରେ ପ୍ରଭାବ ବିସ୍ତାର କରି କ୍ଷତି ସାଧନ କରିପାରେ ।

PKU (Phenylketonuria) –

କେତେକ ଦ୍ରବ୍ୟକୁ ଶରୀରର ରାସାୟନିକ ପ୍ରକ୍ରିୟାରେ ବ୍ୟବହାର କରିବାର ତ୍ରୁଟି ଯୋଗୁ କେତେକପ୍ରକାର ମାନସିକ ସ୍ୱଳ୍ପତା ସୃଷ୍ଟି ହୁଏ । ଏଗୁଡ଼ିକ ସାଧାରଣତଃ ବଂଶାନୁଗତ ଏବଂ ବାପ ମା' ଠାରୁ ତ୍ରୁଟିପୂର୍ଣ୍ଣ ଜିନ୍ (Gene) ଗ୍ରହଣ କରି ସନ୍ତାନ ଅସୁବିଧାରେ ପଡ଼େ । ଏ ପ୍ରକାର ସ୍ୱଳ୍ପତା ମଧ୍ୟରେ PKU ସର୍ବାଧିକ ଜଣାଶୁଣା । ଅନେକ ଖାଦ୍ୟରେ ଥିବା ଏକ ରାସାୟନିକ ପଦାର୍ଥ Phynylanine କୁ ଠିକ୍ ଭାବରେ ଶରୀର ବ୍ୟବହାର କରି ନ ପାରିଲେ ଶରୀରରେ ଏହା ଜମା ହୋଇ Phynylpyruvic ଏସିଡ଼୍ ସୃଷ୍ଟି ହୁଏ । ଏହି ଏସିଡ୍ ଖୁବ୍ ବିପଜ୍ଜନକ ଓ ଶିଶୁର ବିକାଶମୁଖୀ କେନ୍ଦ୍ରୀୟ ସ୍ନାୟୁ ପ୍ରଣାଳୀ ଉପରେ କୁପ୍ରଭାବ ପକାଇ ଥାଏ । ଠିକ୍ ସମୟରେ ଚିକିତ୍ସା କରି ନ ହେଲେ ମାନସିକ ସ୍ୱଳ୍ପତା ସୃଷ୍ଟି ହୁଏ । ଏ କ୍ଷେତ୍ରରେ କାର୍ଯ୍ୟକଳାପର ଅସନ୍ତୁଳିତା, ଏକ ବିଚିତ୍ର ଠାଣିର ଚାଲି, ଶରୀରରୁ ଏକ ଅସ୍ୱାଭାବିକ ବାସ୍ନା ଓ କେତେକ ସ୍ଥଳରେ ମୂର୍ଚ୍ଛା ଲକ୍ଷଣ ଦେଖା ଦେଇଥାଏ ।

ଲକ୍ଷଣ ପ୍ରତ୍ୟକ୍ଷ ପ୍ରକାଶ ପାଇବା ପୂର୍ବରୁ PKU କୁ ନିର୍ଣ୍ଣୟ କରିବା ସମ୍ଭବ । ଶିଶୁର ମୂତ୍ରରେ Phynylpyruvic ଏସିଡ଼୍ ନିସୃତ ହୁଏ ଏବଂ ଏହାର ଗନ୍ଧର ବୈଶିଷ୍ଟ୍ୟ ତଥା ରାସାୟନିକ ପରୀକ୍ଷା ଦ୍ୱାରା ଏହା ଚିହ୍ନଟ କରାଯାଇ ପାରେ । ଏପରି ସ୍ୱଳ୍ପତା ଦେଖାଦେଲେ ସାଧାରଣ ଚିକିତ୍ସା ହେଉଛି ଲକ୍ଷଣଯୁକ୍ତ ପିଲାକୁ Phynylanine କମ ଥିବା ଖାଦ୍ୟ ସବୁ ଦେବା । ଏପରି ଚିକିତ୍ସାପ୍ରାପ୍ତ ପିଲା ବୌଦ୍ଧିକ ବିକାଶ କ୍ଷେତ୍ରରେ ସାଧାରଣ ପିଲାର ସମକକ୍ଷ ନ ହୋଇ ପାରିଲେ ମଧ୍ୟ ଚିକିତ୍ସାର ସୁପ୍ରଭାବ ବହୁ ଅଂଶରେ ପରିଲକ୍ଷିତ ହୋଇଥାଏ ।

ବାମନତ୍ୱ ଆଉ ଏକ ମୁଖ୍ୟ ମାନସିକ ସ୍ୱଳ୍ପତା । ଶରୀରର ବାମନତ୍ୱ, ମୋଟାଚମ ଓ ଜିଭ ଏବଂ ବାହାରକୁ ବାହାରି ଆସିଥିବା ଜିଭ ଏହାର ଶାରୀରିକ ଲକ୍ଷଣ । ମନୁଷ୍ୟର ଥାଇରଏଡ଼ ଗ୍ରନ୍ଥି ନିସୃତ କରୁଥିବା ହରମୋନ୍ Thyroxine କୁ ଠିକ୍ ଭାବରେ ଶରୀର ବ୍ୟବହାର କରି ନ ପାରିଲେ କିମ୍ବା Thyroxine ଖୁବ୍ କମ୍ ପରିମାଣରେ ନିସୃତ ହେଲେ ଏ ପ୍ରକାର ସମସ୍ୟା ସୃଷ୍ଟି ହୁଏ । ସମସ୍ତ ସମୟରେ ଅନ୍ୟାନ୍ୟ କାରଣରେ ଶରୀର ଏ ହରମୋନ୍‌ରୁ ବଞ୍ଚିତ ହେଲେ ଏପରି ଘଟିପାରେ । ଥାଇରଏଡ୍ ଗ୍ରନ୍ଥି ଶରୀରରେ ପୂରାପୂରି ନ ଥିଲେ କିମ୍ବା ଆଘାତପ୍ରାପ୍ତ ହେଲେ, ଗର୍ଭବତୀ ଥିଲାବେଳେ ମା'ର ଖାଦ୍ୟରେ ଆୟୋଡ଼ିନ୍‌ର ଅଭାବ ଘଟିଲେ କିମ୍ବା ଜନ୍ମର ପରେ ଶିଶୁର ଖାଦ୍ୟରେ ଆୟୋଡ଼ିନ୍‌ର ଅଭାବ ହେଲେ ଶରୀର ଏ ପ୍ରକାର ହରମୋନରୁ ବଞ୍ଚିତ ହୋଇପାରେ । ଏପରି ଲକ୍ଷଣଯୁକ୍ତ ପିଲାପାଇଁ ଥାଇରଏଡ୍ ହରମୋନର ଚିକିତ୍ସା ପ୍ରଧାନ ଉପାୟ ।

ଉପରୋକ୍ତ ବର୍ଣ୍ଣିତ ତିନୋଟି ପ୍ରକାର ମାନସିକ ସ୍ୱଳ୍ପତା ସମେତ ଅନ୍ୟାନ୍ୟ ଜୈବିକ ନିସ୍ୱମହୀନତା ସଂଶ୍ଳିଷ୍ଟ ସ୍ୱଳ୍ପତା କ୍ଷେତ୍ରରେ ପରିବେଶର ମଧ୍ୟ ଭୂମିକା ରହିଛି ।

ଶିଶୁ ଗର୍ଭରେ ଥିଲା ବେଳେ ବା ଜନ୍ମର ଠିକ୍ ପରେ ପରେ ଘଟୁଥିବା କେତେକ କ୍ଷତିକର ଘଟଣା ମାନସିକ ସ୍ୱଳ୍ପତା ସୃଷ୍ଟିରେ ଭାଗ ନିଏ । ମା'ର ପୁଷ୍ଟିକର ଖାଦ୍ୟାଭାବ, କ୍ଷତିକର ଔଷଧ ବା ବିଷାକ୍ତ ଦ୍ରବ୍ୟ ସେବନ ବିଭିନ୍ନ ସ୍ତ୍ରୀ ରୋଗ ମାନସିକ ସ୍ୱଳ୍ପତା ସୃଷ୍ଟି କରିପାରେ । ତାଛଡ଼ା ଜନ୍ମକାଳୀନ କ୍ଷତବିକ୍ଷତ ତଥା ମସ୍ତିଷ୍କରେ ଦାରୁଣ ଆଘାତ ଲାଗିଲେ ବିଭିନ୍ନ ଲକ୍ଷଣ ଦେଖାଦେଇଥାଏ । କେତେବେଳେ ମୁଣ୍ଡଟି ଅସ୍ୱାଭାବିକ ଭାବେ ବଡ଼ ହୋଇଥାଏ । ଅନ୍ୟ ସମୟରେ ଖପୁରୀ (Skull) ରେ ଏକ ପ୍ରକାର ଜଳୀୟ ଅଂଶ ଜମି ଏହାର ଆକାର ବଡ଼ ହୋଇ ପାରେ । ଅନେକ ସମୟରେ ମୁଣ୍ଡଟି ଅସ୍ୱାଭାବିକ ଭାବେ ଖୁବ୍ ଛୋଟ ହୋଇପାରେ ।

ଅନ୍ୟପକ୍ଷରେ ସାଂସ୍କୃତିକ,ପାରିବାରିକ ନିମ୍ନମାନତା ପ୍ରସୂତ ମାନସିକ ସ୍ୱଳ୍ପତାର ଅନୁଶୀଳନ ଅପେକ୍ଷାକୃତ କଷ୍ଟସାଧ୍ୟ । ପରିବେଶ ଏବଂ ବଂଶାନୁକ୍ରମିକତାର ପାରସ୍ପରିକ କ୍ରିୟା ଫଳରେ ଏ ପ୍ରକାର ସ୍ୱଳ୍ପତା ସୃଷ୍ଟି ହୋଇଥାଏ । କିନ୍ତୁ ପାରିବାରିକ ଓ ସାଂସ୍କୃତିକ ଜୀବନର କେଉଁ କେଉଁ ଉପାଦାନ ଏପରି ମାନସିକ ସ୍ୱଳ୍ପତା ସୃଷ୍ଟି କରେ ,ସେ ସମ୍ପର୍କରେ ସଠିକ ଭାବେ କିଛି କହିବା କଷ୍ଟକର । ଏବେସୁଦ୍ଧା ଗବେଷକମାନେ ଏ ଶ୍ରେଣୀର ମାନସିକ ସ୍ୱଳ୍ପତାର କାରଣ ସମ୍ପର୍କରେ ଗଭୀର ଅନୁଧ୍ୟାନ କରୁଛନ୍ତି । ତେବେ ଏ ଶ୍ରେଣୀର ମାନସିକ ସ୍ୱଳ୍ପତା କ୍ଷେତ୍ରରେ ଲକ୍ଷ୍ୟ କରାଯାଇ ଥାଏ ଯେ ଏ ଶ୍ରେଣୀର ସ୍ୱଳ୍ପତାପ୍ରାପ୍ତ ବ୍ୟକ୍ତିଙ୍କ ବୁଦ୍ଧିମତା ଜୈବିକ କାରଣରୁ ସ୍ୱଳ୍ପତାପ୍ରାପ୍ତ ବ୍ୟକ୍ତିଙ୍କ ବୁଦ୍ଧିଠାରୁ ବେଶୀ । ଅନେକ କ୍ଷେତ୍ରରେ ଉପଯୁକ୍ତ ଶିକ୍ଷା ଓ ତାଲିମ ଦେଇ କେତେକାଂଶରେ ସେମାନଙ୍କୁ ଆତ୍ମନିର୍ଭରଶୀଳ କରାଯାଇ ପାରେ ।

## ଶିକ୍ଷାଦୀକ୍ଷା ବ୍ୟବସ୍ଥା

ବହୁବର୍ଷ ଧରି ମାନସିକ ସ୍ୱଳ୍ପତାସମ୍ପନ୍ନ ବ୍ୟକ୍ତିମାନଙ୍କର ଶିକ୍ଷାଦୀକ୍ଷା ଓ ପୁନର୍ବସତି ଦିଗରେ ଅବହେଳା ପ୍ରଦର୍ଶନ କରାଯାଇଛି । ଏପରି ବ୍ୟକ୍ତିମାନଙ୍କୁ ନୈତିକତା ହୀନ ଓ ଅଧଃପତିତ ବିଚାର କରାଯାଇ ସେମାନଙ୍କ ପ୍ରତି କଠୋର ମନୋଭାବ ପୋଷଣ କରାଯାଉଛି । କେତେକ ସ୍ଥଳରେ ସେମାନଙ୍କୁ ବାସନ୍ଦ କରିବା ଓ ସେମାନଙ୍କୁ ପ୍ରଜନନ ଶକ୍ତି ବିହୀନ କରିବା ପାଇଁ ଉଦ୍ୟମ ହୋଇଛି । ସୌଭାଗ୍ୟର କଥା ଯେ ଚଳିତ ଶତକର ଦ୍ୱିତୀୟ ଭାଗରେ ସେମାନଙ୍କ ପ୍ରତି ଉଦାରନୀତି ପୋଷଣ କରିବାର ସୂଚନା ଦେଖାଦେଇଛି । ମାନସିକ ସ୍ୱଳ୍ପତାସମ୍ପନ୍ନ ବ୍ୟକ୍ତି ଯେ ସମାଜର ଦୁଷ୍ଟବ୍ରଣ ନୁହେଁ ଏବଂ ତାର ଶିକ୍ଷାଦୀକ୍ଷା ଦିଗରେ ସମାଜର ଯେ ଏକ ଦାୟିତ୍ୱ ରହିଛି, ଏ ଚେତନା କ୍ରମଶଃ ଦୃଢ଼ୀଭୂତ ହେଉଛି । ଏବେ ଉନ୍ନତ ଦେଶମାନଙ୍କର ବିଦ୍ୟାଳୟରେ ଏମାନଙ୍କ ପାଇଁ ସ୍ୱତନ୍ତ୍ର ଶ୍ରେଣୀ ଗଠନ କରି ତାଲିମ ଗ୍ରହଣକ୍ଷମ ପିଲାମାନଙ୍କୁ ଉପଯୋଗୀ ଶିକ୍ଷା ଦିଆଯାଉଛି । ଆତ୍ମରକ୍ଷାର କୌଶଳ, ସମାଜରେ ଖାପ ଖୁଆଇବାରପନ୍ଥା, ଗଣିବା ଓ ମୂଳ ଅକ୍ଷର ଗୁଡ଼ିକ ଚିହ୍ନିବା

ପରି ମୌଳିକ ବ୍ୟାବହାରିକ ଦକ୍ଷତା ଶିକ୍ଷା ଦିଆଯାଉଛି । ଶିକ୍ଷାକ୍ଷମ ମାନସିକ ସ୍ୱଳ୍ପତା-ସମ୍ପନ୍ନ ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ ଶିକ୍ଷାର ଲକ୍ଷ୍ୟ ସାଧାରଣ ଶିକ୍ଷାର ଆଭିମୁଖ୍ୟ ଠାରୁ ଭିନ୍ନ । ମାନସିକ ସ୍ୱଳ୍ପତା ସମ୍ପନ୍ନ ବ୍ୟକ୍ତିମାନଙ୍କୁ ବିଭିନ୍ନ କର୍ମାଭିମୁଖୀ ଓ ଧନ୍ଦାମୂଳକ ଶିକ୍ଷା ଦିଆଯିବାର ବ୍ୟବସ୍ଥା କରାଯାଏ । ଆହୁରି ଅଧିକ ଉନ୍ନତ ପରିଚାଳନାରେ ମାନସିକ ସ୍ୱଳ୍ପତା ସମ୍ପନ୍ନ ପିଲାମାନଙ୍କର ପିତାମାତା ଓ ଅଭିଭାବକମାନେ ସେମାନଙ୍କର ପିଲାମାନଙ୍କୁ ମୌଳିକ ଦକ୍ଷତା ଲାଭ କରିବାର ତାଲିମ ଦେଇ ପାରିବା ଭଳି ସ୍ୱତନ୍ତ୍ର ଧରଣର ପ୍ରଶିକ୍ଷା ଅଭିଭାବକମାନଙ୍କୁ ଦିଆଯାଏ ।

ଉପରୋକ୍ତ ବ୍ୟବସ୍ଥା ସତ୍ତ୍ୱେ ସବୁ କ୍ଷେତ୍ରରେ ପିଲାମାନଙ୍କୁ ତାଲିମ ଦେବା ସମ୍ଭବ ହୁଏନାହିଁ । ବିଶେଷତଃ ମାନସିକ ସ୍ୱଳ୍ପତାର ପରିମାଣ ଖୁବ୍ ଅଧିକ ହୋଇଥିଲେ ସେମାନେ ତାଲିମ୍ ଗ୍ରହଣ କରିବାକୁ ଅକ୍ଷମ ହୁଅନ୍ତି । ଏପରି ସ୍ଥଳେ ସେମାନଙ୍କୁ ଯତ୍ନକାରୀ ଅନୁଷ୍ଠାନ ମାନଙ୍କରେ ରହିବାକୁ ପଡ଼େ । ଅନୁଷ୍ଠାନ ଗୁଡ଼ିକର ପରିଚାଳନା ସମୃଦ୍ଧ ଦେଶମାନଙ୍କରେ ମଧ୍ୟ ବ୍ୟୟ ସାପେକ୍ଷ । ତଥାପି ସୁପରିଚାଳିତ ଅନୁଷ୍ଠାନ ଗୁଡ଼ିକରେ ପିଲା-ମାନଙ୍କର ବ୍ୟକ୍ତିଗତ ଓ ସାମାଜିକ ବିକାଶ ନିୟନ୍ତ୍ରିତ ହୋଇଥାଏ ।

ମାନସିକ ସ୍ୱଳ୍ପତା ସମ୍ପନ୍ନ ପିଲାମାନଙ୍କୁ ଉପଯୁକ୍ତ ଶିକ୍ଷାଦୀକ୍ଷା ଦେଲାବେଳେ ଗୋଟିଏ ଦିଗ ପ୍ରତି ବିଶେଷ ଦୃଷ୍ଟି ଦେବାକୁ ପଡ଼ିବ । ଏପରି ପିଲାମାନଙ୍କର ବ୍ୟକ୍ତିତ୍ୱର ଅନୁଶୀଳନ କରି ଦେଖାଯାଇଛି ଯେ ବ୍ୟକ୍ତିତ୍ୱର କେତୋଟି ଉପାଦାନ ଏମାନଙ୍କର ବୈଶିଷ୍ଟ୍ୟ । ଯେକୌଣସି କାର୍ଯ୍ୟରେ ବିଫଳ ହେବାର ଭୟ ଏମାନଙ୍କ ମଧ୍ୟରେ ତୀବ୍ର । ଏମାନଙ୍କର ଆକାଂକ୍ଷାର ସ୍ତର ମଧ୍ୟ ଖୁବ୍ କମ୍ । ଅପର ପକ୍ଷରେ ଏମାନେ ଅନୁକରଣ କରିବାକୁ ଭଲପାଆନ୍ତି ଏବଂ ଅନ୍ୟର ଦୃଷ୍ଟି ଓ ସାହଚର୍ଯ୍ୟ ଲାଭ କରିବାର ଆବଶ୍ୟକତା ଖୁବ୍ ବେଶୀ ଅନୁଭବ କରନ୍ତି । ଏ ସମସ୍ତ ବୈଶିଷ୍ଟ୍ୟ ସେମାନଙ୍କର ଜନ୍ମ ବୁଦ୍ଧିସ୍ତର ଯୋଗୁଁ ନୁହେଁ, ବରଂ ଏହା ସେମାନଙ୍କ ଜୀବନ କାଳର ବିଭିନ୍ନ ଅଭିଜ୍ଞତା ଓ ଅନୁଭୂତି ପ୍ରସୂତ । କାରଣ ଯାହାହେଉ ନା କାହିଁକି, ଏ ବୈଶିଷ୍ଟ୍ୟ ଗୁଡିକ ପ୍ରତି ଦୃଷ୍ଟି ରଖି ସେମାନଙ୍କର ଶିକ୍ଷା ଓ ତାଲିମ ଯୋଜନା କାର୍ଯ୍ୟକାରୀ କଲେ ସେମାନଙ୍କର ସାଧାରଣ ସାମାଜିକ ଦକ୍ଷତା ଅଭିବୃଦ୍ଧିରେ ସହାୟକ ହୋଇଥାଏ । ତେଣୁ ଏପରି ଶିକ୍ଷା ଯୋଜନାରେ ତାଲିମ ସହିତ ବ୍ୟକ୍ତିତ୍ୱର ଏ ଦିଗ ଗୁଡ଼ିକୁ ସମନ୍ୱିତ କରିବାକୁ ପଡିଥାଏ ।

# ଅନ୍ତର୍ମୁଦ୍ରଣ

ସୃଜନଧର୍ମୀ ଚିନ୍ତାରାଜ୍ୟରେ ନୂତନ ଓ ପୁରାତନ ମଧ୍ୟରେ ସୀମାରେଖା ଖୁବ୍ ଦୁର୍ବଳ ଓ ଆପେକ୍ଷିକ । ଆଜିର ପ୍ରତିଷ୍ଠିତ ଧାରଣା ଆଗାମୀକାଲି ଅବହେଳିତ ହୋଇ ତଥ୍ୟ-ଯାଦୁଘରେ ସ୍ଥାନ ନେଇପାରେ । ସେହିପରି ଗତକାଲିର ପରିତ୍ୟକ୍ତ ଭାବଧାରା ଆଜି ଜନସମାଦୃତ ହୋଇ ପ୍ରଖ୍ୟାତି ଲାଭ କରିପାରେ । କୌଣସି ଚିନ୍ତାଧାରା ଯେତେ ଶକ୍ତିଶାଳୀ ହୋଇନା କାହିଁକି, ଐତିହାସିକ ସମୟର ପ୍ରତିକୂଳ ହେଲେ ଏହା ଅକାଳ ମୃତ୍ୟୁ ବରଣ କରେ । ଅନ୍ତର୍ମୁଦ୍ରଣ (Imprinting) ସମ୍ପର୍କୀୟ ବୈଜ୍ଞାନିକ ତଥ୍ୟ ଏହାର ଏକ ସୁସ୍ପଷ୍ଟ ଅଭିବ୍ୟକ୍ତି ।

ବିଂଶ ଶତକର ପ୍ରାରମ୍ଭରେ ମ୍ୟାକ୍‌ଡୁଗାଲ ପ୍ରବୃତ୍ତି-ତଥ୍ୟ ପ୍ରଖ୍ୟାପନ କଲି ବେଳେ ତାଙ୍କୁ ଉପହସିତ ହେବାକୁ ପଡ଼ିଥିଲା । ଅବଶ୍ୟ ମ୍ୟାକ୍‌ଡୁଗାଲଙ୍କ ତଥ୍ୟରେ ଯେ ବ୍ୟସ୍ତ-ବହୁଳତା ନ ଥିଲା ସେକଥା ନୁହେଁ । ମନୁଷ୍ୟର ପ୍ରତ୍ୟେକ ବ୍ୟବହାରର କାରଣ ଦର୍ଶାଇବାକୁ ମ୍ୟାକ୍‌ଡୁଗାଲ 'ପ୍ରବୃତ୍ତି' ଶବ୍ଦଟି ବ୍ୟବହାର କରୁଥିଲେ । ମନୁଷ୍ୟ ହସିଲେ ତା' ତାହାର ହସିବା ପ୍ରବୃତ୍ତିରେ ଚାଳିତ, ମନୁଷ୍ୟ କାନ୍ଦିଲେ ତା' ତାହାର କାନ୍ଦିବା ପ୍ରବୃତ୍ତିରେ ନିୟନ୍ତ୍ରିତ; ମନୁଷ୍ୟ ଯାହାକିଛି କଲେ ସେଗୁଡ଼ିକ ପ୍ରବୃତ୍ତି ଚାଳିତ ବୋଲି କୁହାଗଲା । ସମସ୍ତ ବ୍ୟବହାର ଅନୁଶୀଳନ ପାଇଁ ପ୍ରବୃତ୍ତି ତଥ୍ୟର ପ୍ରୟୋଗ କରାଗଲା । ଅନ୍ୟପକ୍ଷରେ ପରିବେଷ୍ଟନୀର ପ୍ରଭାବ ଓ ବ୍ୟବହାର ଗଠନରେ ତାର ଭୂମିକା ସପକ୍ଷରେ ଯେଉଁସବୁ ତାତ୍ତ୍ୱିକ ଆଲୋଚନା ସେ ସମୟର ଚିନ୍ତାଧାରା ସୃଷ୍ଟି କରିଥିଲା, ତାର ପ୍ରତିକୂଳରେ ମ୍ୟାକ୍‌ଡୁଗାଲଙ୍କ ପ୍ରବୃତ୍ତିତଥ୍ୟ ତିଷ୍ଠି ରହି ପାରିଲା ନାହିଁ । ଏହା ସହିତ ପ୍ରବୃତ୍ତି ତଥ୍ୟରେ ପରିକଳ୍ପିତ ଜନ୍ମ ଯୋଜନା (Genetic Programming)ର ଗୁରୁତ୍ୱ ମଧ୍ୟ ଲୋପ ହେଲା । କିନ୍ତୁ ଅଳ୍ପ କିଛି ବର୍ଷ ପୂର୍ବରୁ ଅନ୍ତର୍ମୁଦ୍ରଣ (Imprinting) ସମ୍ପର୍କରେ ଯେଉଁ ଉତ୍ସାହ ଓ ସମ୍ଭାବନା ଦେଖା ଦେଇଛି, ତାହା ପୂର୍ବ ଅବହେଳିତ ଜନ୍ମ ଯୋଜନା (Genetic Programming)ର ପୁନରୁତ୍‌ଥାନ ।

ନୋବେଲ ପୁରସ୍କାର ଇତିହାସରେ ୧୯୭୩ ମସିହାଟି ବେଶ୍ ସ୍ମରଣୀୟ । ଚିକିତ୍ସା ବିଜ୍ଞାନରେ ଏହି ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ବୈଜ୍ଞାନିକମାନଙ୍କ ନାମ ଗୋଟିଏ ଦୃଷ୍ଟିରୁ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ଏମାନେ ହେଲେ କୋନ୍‌ରାଡ଼ ଲୋରେଞ୍ଜ, ନିକୋଲାସ୍ ଟିନ୍‌ବରଗନ୍ ଓ କାଲଭନ୍ ଫ୍ରିସ୍ । ସେମାନେ ଆଚରଣ ବିଜ୍ଞାନ (Etho-

logy) ପରି ଏକ ନୂତନ ବିଜ୍ଞାନର ପ୍ରତିଷ୍ଠାତା ରୂପେ ସମ୍ମାନିତ । ପ୍ରାଣୀର ବ୍ୟବହାର ଅନୁଶୀଳନ କଲି ଭଳି ମୌଳିକ ଗବେଷଣା ଲାଗି ଏପରି ପୁରସ୍କାର ପୂର୍ବରୁ କେବେ ଦିଆଯାଇ ନ ଥିଲା । ଏ ତିନି ଜଣ ବୈଜ୍ଞାନିକ ଜନ୍ମ ଯୋଜନାବଦ୍ଧ (genetically programmed) ବ୍ୟବହାର ସଙ୍ଗଠନ, ପରିପକ୍ୱତା ଓ ପରିପ୍ରକାଶ ଦର୍ଶାଇ ମନୁଷ୍ୟର ସ୍ୱାଭାବିକ ବିକାଶରେ ଏହାର ସମ୍ଭାବନା ସୂଚାଇ ଏ ପୁରସ୍କାର ପାଇଥିଲେ ।

ମାକ୍ସ ପ୍ଲାଙ୍କ୍ ଅନୁଷ୍ଠାନର ଲୋରେଂଜ୍ ପକ୍ଷୀମାନଙ୍କର ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟ-ପ୍ରଣାଳୀ ଆବିଷ୍କାର କରି ଏ ପୁରସ୍କାର ପାଇଥିଲେ । ପରୀକ୍ଷା କରି ସେ ଦେଖାଇଲେ ଯେ, କେତେକ କ୍ଷେତ୍ରରେ ପ୍ରାଣୀକୁ କୌଣସି ଶିକ୍ଷା ବା ତାଲିମର ସୁଯୋଗ ଦିଆ ନ ଗଲେ ମଧ୍ୟ ଉପଯୁକ୍ତ ଉଦ୍ଦୀପକ ମିଳିଲେ ପ୍ରାଣୀର ବ୍ୟବହାର ସୃଷ୍ଟି ହୁଏ । ଏପରି ସ୍ଥଳରେ ପ୍ରାଣୀର ବୟସ ଏକ ନିର୍ଦ୍ଦିଷ୍ଟ ପରିସରଭୁକ୍ତ ହେବା ଆବଶ୍ୟକ । ଅନ୍ୟ ଭାଷାରେ କହିଲେ ପ୍ରତ୍ୟେକ ବ୍ୟବହାର ପାଇଁ ଏକ ନିର୍ଦ୍ଦିଷ୍ଟ 'ଚରମକାଳ' ବା ସମୟରେଖା ଅଛି । ଏହି ଚରମକାଳ ମଧ୍ୟରେ ଉଦ୍ଦୀପକଟି ମିଳିଲେ ପ୍ରାଣୀ ସ୍ୱତଃ ପ୍ରତିକ୍ରିୟା ଦର୍ଶାଇଥାଏ । ଏଥିପାଇଁ କୌଣସି ତାଲିମ ବା ଶିକ୍ଷାଦାନର ଆବଶ୍ୟକତା ପଡ଼ିବ ନାହିଁ । ମାନବ ଜଗତରେ ଏପରି ଚରମ କାଳର ସମ୍ଭାବନା ଲୋରେଂଜ୍‌ଙ୍କୁ ଅଧିକ ସମ୍ମାନିତ କରିଥିଲା ।

ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ଟିନ୍‌ବର୍‌ଜେନ୍ ଷ୍ଟିକଲବ୍ୟାକ୍ ମତ୍ସ୍ୟର ବ୍ୟବହାର ଅନୁଶୀଳନ ପାଇଁ ପ୍ରଖ୍ୟାତି ଲାଭ କଲେ । ସେ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ କରି ଦେଖିଲେ ଯେ ଷ୍ଟିକ୍‌ଲବ୍ୟାକ୍‌ର ପ୍ରେମାନୁଧାବନ ଏକ ନିର୍ଦ୍ଦିଷ୍ଟ ସ୍ତରବିଶିଷ୍ଟ । ପ୍ରଥମେ ଷ୍ଟିକ୍‌ଲବ୍ୟାକ୍ ମତ୍ସ୍ୟ ଏକ ଚତୁଃପାର୍ଶ୍ୱ ଗଠନ କରେ ଏବଂ ଅନୁପ୍ରବେଶକାରୀର ଆକ୍ରମଣରୁ ଏହାକୁ ରକ୍ଷା କରେ । ଦ୍ୱିତୀୟ ସ୍ତରରେ ସେ ଏକ ସ୍ୱତନ୍ତ୍ର ଧରଣର ବସା ନିର୍ମାଣରେ ଆତ୍ମନିୟୋଗ କରେ । ଏ ସମୟରେ ମତ୍ସ୍ୟର ବର୍ଣ୍ଣ ପରିବର୍ତ୍ତିତ ହୁଏ । ତାହାର ନିମ୍ନ ଅଂଶ ଲାଲବର୍ଣ୍ଣ ଧାରଣ କରେ । ସ୍ତ୍ରୀ ଷ୍ଟିକ୍‌ଲବ୍ୟାକ୍ ମତ୍ସ୍ୟ ତା'ର ଚତୁଃସୀମା ମଧ୍ୟକୁ ଆସିଲେ ସେ ପ୍ରେମାତ୍ମକ ଗତିରେ ସ୍ତ୍ରୀ ମତ୍ସ୍ୟ ନିକଟକୁ ଯାଏ ଓ ତାକୁ ଚତୁଃସୀମା ମଧ୍ୟକୁ ଆସିବାକୁ ପ୍ରଲୋଭନ ଦେଖାଏ । ସ୍ତ୍ରୀ ମତ୍ସ୍ୟଟି ଚତୁଃସୀମାରେ ପ୍ରବେଶ କରେ ଓ ସେଠାରେ ପ୍ରଜନନ କାର୍ଯ୍ୟରେ ଅଂଶ ଗ୍ରହଣ କରେ । ଏ ପଦ୍ଧତିରେ କେତେକ ସ୍ତ୍ରୀ ମତ୍ସ୍ୟ ସହ ପୁରୁଷ ଷ୍ଟିକ୍‌ଲବ୍ୟାକ୍‌ର ରତିକ୍ରୀଡ଼ା ସଙ୍ଘଟିତ ହୁଏ । ଅବଶ୍ୟ ଏକ ସମୟରେ ପ୍ରଜନନ ଆବେଗ ପ୍ରଶମିତ ହୁଏ; ଏବଂ ତା'ର ପୂର୍ଣ୍ଣ ଗଭୀରତା ମଧ୍ୟ କମିଯାଏ । ଶେଷ ସ୍ତରରେ ଜନ୍ମଲାଭ କରିଥିବା ମତ୍ସ୍ୟଗୁଡ଼ିକ ବଡ଼ ହେବା ପର୍ଯ୍ୟନ୍ତ ପୁରୁଷ ଷ୍ଟିକ୍‌ଲବ୍ୟାକ୍ ସେମାନଙ୍କର ରକ୍ଷଣାବେକ୍ଷଣ ଦାୟିତ୍ୱ ସମ୍ପନ୍ନ କରେ । ମୂଳତଃ ବାହ୍ୟିକ କୌଣସି ଶିକ୍ଷାଦାନ ବା ତାଲିମର ଚିହ୍ନ ନ ଥିଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଢାଞ୍ଚାରେ ଏସବୁ କାର୍ଯ୍ୟ ହୋଇ ଯାଇଥାଏ ।

ମ୍ୟୁନିକ୍ ବିଶ୍ୱବିଦ୍ୟାଳୟର ଫ୍ରିଂସ୍ ମହୁମାଛିମାନଙ୍କ ବ୍ୟବହାର ଅନୁଧ୍ୟାନ କଲେ । ସେ ଲକ୍ଷ୍ୟ କଲେ ଯେ ମହୁମାଛିମାନେ ଅନ୍ୟ ମହୁମାଛିଙ୍କୁ ମହୁ ସମ୍ପର୍କରେ ଖବର ଦେବା ପାଇଁ ଏକ ପ୍ରକାର "ନୃତ୍ୟଶୀଳ ଭାଷା" ବ୍ୟବହାର କରନ୍ତି । ଗୋଟିଏ ମହୁମାଛି ମହୁର ସନ୍ଧାନ ପାଇଲେ ଏକ ନୃତ୍ୟଭଙ୍ଗୀ ମାଧ୍ୟମରେ ଅନ୍ୟ ମହୁମାଛିମାନଙ୍କୁ ଇଙ୍ଗିତ ଦିଏ । ଖାଦ୍ୟସ୍ଥାନରୁ ମହୁଫେଣାର ଦୂରତ୍ୱ ଉପରେ ନିର୍ଭର କରି ଏହି ନୃତ୍ୟର ଢାଞ୍ଚା ଓ ଗମ୍ଭୀରତା ଭିନ୍ନ ହୁଏ । ଅନ୍ୟ ମହୁମାଛିମାନେ ଏହି ନୃତ୍ୟ ସଙ୍କେତରୁ ଖାଦ୍ୟ ସ୍ଥାନର ଦୂରତ୍ୱ ଜାଣନ୍ତି ଏବଂ ସେମାନଙ୍କର ଖାଦ୍ୟଲାଭ ଯୋଜନା ସ୍ଥିର କରନ୍ତି ।

ଗତ ତ୍ରିଶ ବର୍ଷ ମଧ୍ୟରେ ଆଚରଣବିଜ୍ଞାନୀମାନେ, ପ୍ରେମାତ୍ମକ ବ୍ୟବହାର, ବସାନିର୍ମାଣ ଓ ଚତୁଃସୀମା ସୁରକ୍ଷା ପ୍ରଭୃତିର ସୂକ୍ଷ୍ମାତିସୂକ୍ଷ୍ମ ବର୍ଣ୍ଣନା ଦେଇ ବୈଜ୍ଞାନିକ ଚିନ୍ତା ରାଜ୍ୟକୁ ସମୃଦ୍ଧ କରିଛନ୍ତି । ଉପରୋକ୍ତ ଲୋରେଂଜ, ଟିନ୍‌ବର୍‌ଜନ, ଫ୍ରିଂସ୍‌ଙ୍କ ବିଶ୍ୱ-ସମ୍ମାନିତ କାର୍ଯ୍ୟର ମୌଳିକ ବୈଶିଷ୍ଟ୍ୟ ହେଉଛି ଏକ ପୂର୍ବ ଯୋଜନାବଦ୍ଧ ବ୍ୟବହାରର ଗୁରୁତ୍ୱ । ବିଶେଷତଃ ଲୋରେଂଜଙ୍କ ପର୍ଯ୍ୟବେକ୍ଷଣରେ ଯେଉଁ ସୂତ୍ର ମିଳୁଛି, ତାହା ମନୁଷ୍ୟ ବ୍ୟବହାର କ୍ଷେତ୍ରରେ ଏକ ନୂତନ ସମ୍ଭାବନାର ପରିଚାୟକ ।

ଲୋରେଂଜ ଅନ୍ତର୍ମୁଦ୍ରଣର ଏକ ଶୃଙ୍ଖଳାବଦ୍ଧ ପରୀକ୍ଷା କରି ଆନ୍ତର୍ଜାତିକ ଖ୍ୟାତି ଲାଭ କରିଥିଲେ ମଧ୍ୟ ତାଙ୍କ ପୂର୍ବରୁ ଯେ ଅନ୍ତର୍ମୁଦ୍ରଣର ପର୍ଯ୍ୟବେକ୍ଷଣ ହୋଇ ନ ଥିଲା ସେ କଥା ନୁହେଁ । ଊନବିଂଶ ଶତକର ଶେଷଭାଗରେ ସ୍ପାଲ୍‌ଡିଂ ଅନ୍ତର୍ମୁଦ୍ରଣର ସୂଚନା ଦେଇଥିଲେ । ସେ ଦେଖିଲେ ଯେ ଅଧିପାଳକ (Incubator)ରେ ଜନ୍ମଲାଭ କରିବା ପରେ କୁକୁଡ଼ା ଛୁଆଗୁଡିକ ଯେ କୌଣସି ଗତିଶୀଳ ବସ୍ତୁର ଅନୁଧାବନ କରୁଛନ୍ତି । ସେମାନେ ଜନ୍ମର ପରେ ପରେ ବତକ କିମ୍ବା ମନୁଷ୍ୟ ଯାହାକୁ ଦେଖୁଛନ୍ତି, ତାର ଅନୁଧାବନ କରୁଛନ୍ତି । ସ୍ପାଲ୍‌ଡିଂ ଲେଖିଛନ୍ତି ଯେ ଦିନେ ପୂର୍ବରୁ ଜନ୍ମଲାଭ କରିଥିବା ଗୋଟିଏ କୁକୁଡ଼ା ଛୁଆ ତାଙ୍କୁ ମାଇଲ ମାଇଲ ଅନୁଧାବନ କରିବାରୁ ଓ ତାଙ୍କର ଗତି ପ୍ରତି ଅନୁକୂଳ କିମ୍ବା ପ୍ରତିକୂଳ ରହିବାରୁ ନିକଟରେ ଥିବା ପଥିକମାନେ ଭାବିଲେ ଯେ ସ୍ପାଲ୍‌ଡିଂ କେବଳ କୁହୁକ ବଳରେ ଏ ସବୁ ସମ୍ଭବ କରିପାରୁଛନ୍ତି ।

ସ୍ପାଲ୍‌ଡିଂ ଆହୁରି ମଧ୍ୟ ଜାଣିଥିଲେ ଯେ ଅନ୍ତର୍ମୁଦ୍ରଣ ପାଇଁ କୁକୁଡ଼ା ଛୁଆର ଜୀବନକାଳ ମଧ୍ୟରେ ଏକ ଚରମକାଳ ବା ସମୟକାଳର ସମୟସୀମା ରହିଛି । ଯଦି ଅନୁଧାବନର ସୁଯୋଗ ସେହି ସମୟ ମଧ୍ୟରେ ଦିଆ ନ ଯାଇ ପରେ ଦିଆଯାଏ, ତେବେ କୁକୁଡ଼ା ଅନୁଧାବନ ନ ଦେଖାଇ ବରଂ ଭୟ ଦେଖାଇଥାଏ । ସ୍ପାଲ୍‌ଡିଂ ଥରେ ତିନୋଟି କୁକୁଡ଼ା ଛୁଆଙ୍କୁ ଜନ୍ମର ପରଠାରୁ ତିନିଦିନ ପର୍ଯ୍ୟନ୍ତ କିଛି ଦେଖିବାର ସୁଯୋଗ ନ ଦେଇ ଚତୁର୍ଥ ଦିନ ସେମାନଙ୍କୁ ବାହାରକୁ ଆଣିଲେ । ଦେଖାଗଲା ଯେ ପ୍ରତ୍ୟେକଟି ଛୁଆ ଭୀତ-ତ୍ରସ୍ତ । ସ୍ପାଲ୍‌ଡିଂ ସେମାନଙ୍କ ପାଖକୁ ଗିବା ମାତ୍ରେ ସେମାନେ ଦ୍ରୁତ ବେଗରେ ଦୌଡ଼ି-

ଯାଉଛନ୍ତି । ସେମାନଙ୍କ ମଧ୍ୟରୁ ଗୋଟିଏ ବାହୁଗଦା ମଧ୍ୟରେ ବହୁ ସମୟ ଧରି ଲୁଚି ରହିଲା । ଏଥିରୁ ସହଜରେ ଅନୁମେୟ ଯେ ଏକ ନିର୍ଦ୍ଦିଷ୍ଟ ସମୟ ସୀମା ଅତିକ୍ରମ କରିବା ପରେ ଅନ୍ତର୍ମୁଦ୍ରଣ ବ୍ୟାହତ ହୁଏ, ତା ସ୍ଥାନରେ ଅନ୍ୟପ୍ରକାର ପ୍ରତିକ୍ରିୟା ସୃଷ୍ଟି ହୋଇପାରେ ।

ପାଞ୍ଚ ଶହେବର୍ଷ ପରେ ହେସ୍ ନାମକ ଜଣେ ଗବେଷକ ବିଜ୍ଞାନାଗାରରେ ଅନ୍ତର୍ମୁଦ୍ରଣ ପ୍ରଦର୍ଶନ କଲେ । ସେ ଗୋଟିଏ ଖେଳନା ବତକ ତିଆରି କଲେ ଓ ଖେଳନା ବତକଟି ଗତିକରିପାରିଲା ଭଳି ଏକ କୃତ୍ରିମ ପଥ ତିଆରି କଲେ । ଖେଳନା ବତକର ମୁଣ୍ଡ ଭିତରେ କ୍ଷୁଦ୍ର ଡାକବାଜ ଯନ୍ତ୍ର ରଖାଯାଇ ଯେପରି ବତକ ଶବ୍ଦ କରାଯାଇ ପାରିବ, ତାର ବ୍ୟବସ୍ଥା କରାଗଲା । ଗବେଷକ ନିଜେ ଦୂରରେ ଓ ଅନ୍ୟ ଗୋଟିଏ ଘରେ ବସି ଯେପରି ବୈଦ୍ୟୁତିକ ଉପାୟରେ ଖେଳନା ବତକଟିକୁ ନିର୍ମିତ ପଥରେ ଗତିଶୀଳ କରାଇ ପାରିବେ ଓ ବତକ ଶବ୍ଦ ବାହାର କରାଇ ପାରିବେ,ତାର ବ୍ୟବସ୍ଥା କଲେ । ତାହାପରେ ବତକ ଛୁଆମାନେ ଜନ୍ମହେଲା ମାତ୍ରେ ସେମାନଙ୍କୁ ନିଜ ମାଆକୁ ଦେଖିବାର ସୁଯୋଗ ଦିଆ ନ ଯାଇ ଏହି ଖେଳନା ବତକର କିଛି ଦୂରରେ ରଖାଗଲା ଏବଂ ସଙ୍ଗେ ସଙ୍ଗେ ଗବେଷକଙ୍କ ଯୋଜନା ଅନୁଯାୟୀ ଖେଳନା ବତକଟି ଗତିକଲା । ଖେଳନା ବତକରୁ ବତକ ଶବ୍ଦ ମଧ୍ୟ ସୃଷ୍ଟି କରାଗଲା । ବତକ ଛୁଆମାନେ ଖେଳନା ବତକକୁ ଅନୁସରଣ କଲେ । କିଛି ସମୟ ପରେ ଏହି ବତକ ଛୁଆମାନେ ଖେଳନା ବତକକୁ ନିଜର ମାଆ ବୋଲି ଗ୍ରହଣ କରିନେବା ଭଳି ମନେହେଲା । ଅନ୍ତର୍ମୁଦ୍ରଣ ପରେ ଖେଳନା ବତକ ସହିତ ପ୍ରକୃତ ମା'କୁ ଏକତ୍ର ରଖିବା ଏହା ସ୍ପଷ୍ଟ ପ୍ରମାଣିତ ହେଲା । ଦେଖାଗଲା, ବତକ ଛୁଆମାନେ ପ୍ରକୃତ ଜୀବନ୍ତ ମା'କୁ ଅନୁକରଣ ଓ ଅନୁସରଣ କରିବା ପରିବର୍ତ୍ତେ ଖେଳନାକୁ ଅନୁକରଣ ଓ ଅନୁସରଣ କରୁଛନ୍ତି । ଆହୁରି ଆଶ୍ଚର୍ଯ୍ୟର କଥା ଯେ ଏହି ଖେଳନାଟି ବତକ ନ ହୋଇ ଏକ ଅସମ୍ପୃକ୍ତ ବସ୍ତୁ (ଯଥା ଏକ ବୃତ୍ତାକାର କାଗଜ) ହେଲେ ମଧ୍ୟ ଫଳ ଏକା ହେଉଛି । ଅର୍ଥାତ୍ ବତକ ଛୁଆମାନେ ସେଇ ବୃତକୁ ଅନୁସରଣ କରୁଛନ୍ତି ।

ହେସ୍‌ଙ୍କ ପରୀକ୍ଷା ଓ ଲୋରେଂଜଙ୍କ ବିଧିବଦ୍ଧ ଗବେଷଣା ଅନ୍ତର୍ମୁଦ୍ରଣକୁ ଏକ ବିଜ୍ଞାନସମ୍ମତ ରୂପରେଖ ଦେଲା । ଲୋରେଂଜ ଅନ୍ତର୍ମୁଦ୍ରଣର ତିନୋଟି ବୈଶିଷ୍ଟ୍ୟ ଦର୍ଶାଇଛନ୍ତି । ,ପ୍ରଥମତଃ ଲୋରେଂଜଙ୍କ ମତରେ ପ୍ରାଣୀର ବିକାଶ କାଳର ଏକ ନିର୍ଦ୍ଦିଷ୍ଟ ଓ ସୀମିତ ସମୟ ମଧ୍ୟରେ ଅନ୍ତର୍ମୁଦ୍ରଣ ସଂଘଟିତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇ ପାରେ ଯେ ବତକ ଛୁଆଗୁଡ଼ିକର ଜନ୍ମର ଏକ ଘଣ୍ଟାଠାରୁ ଷୋଳଘଣ୍ଟା ପର୍ଯ୍ୟନ୍ତ ସଂଯୋଗାତ୍ମକ ବ୍ୟବହାର (ଅନୁଧାବନ) ବୃଦ୍ଧି ପାଏ ଓ ଷୋଳଘଣ୍ଟା ବେଳକୁ ଏହା ସର୍ବାଧିକ ହୁଏ । ଏହାପରେ ଏହି ସଂଯୋଗାତ୍ମକ ବ୍ୟବହାର କମିବାକୁ ଲାଗେ ଓ ବିୟୋଗାତ୍ମକ ବ୍ୟବହାର ବୃଦ୍ଧି ପାଏ । ବତିଶଘଣ୍ଟା ବେଳକୁ ଏହା ସର୍ବାଧିକ । ଲୋକପ୍ରିୟ ଭାଷାରେ ଏହା କହିବାକୁ ଗଲେ ଜନ୍ମର ଷୋଳଘଣ୍ଟା ସମୟ ରେଖାରେ ବିଦ୍ୟୁତ୍ ସ୍ରୋତ ଦେଖାଇଲେ ପ୍ରାଣୀ ତାହା ସ୍ପର୍ଶ କରିବାକୁ ଆଗଭର ହେବ । ମାତ୍ର ବତିଶ ଘଣ୍ଟା ବେଳେ

ଖାଦ୍ୟ ଦେଖାଇଲେ ମଧ୍ୟ ସେ ଭୀତତ୍ରସ୍ତ ହୋଇ ପଳାୟନ କରିବ । ସେହିପରି ପ୍ରତ୍ୟେକ ଅନ୍ତର୍ମୁଦ୍ରିତ ବ୍ୟବହାର ପାଇଁ ଏକ ଚରମ କାଳ ରହିଛି । ଏ ସମୟ ଉତ୍ତୀର୍ଣ୍ଣ ହେବା ପରେ ଅନ୍ତର୍ମୁଦ୍ରଣ ବ୍ୟବହାର ବିକାଶର ସମ୍ଭାବନା କ୍ଷୀଣ ।

ଦ୍ୱିତୀୟ ବୈଶିଷ୍ଟ୍ୟଟି ହେଉଛି ଅନ୍ତର୍ମୁଦ୍ରଣ ବିପରୀତମୁଖୀ କରିବା ସମ୍ଭବ ନୁହେଁ । ଗୋଟିଏ ବତକଛୁଆ ଖେଳନା ବତକ ବା ବୃତ୍ତାକାର କାଗଜ ପ୍ରତି ଅନ୍ତର୍ମୁଦ୍ରିତ ଅନୁରକ୍ତି ଦେଖାଇବା ପରେ ଖେଳନା ବତକ ବା ବୃତ୍ତାକାର କାଗଜ ସ୍ଥାନରେ ଅନ୍ୟ କୌଣସି ପ୍ରାଣୀ ବା ବସ୍ତୁକୁ ରଖିଲେ ବତକଛୁଆର ଅନୁରକ୍ତି ସୃଷ୍ଟି ହେବନାହିଁ । ଏପରିକି ବତକଛୁଆର ନିଜ ମା ମଧ୍ୟ ଅନୁରକ୍ତି ସୃଷ୍ଟି କରିପାରିବ ନାହିଁ । ଲୋରେଂଜଙ୍କ ମତରେ ଆଉ ଏକ ବୈଶିଷ୍ଟ୍ୟ ହେଉଛି ଅନ୍ତର୍ମୁଦ୍ରଣ ସମ୍ପୂର୍ଣ୍ଣ ଭାବରେ ସଂଘଟିତ ହୁଏ କିମ୍ବା ଆଦୌ ହୁଏ ନାହିଁ । ଏହା ଆଂଶିକ ଭାବେ ପରିଦୃଷ୍ଟ ହୁଏନାହିଁ ।

ଲୋରେଂଜଙ୍କ ପରବର୍ତ୍ତୀ ସମୟର ଗବେଷଣା ଏ ଦୁଇଟି ବୈଶିଷ୍ଟ୍ୟକୁ ସମ୍ପୂର୍ଣ୍ଣଭାବେ ଭୁଲ ବୋଲି ପ୍ରମାଣ କରି ନ ଥିଲେ ମଧ୍ୟ କେତେକାଂଶରେ ପରିବର୍ତ୍ତନ କରିଛି । ବର୍ତ୍ତମାନ ଚରମ କାଳର ଉପଯୋଗିତା ସ୍ୱୀକୃତ ହେଲେ ହେଁ ଏହି ଚରମକାଳ ଅପେକ୍ଷାକୃତ ପ୍ରଶସ୍ତ ବୋଲି ଗ୍ରହଣ କରାଯାଉଛି । କେତେକ ଗବେଷକ ଏହାକୁ ଚରମ କାଳ ନ କହି ସମ୍ବେଦୀକାଳ କହିବାକୁ ପସନ୍ଦ କରୁଛନ୍ତି । ପୂର୍ବ ବର୍ଣ୍ଣିତ ଦୃଷ୍ଟାନ୍ତ ଅନୁଯାୟୀ ବତକଛୁଆ ଗୁଡ଼ିକ ପାଇଁ ଅନ୍ତର୍ମୁଦ୍ରଣ ବେଳକୁ ଏକ ନିର୍ଦ୍ଦିଷ୍ଟ ସମୟ ସର୍ବୋଚ୍ଚ ପ୍ରଭାବଶୀଳ । ତଥାପି ବ୍ୟବସ୍ଥା ଗ୍ରହଣ କଲେ ଜନ୍ମର ସାତଦିନ ମଧ୍ୟରେ ଅନ୍ତର୍ମୁଦ୍ରଣ ସମ୍ଭବ ହେବ । ଅବଶ୍ୟ ଏ କ୍ଷେତ୍ରରେ ଯେଉଁ ପାଣୀ ବା ବସ୍ତୁଟି ପ୍ରତି ବତକଛୁଆଟିକୁ ଅନ୍ତର୍ମୁଦ୍ରିତ କରାଯିବ, ସେ ପ୍ରାଣୀ ବା ବସ୍ତୁ ସମ୍ମୁଖକୁ ବତକ ଛୁଆଟିକୁ ଆଣିବା ପୂର୍ବରୁ ଅନ୍ୟ କୌଣସି ପ୍ରାଣୀ ବା ଉଦ୍ଦୀପକ ଦେଖିବାର ସୁଯୋଗ ଦିଆଯିବା ଉଚିତ ନୁହେଁ । କେବଳ ସେତିକି ନୁହେଁ ,ସମସ୍ତ ସମୟରେ ପ୍ରାଣୀ କୌଣସି ଶବ୍ଦ ପ୍ରତି ମଧ୍ୟ ଅନ୍ତର୍ମୁଦ୍ରିତ ବ୍ୟବହାର ଦେଖାଇ ଥିବାରୁ ବତକଛୁଆଟିକୁ ଶବ୍ଦ ଶୁଣିବାର ସୁଯୋଗରୁ ମଧ୍ୟ ବଞ୍ଚିତ କରିବାକୁ ହେବ । ଏପରି ସ୍ଥଳରେ ସାତଦିନ ମଧ୍ୟରେ ବତକଛୁଆର ଅନ୍ତର୍ମୁଦ୍ରଣ ସମ୍ଭବ ହେବ ।

ଅନ୍ତର୍ମୁଦ୍ରଣର ଏକମୁଖୀତ୍ୱକୁ ସେହିପରି ବ୍ୟାପକ ଦୃଷ୍ଟିକୋଣରୁ ବିସ୍ତାର କରାଯାଇ ପାରେ । ଲୋରେଂଜଙ୍କର ନିଜର ବ୍ୟକ୍ତିଗତ ଅଭିଜ୍ଞତା ଉପରେ ନିର୍ଭର କରି ସେ ଏ ବୈଶିଷ୍ଟ୍ୟଟିର ସୂଚନା ଦେଇଛନ୍ତି । ହଂସଛୁଆ ଗୁଡ଼ିକର ଜନ୍ମ ପରେ ପରେ ଲୋରେଂଜ ସେମାନଙ୍କର ପାଖକୁ ବାରମ୍ବାର ଆସିବା ଫଳରେ ସେମାନେ ଲୋରେଂଜଙ୍କୁ ଅନୁଧାବନ କରିବା ଆରମ୍ଭ କଲେ । ସେମାନଙ୍କର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଲୋରେଂଜଙ୍କ ପ୍ରତି ଅନୁରକ୍ତି ମଧ୍ୟ ବୃଦ୍ଧି ପାଇଲା । ସେମାନେ ଅନ୍ୟ କୌଣସି ପ୍ରାଣୀ ପ୍ରତି ସାମାଜିକ ଅନୁରାଗ ଦେଖାଇଲେ ନାହିଁ । ବରଂ ଲୋରେଂଜଙ୍କ ଅନୁପସ୍ଥିତିରେ ଚିତ୍କାର କରିବାକୁ ଲାଗିଲେ ।

ସ୍ଥ ୂଲତଃ ଅନ୍ତର୍ମୁଦ୍ରଣ ସଂଗଠିତ ହେବା ପରେ ଏହାର ଦିଗ ପରିବର୍ତ୍ତନ କରିବା କଷ୍ଟସାଧ୍ୟ । ତଥାପି ଅନ୍ୟାନ୍ୟ ପର୍ଯ୍ୟବେକ୍ଷଣରୁ ସିଦ୍ଧାନ୍ତ କରାଯାଇଛି ଯେ ଅନ୍ତର୍ମୁଦ୍ରଣର ଦିଗ ପରିବର୍ତ୍ତନ କରିବା ଅସମ୍ଭବ ନୁହେଁ । ଅସମ୍ଭବ ହୋଇଥିଲେ ପରବର୍ତ୍ତୀ କାଳରେ ସ୍ୱଜାତୀୟ ଜୀବ ସହ ପ୍ରଜନନ କାର୍ଯ୍ୟରେ ଲାଗିନେବା ସମ୍ଭବ ହୁଅନ୍ତା ନାହିଁ । ହାର୍ଲୋ ବହୁ ପରୀକ୍ଷା ଦ୍ୱାରା ଦର୍ଶାଇଛନ୍ତି ଯେ ଦୈନନ୍ଦିନ ଜୀବନର କେତେକ ଅଭିଜ୍ଞତା ଅନ୍ତତଃ କେତେକ ସ୍ତରଗତ ସମ୍ପର୍କ ଓ ବସ୍ତୁ ନିର୍ବାଚନକୁ ପ୍ରଭାବିତ କରିଥାଏ । ସେହିପରି ଅନ୍ତର୍ମୁଦ୍ରଣକୁ ଏକ ଶୂନ୍ୟ ବା ଧୂର୍ତ୍ତି ପ୍ରକ୍ରିୟା ରୂପେ ସ୍ୱୀକାର କରା ନ ଯାଇ ଏକ କ୍ରମାଗତ ପଦ୍ଧତି ରୂପେ ଗବେଷକମାନେ ସ୍ୱୀକାର କରୁଛନ୍ତି । ସାଧାରଣତଃ ପକ୍ଷୀଙ୍କ ଅନ୍ତର୍ମୁଦ୍ରଣ ହୋଇଥିଲେ କୁକୁଡ଼ାଛୁଆଟି ଅନ୍ତର୍ମୁଦ୍ରିତ ବସ୍ତୁକୁ ଅନୁଧାବନ କରେ । ବସ୍ତୁର ଉପସ୍ଥିତିରେ ଆନନ୍ଦଧ୍ୱନି ପ୍ରକାଶ କରେ, ଅନୁପସ୍ଥିତିରେ ଚିତ୍କାର କରେ ଓ ବସ୍ତୁଟିର ଅତି ନିକଟରେ ଆଶ୍ରୟ ନିଏ । ବିଧିବଦ୍ଧ ଗବେଷଣାରୁ ଦେଖାଯାଇଛି ଯେ ଏହି ପକ୍ଷୀଙ୍କ ଅନ୍ତର୍ମୁଦ୍ରଣ ନ ଘଟି ଆଂଶିକ ଭାବରେ ମଧ୍ୟ ଅନ୍ତର୍ମୁଦ୍ରଣ ଘଟିପାରେ । ଅନୁଧାବନର ଆରମ୍ଭ ସମୟ, ଅନୁଧାବନ ପାଇଁ ଆବଶ୍ୟକ ଅନ୍ୟ ସୁବିଧା ସୁଯୋଗ ଓ ଅନ୍ତର୍ମୁଦ୍ରିତ ବସ୍ତୁଟି ସହ ସାମୀପ୍ୟ ପ୍ରଭୃତି ଅନ୍ତର୍ମୁଦ୍ରଣକୁ ପ୍ରଭାବିତ କରୁଥିବାରୁ ଅନ୍ତର୍ମୁଦ୍ରଣର ମାତ୍ରାରେ ଭିନ୍ନତା ଦେଖାଯାଇ ଥାଏ ।

ଅନ୍ତର୍ମୁଦ୍ରଣ ବିଷୟରେ ଯେଉଁ ପ୍ରଶ୍ନଟି ସବୁଠାରୁ ବେଶୀ କୌତୂହଳ ଉଦ୍ରେକ କରେ, ତା ହେଉଛି—ଅନ୍ତର୍ମୁଦ୍ରଣ କ'ଣ କେବଳ ପକ୍ଷୀଜଗତର ସରଳ ବ୍ୟବହାର (ଯଥା—ଅନୁଧାବନ) ମଧ୍ୟରେ ସୀମିତ ? ବାସ୍ତବରେ ଅନ୍ତର୍ମୁଦ୍ରଣର ପରିସର ଖୁବ୍ ବ୍ୟାପକ । ବିଭିନ୍ନ ପ୍ରାଣୀମାନଙ୍କର ସାମାଜିକ ବିକାଶରେ ଏହାର ଭୂମିକା ରହିଛି । ଅନ୍ତର୍ମୁଦ୍ରଣ-ଗବେଷଣାର ପ୍ରାକ୍‌କାଳରେ ଏହାକୁ ଏକ ପକ୍ଷୀଜଗତର ପ୍ରକ୍ରିୟା ରୂପେ ସ୍ୱୀକାର କରା ଯାଉଥିଲା । ମାତ୍ର ମତ୍ସ୍ୟ ଓ କୀଟପତଙ୍ଗ ମାନଙ୍କଠାରେ ମଧ୍ୟ ଏହା ଲକ୍ଷ୍ୟ କରାଯାଇଛି । କେତେକ ଗବେଷକ ଲକ୍ଷ୍ୟ କରିଛନ୍ତି ଯେ ଆରମ୍ଭ ଅବସ୍ଥାରେ ଖାଦ୍ୟ-ପ୍ରାପ୍ତିର ସୁଯୋଗ ଉପରେ ନିର୍ଭର କରି କେତେକ ପ୍ରାଣୀ ଖାଦ୍ୟଅନ୍ତର୍ମୁଦ୍ରଣ ଦର୍ଶାଇଥାନ୍ତି । ଏ ପ୍ରାଣୀଗୁଡ଼ିକ ପରବର୍ତ୍ତୀ କାଳରେ ଅନ୍ୟ ପ୍ରକାର ଖାଦ୍ୟ ପାଇଲେ ତା ଉତ୍କୃଷ୍ଟ ହୋଇ-ଥିଲେ ମଧ୍ୟ ସେଗୁଡ଼ିକ ଖାଇବା ପାଇଁ ଆଗ୍ରହ ପ୍ରକାଶ କରନ୍ତି ନାହିଁ । ସେହିପରି ମନୋ-ବିଜ୍ଞାନୀ ଥର୍ପ୍ ଲକ୍ଷ୍ୟ କରିଛନ୍ତି ଯେ କେତେକ ଶିଶୁପ୍ରାଣୀ ସେମାନେ ଜନ୍ମଲାଭ କରିଥିବା ବାସଭୂମି ପ୍ରତି ପ୍ରଗାଢ଼ ଅନୁରକ୍ତି ଦର୍ଶାଇଛନ୍ତି । ଏପରିକି ମନୁଷ୍ୟର ସ୍ୱଦେଶ ପ୍ରୀତିକୁ ଏ ପରିପ୍ରେକ୍ଷୀରେ ସ୍ୱୀକାର କରାଯାଇ ପାରେ ।

ଗୋଟିଏ ପ୍ରାଣୀ ଅନ୍ତର୍ମୁଦ୍ରଣ ଫଳରେ ସ୍ୱଜାତୀୟ ପ୍ରତି ଅନୁରକ୍ତ ନ ହୋଇ ଅନ୍ୟ ଜୀବଗୋଷ୍ଠୀର ଅନୁରକ୍ତ ହେବା ପ୍ରମାଣର ବହୁଳ ଦୃଷ୍ଟାନ୍ତ ରହିଛି । ଛେଳି, ମେଣ୍ଢା, ମଇଁଷି ପ୍ରଭୃତି ପ୍ରାଣୀ ରାଜ୍ୟରେ ଏହାର ସଂଖ୍ୟାଧିକ ଦୃଷ୍ଟାନ୍ତ ମିଳେ । ମନୁଷ୍ୟଦ୍ୱାରା ଲାଳିତ

ପାଳିତ ମେଣ୍ଢାଟିଆ ତାର ମନୁଷ୍ୟ ପାଳିତ ପିତାଙ୍କୁ ଅନୁସରଣ କରିବା ଓ ନିଜ ଗୋଷ୍ଠୀର ମେଣ୍ଢାଠାରୁ ଦୂରକୁ ପଳାଇବାର ନମୁନା ରହିଛି ।

ଅଳ୍ପ କିଛି ବର୍ଷ ପୂର୍ବରୁ ନବ ଜନ୍ମିତ ମନୁଷ୍ୟ ସନ୍ତାନ କ୍ଷେତ୍ରରେ ଅନ୍ତର୍ମୁଦ୍ରଣର ସମ୍ଭାବନା ଗବେଷଣାର ପ୍ରୟୋଗାତ୍ମକ ମୂଲ୍ୟବୃଦ୍ଧି କରିଛି । ଅବଶ୍ୟ ନବଜାତ ଶିଶୁ ଯେପରି ଗୋଟିଏ ଗତିଶୀଳ ବସ୍ତୁର ଅନୁଧାବନ କରେ, ତାର ଆୟୋଜନ ଦୁରୂହ । ତଥାପି ଗର୍ଭରେ ଥିବା ସମୟରେ କିମ୍ବା ଜନ୍ମର ଠିକ୍ ପରେ ପରେ ତାର ପରିପାର୍ଶ୍ୱରେ ଥିବା କିଛି ଦୃଷ୍ଟି ଆକର୍ଷକ ବସ୍ତୁ ପ୍ରତି ଶିଶୁଟି ଅନୁରକ୍ତି ପ୍ରକାଶ କରିବ କି ନାହିଁ — ତାହା ପରୀକ୍ଷା ସାମଗ୍ରୀ ହୋଇପାରେ । ଏ କ୍ଷେତ୍ରରେ ଶିଶୁଟିର ଅନ୍ତର୍ମୁଦ୍ରିତ ଅନୁରକ୍ତି ଅନୁଧାବନ ମାଧ୍ୟମରେ ପ୍ରକାଶ ନ ପାଇଲେ ଅନ୍ୟ କେତେକ ବ୍ୟବହାରରୁ ଜଣା ପଡ଼ିପାରେ । ବସ୍ତୁଟି ଗତି ଆରମ୍ଭ କଲା ମାତ୍ରେ ଶିଶୁର ଦୃଷ୍ଟି ତାକୁ ଅନୁସରଣ କରିପାରେ; ଶିଶୁଟି ନୀରବ ହୋଇ ଯାଇପାରେ ଓ ମୁଣ୍ଡ ବୁଲାଇ ନିଜର ମୁହଁର ସୀମା ମଧ୍ୟରେ ବସ୍ତୁଟିର ସନ୍ଧାନ କରିପାରେ । ଏ ସମସ୍ତ ପ୍ରତିକ୍ରିୟାର ସମ୍ଭାବନାକୁ ବିଚାରକୁ ନେଇ ମନୋବିଜ୍ଞାନୀ ସଲ୍‌କ ଦର୍ଶାଇଛନ୍ତି ଯେ ଗର୍ଭସ୍ଥିତ ଶିଶୁ ନିଜ ଜୀବନର ହୃତ୍‌ସ୍ପନ୍ଦନ ପ୍ରତି ଅନୁରକ୍ତି ଦର୍ଶାଇ-ଥାଏ । ଶିଶୁ ଜନ୍ମଲାଭର ଚାରିଦିନ ମଧ୍ୟରେ କୃତ୍ରିମ ହୃତ୍‌ସ୍ପନ୍ଦନର ଆୟୋଜନ କରି ସେ ଲକ୍ଷ୍ୟ କଲେ ଯେ କୃତ୍ରିମ ହୃଦ୍‌ସ୍ପନ୍ଦନ ଗତି ଶୁଣୁଥିବା ଶିଶୁମାନେ ଏହାର ଶବ୍ଦ ଶୁଣୁ ନ ଥିବା ଶିଶୁମାନଙ୍କ ତୁଳନାରେ ଅଧିକ ମାନସିକ ଶାନ୍ତି ବ୍ୟକ୍ତ କରୁଛନ୍ତି । ଏପରି ଶବ୍ଦ ଶୁଣୁଥିବା ଶିଶୁମାନଙ୍କର ଓଜନ ମଧ୍ୟ ଅପେକ୍ଷାକୃତ ବେଶୀ ବୃଦ୍ଧି ପାଉଛି । ଅନ୍ତର୍ମୁଦ୍ରଣ ଫଳରେ ମାନସିକ ସ୍ଥିରତା ବୃଦ୍ଧି ପାଉଥିବାରୁ ଓଜନ ବୃଦ୍ଧି ଯୁକ୍ତିଯୁକ୍ତ ମନେ କରି ଶିଶୁମାନଙ୍କର ଓଜନ ବୃଦ୍ଧିକୁ ଅନ୍ତର୍ମୁଦ୍ରଣର ଏକ ସୂଚକ ରୂପେ ଗ୍ରହଣ କରା-ଯାଇଥିଲା ।

ଦୁଇଜଣ ପ୍ରଖ୍ୟାତ ଗବେଷକ ସ୍ପିଜ୍ ଓ ଓଲ୍‌ଫ ସ୍ମିତ ହସକୁ ଏକ ଅନ୍ତର୍ମୁଦ୍ରିତ ବ୍ୟବହାର ରୂପେ ବିଶ୍ଳେଷଣ କରିଛନ୍ତି । ସେମାନେ ଏକ ଅନାଥାଶ୍ରମ ପର୍ଯ୍ୟବେକ୍ଷଣ କରି ଦେଖିଲେ ଯେ ଦୁଇମାସରୁ କମ୍ ବୟସର କୌଣସି ଶିଶୁ ସ୍ମିତହସ ଦେଖାଇ ନାହାନ୍ତି । ପ୍ରାୟ ଛମାସ ବେଳକୁ କେବଳ ପରିଚିତ ବ୍ୟକ୍ତିଙ୍କ ପ୍ରତି ସେମାନେ ସ୍ମିତହସ ଦେଖାଇଛନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି ଯେ ସ୍ମିତହସ ପରି ସମାଜୀକରଣର ଏକମୁଖ୍ୟ ବିଭାଗର ନିର୍ଦ୍ଦିଷ୍ଟ ବିକାଶକାଳ ରହିଛି । ଯଦି ଏହି ସମୟ ସୀମା ମଧ୍ୟରେ ଶିଶୁମୁଖରେ ସ୍ମିତହାସ ଆଣିବାର ସୁଯୋଗ ନ ପାଏ, ତେବେ ବେଶୀ ବୟସରେ କେବଳ ସ୍ମିତହାସ ଫୁଟାଇବା କଷ୍ଟକର ହୁଏ ନାହିଁ, ସାମାଜିକ ଅନୁରାଗ ସୃଷ୍ଟି ମଧ୍ୟ ବ୍ୟାହତ ହୁଏ ।

ବଲ୍‌ବି ଓ ସ୍କଟ୍‌ଙ୍କ ପରି ବିଶିଷ୍ଟ ଶିଶୁବିଜ୍ଞାନୀମାନେ ସାମାଜିକ ବନ୍ଧନ ସୃଷ୍ଟିରେ ସ୍ମିତହସ ପରି ସାମାଜିକ ବିଭବର ଗୁରୁତ୍ୱ ଆରୋପ କରିବା ସଙ୍ଗେ ସଙ୍ଗେ ଏକ ନିର୍ଦ୍ଦିଷ୍ଟ

ସମୟରେଖା ମଧ୍ୟରେ ଏ ସମସ୍ତ ସାମାଜିକ ବ୍ୟବହାରର ବିକାଶ ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଅବଶ୍ୟ ଏ ଗୁଡ଼ିକ କେବଳ ଶିଶୁର ଦର୍ଶନେନ୍ଦ୍ରିୟ ଅନୁଭୂତ ଘଟଣାବଳୀ ଭିତରେ ସୀମିତ ନୁହେଁ । ସ୍ପର୍ଶେନ୍ଦ୍ରିୟ ଓ ଶ୍ରବଣେନ୍ଦ୍ରିୟ ଇତ୍ୟାଦି ଅନୁଭୂତିର ସୁଯୋଗ ଶିଶୁର ସାମାଜିକ ବିକାଶକୁ ନିୟନ୍ତ୍ରିତ କରିଥାଏ ।

ଅନୁସନ୍ଧିତ୍ସୁ ମନ ଆଉ ଗୋଟିଏ ପ୍ରଶ୍ନ ସହିତ ମଧ୍ୟ ଜଡ଼ିତ । ପୂର୍ବରୁ ଧାରଣା କରାଯାଇଥିଲା ଯେ କେବଳ ସନ୍ତାନ ସନ୍ତତି ସେମାନଙ୍କର ପିତାମାତା ପ୍ରତି ଅନୁରକ୍ତି ପ୍ରଦର୍ଶନ କରନ୍ତି । ଏବେ କିନ୍ତୁ ପ୍ରଶ୍ନ ଉଠୁଛି—ପିତାମାତାମାନେ ସନ୍ତାନ ସନ୍ତତି ଉପରେ ନିର୍ଭର କରି କେତେକ ଅନ୍ତର୍ମୁଦ୍ରିତ ବ୍ୟବହାର ଦର୍ଶାନ୍ତି କି ? ଜଣେ ଗବେଷକ ପ୍ରଥମେ ଲକ୍ଷ୍ୟକଲେ ଯେ ଜନ୍ମର ପରେ ପରେ ଏକ ନିର୍ଦ୍ଦିଷ୍ଟ ଘଟଣା ଛେଳିର ଜନନୀ-ସନ୍ତାନ ସମ୍ପର୍କକୁ ପ୍ରଭାବିତ କରୁଛି । ଶିଶୁ ଛେଳିଟି ଜନ୍ମ ହେବା ପରେ ମା ଛେଳିଟି ଶିଶୁଟିକୁ ଜିଭରେ ଚାଟୁଛି ଓ ଶିଶୁଟି ଠିଆ ହେବାକୁ ସକ୍ଷମ ହେଲା ଯାଏ ତା ପାଖେ ରହୁଛି । ଯଦି ମା-ଛେଳିଟିକୁ ଏ କାର୍ଯ୍ୟ କରିବାକୁ ସୁଯୋଗ ଦିଆ ନ ଯାଏ, ତେବେ ପର ସମୟରେ ମା-ଛେଳିଟି ଶିଶୁଛେଳିକୁ ଏପରି ଗ୍ରହେନାହିଁ ଓ ଜନନୀ-ସନ୍ତାନର ସମ୍ପର୍କ ପ୍ରତିଷ୍ଠା ସମୟ-ସାପେକ୍ଷ ହୋଇପଡ଼େ । ଅନ୍ୟ ଜଣେ ଗବେଷକ ସେହିପରି ମେଣ୍ଢା କ୍ଷେତ୍ରରେ ନବଜନ୍ମିତ ମେଣ୍ଢା ଦେହରୁ ଆସୁଥିବା ଗନ୍ଧ କିପରି ମା-ମେଣ୍ଢାକୁ ଆମୋଦିତ କରେ ଓ ଏହି ଗନ୍ଧଲବ୍ଧ ଜନନୀ ସନ୍ତାନର ସମାଜିକ ସମ୍ପର୍କକୁ ନିୟନ୍ତ୍ରିତ କରେ, ତାହାର ପ୍ରମାଣ ଦେଇଛନ୍ତି । ସ୍ଥୂଳତଃ ପିତାମାତା ଯେ ସନ୍ତାନ ସନ୍ତତି ପ୍ରତି ସେମାନଙ୍କର ଅନ୍ତର୍ମୁଦ୍ରଣଗତ ଅନୁରକ୍ତି ଦେଖାନ୍ତି, ଏହାର ସମ୍ଭାବନା ମାନବର ପ୍ରାରମ୍ଭିକ ସାମାଜିକ ବିକାଶକୁ ଏକ ନୂତନ ରୂପରେଖ ଦେଇଛି ।

ଏକ ବୃହତ୍ତର ଦୃଷ୍ଟିଭଙ୍ଗୀ ନେଇ ବିଚାର କଲେ ଜଣାଯାଏ ଯେ ଅନ୍ତର୍ମୁଦ୍ରଣ କେବଳ ଏକ ଗବେଷଣାର ସାମଗ୍ରୀ ନୁହେଁ । ଏହାର ପ୍ରୟୋଗାତ୍ମକ କ୍ଷେତ୍ର ଖୁବ୍ ବିସ୍ତୃତ । ଏପର୍ଯ୍ୟନ୍ତ ଯେଉଁ ସମସ୍ତ ଗବେଷଣା ହୋଇଛି, ତାହା ଶିଶୁର ସାମାଜିକ ବିକାଶ ଉପରେ ଯଥେଷ୍ଟ ଆଲୋକ ପାତ କରିଛି । ଆଗାମୀ କାଲି ପାଇଁ ଯେଉଁ ସମସ୍ତ ସମ୍ଭାବନାର ଚିହ୍ନ ମିଳୁଛି, ତାହା ମନୁଷ୍ୟର ଶିକ୍ଷା ପ୍ରଶିକ୍ଷଣ ଉତ୍କର୍ଷ ସାଧନରେ ଦିଗଦର୍ଶନର ସୂଚନା ଦେଉଛି । ମନୁଷ୍ୟ ଯେଉଁ ସମସ୍ତ ଅନୁଭୂତିର ସ୍ତର ଦେଇ ଗତି କରେ, ସେ ସବୁ ସ୍ତରର ଚରମକାଳ ବା ସମ୍ବେଦୀକାଳ ନିରୂପିତ ହୋଇ ପାରିଲେ ଶିକ୍ଷାଦାନ ପଦ୍ଧତିକୁ ଖୁବ୍ ସରଳ ଓ ପ୍ରଭାବଶାଳୀ କରିବା ସମ୍ଭବ ହେବ । ଏହା ହେବ ବିଜ୍ଞାନ ଜଗତର ଏକ ବିସ୍ମୟ ।

# ମାନସିକ ମନ୍ଥନ

ଜୀବନ ଏକ ସରଳ ରେଖା ନୁହେଁ । ବହୁ ବାଧା ବିଘ୍ନ ଏହାର ଗତିକୁ ବନ୍ଦ କରେ ଏବଂ ବହୁ ସଂଘର୍ଷରେ ଏ ରେଖାରେ ବକ୍ରିମତା ଆସେ । ଜୀବନକୁ ଶାନ୍ତିପୂର୍ଣ୍ଣ, ସୁଖମୟ ଭାବରେ ଉପଭୋଗ କରିବାର କାମନା ସତ୍ତ୍ୱେ ବହୁ ସମୟରେ ଅପ୍ରତ୍ୟାଶିତ ଘଟଣାବଳୀ ଆମର ମାନସିକ ସ୍ଥିତିକୁ ବିପର୍ଯ୍ୟସ୍ତ କରେ ଏବଂ ଅନେକ ଚିନ୍ତା ଆମର ଭାରସାମ୍ୟ ଭଙ୍ଗ କରେ । ବହୁଦିନ ଧରି ସଚ୍ଚୋଟ ବ୍ୟକ୍ତିରୂପେ ବିଶ୍ୱାସ କରି ଆସୁଥିବା କୌଣସି ବନ୍ଧୁଙ୍କ ବିଷୟରେ ଅସାଧୁତାର ଖବର ପାଇଲେ ଆମ ମନରେ ଯେପରି ଦୁଃଖ ହୁଏ, ବହୁ ପରିଶ୍ରମ କରିଥିବା କାର୍ଯ୍ୟଟି ବିଫଳ ହେଲେ ମାନସିକ ଯନ୍ତ୍ରଣା ସେପରି ବୃଦ୍ଧିପାଏ । ମୋଟ ଉପରେ ଦୁଇଟି ପରସ୍ପର ବିରୋଧୀ ଚିନ୍ତା, ବିଶ୍ୱାସ, ଜ୍ଞାନଧାରା ବା ଘଟଣାର ମିଳନ ମାନସିକ ପ୍ରସନ୍ନତା ନଷ୍ଟ କରି ଏକ ବିପର୍ଯ୍ୟସ୍ତ ସୃଷ୍ଟି କରେ । ଏ ବିପର୍ଯ୍ୟସ୍ତ ମନର ଭାରସାମ୍ୟ ନଷ୍ଟ କରି ଏକ ବିରକ୍ତିବୋଧ ସୃଷ୍ଟି କରେ । ଏ ବିରକ୍ତିବୋଧ ଆମର ବ୍ୟକ୍ତିଗତ ଓ ସାମାଜିକ ଜୀବନର ଏକ ନିଚ୍ଛକ ବାସ୍ତବତା ।

ଆହୁରି ଅଧିକ ବାସ୍ତବତା ହେଉଛି ଏ କ୍ଷେତ୍ରରେ ମନର ପ୍ରକୃତି । ମନର ଏକ ସହଜ ସ୍ୱଭାବ ପ୍ରକୃତି ହେଉଛି ମନର ସ୍ଥିରତା ରକ୍ଷା କରିବା । ମନର ସ୍ଥିରତା ବା ଭାରସାମ୍ୟ ନଷ୍ଟ ହେଲ ମାତ୍ରେ ମନ ଚେଷ୍ଟା କରେ ପୁନର ସ୍ଥିରତା ଫେରାଇ ଆଣିବା ପାଇଁ । ଏଥିପାଇଁ ମନ ବିଭିନ୍ନ କୌଶଳ ଅବଲମ୍ବନ କରେ । ପ୍ରତି କ୍ଷେତ୍ରରେ ଯେ ମନର ପ୍ରଚେଷ୍ଟା ପୂର୍ଣ୍ଣ ମାତ୍ରାରେ ସଫଳ ହୁଏ, ତାନୁହେ । ପୁଣି ବିଭିନ୍ନ କାରଣରୁ ମାନସିକ ଅସ୍ଥିରତାର ମାତ୍ରା କମ୍ ବା ବେଶୀ ହୋଇଥାଏ । ପ୍ରଥମତଃ ମାନସିକ ମନ୍ଥନ ସହ ଜଡ଼ିତ ଚିନ୍ତା, ବିଶ୍ୱାସ ବା ଘଟଣାର ସଂଖ୍ୟା ଉପରେ ଅସ୍ଥିରତାର ମାତ୍ରା ନିର୍ଭର କରେ । କିଛି ପରିଶ୍ରମ କରି ଗୋଟିଏ ଦୋକାନକୁ ଯିବା ଏବଂ ଦୋକାନଟି ବନ୍ଦ ଥିବାର ଦେଖି ଫେରିଆସିବାରେ ଅଳ୍ପ ପରିମାଣରେ ମାନସିକ ମନ୍ଥନ ସୃଷ୍ଟି ହୋଇପାରେ । ଅନ୍ୟପକ୍ଷରେ ଦୋକାନକୁ ଯିବା କ୍ଷେତ୍ରରେ ଅନ୍ୟ କେତେଗୁଡ଼ିଏ ଘଟଣା ସମ୍ମିଶ୍ରିତ ହୋଇପାରେ । ଦୋକାନକୁ ଯିବାରେ ଗମନାଗମନର ଅସୁବିଧା, ପ୍ରବଳ ବର୍ଷା ହେବା, ଅସମୟ ହୋଇଥିବା ଇତ୍ୟାଦି ଘଟଣାବଳୀ ସମ୍ମିଶ୍ରିତ ହୋଇପାରେ । ସେହିପରି ଦୋକାନରୁ କିଣା ହେବା ବସ୍ତୁଟି ସରଳ ନ ହୋଇ ବହୁ ଘଟଣାର ସମାବେଶ ହୋଇପାରେ । ମନେ କରି-ଯାଉ, କିଣା ହେବାକୁ ଠିକ୍ କରିଯାଇଥିବା ଜିନିଷଟି କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଦୋକା-ନରେ ମିଳେ, ପରିପାର୍ଶ୍ୱରେ ଆଉ ସେପରି ଦୋକାନ ନାହିଁ । କ୍ରୟ କରିଯିବା ବସ୍ତୁଟି ଏକ

ପ୍ରୀତିଉପହାର ପାଇଁ ଉଦ୍ଦିଷ୍ଟ । ବସ୍ତୁଟି କେବଳ ସେହିଦିନ ଶୁଭଅବସରରେ ଏକ ବନ୍ଧୁଙ୍କୁ ଦିଆଯିବ ଏବଂ ଉକ୍ତ ବନ୍ଧୁମିଳନର ଉତ୍ସବଟିକୁ ବାଦ ଦେବା ଖୁବ୍ କଷ୍ଟ । ଏପରି କ୍ଷେତ୍ରରେ ଯଥେଷ୍ଟ ପରିଶ୍ରମ କରି ଦୋକାନକୁ ଯାଇ ଦୋକାନ ବନ୍ଦ ହେବାର ଦେଖିଲେ ମାନସିକ ମନ୍ଥନ ଅତ୍ୟନ୍ତ ବେଶୀ ହେବ । ସେହିପରି ଭାତ ବା ରୁଟି ଖାଇବାର ନିଷ୍ପତ୍ତି ନେଲେ ଯେଉଁ ମାନସିକ ଅସ୍ଥିରତା ସୃଷ୍ଟି ହୁଏ, ତାହା କଲା ବା ବିଜ୍ଞାନ ପଢ଼ିବାର ନିଷ୍ପତ୍ତି ନେବାର ଅସ୍ଥିରତା ଠାରୁ ଯଥେଷ୍ଟ କମ୍ । କଲା ବା ବିଜ୍ଞାନ ପଢ଼ିବାର ନିଷ୍ପତ୍ତି ନେବା ସହ ବହୁ ଚିନ୍ତା ବା ଘଟଣା ଜଡ଼ିତ । ପରୀକ୍ଷାରେ ଭଲ କରିବାର ଆଶା, ପିତା ମାତାଙ୍କ ସ୍ନେହ ପ୍ରାପ୍ତିର ଆଶା ଓ ଭବିଷ୍ୟତରେ ଚାକିରିର ସମ୍ଭାବନା ସହ ଏହା ଜଡ଼ିତ । ତେଣୁ ମାନସିକ ମନ୍ଥନର ମାତ୍ରା ବେଶୀ ହେବା ସ୍ୱାଭାବିକ ।

ଦ୍ୱିତୀୟତଃ ସମ୍ପୃକ୍ତ ପରସ୍ପର ବିରୋଧୀ ଚିନ୍ତାଦ୍ୱୟର ଗୁରୁତ୍ୱ ମଧ୍ୟ ମାନସିକ ମନ୍ଥନର ମାତ୍ରା ନିରୂପଣ କରେ । ଆମ ପରିଚିତ ଜଣେ ବ୍ୟକ୍ତିଙ୍କୁ ଆମେ ସଚ୍ଚୋଟ ବୋଲି ଜାଣିଥିଲେ ଏବଂ ତାଙ୍କ ବିଷୟରେ ଅସଦାଚରଣ ଅଭିଯୋଗ ଶୁଣିଲେ ଯେଉଁ ମାନସିକ ଅସ୍ଥିରତା ଆସେ, ଆମର ପ୍ରିୟ ବନ୍ଧୁଙ୍କୁ ସଚ୍ଚୋଟ ବୋଲି ଜାଣି ଏବଂ ତାଙ୍କ ସମ୍ପର୍କରେ ଅସଦାଚରଣର ଅଭିଯୋଗ ଶୁଣିଲେ ତାଠାରୁ ଯଥେଷ୍ଟ ବେଶୀ ମାନସିକ ମନ୍ଥନ ସୃଷ୍ଟି ହୁଏ । ସମ୍ପୃକ୍ତ ଚିନ୍ତା, ବିଶ୍ୱାସ ଓ ଘଟଣାଗୁଡ଼ିକୁ ଆମେ ଯେତେ ବେଶୀ ଗୁରୁତ୍ୱ ଦେଉ, ସେଗୁଡ଼ିକର ସଂଘର୍ଷରେ ସେତେ ବେଶୀ ମନ୍ଥନ ସୃଷ୍ଟି ହୁଏ ।

## ମାନସିକ ମନ୍ଥନର ରୂପ

ବିଭିନ୍ନ ରୂପରେ ମାନସିକ ମନ୍ଥନ ସୃଷ୍ଟି ହୁଏ । ଅନେକ ସମୟରେ କେତେକ ସାମାଜିକ ବ୍ୟବସ୍ଥାର ଅସଂଗତି ଫଳରେ ମାନସିକ ମନ୍ଥନର ସୂତ୍ରପାତ ହୁଏ । ଆମର ସାମାଜିକ ଭୂମିକାର ଭିନ୍ନତା ଏକ ଦୃଷ୍ଟାନ୍ତ । ମନୁଷ୍ୟ ନିଜର ସାମାଜିକ ଜୀବନ ନିର୍ବାହ ପାଇଁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଭୂମିକା ଗ୍ରହଣ କରିଥାଏ । କେତେକ ସ୍ଥଳରେ ଏକାଧିକ ଭୂମିକା ପରସ୍ପର ବିରୋଧୀ ହୋଇ ମାନସିକ ଅସ୍ଥିରତା ସୃଷ୍ଟି କରେ । ଜଣେ ବ୍ୟକ୍ତି ପିତା ହିସାବରେ ନିଜର ସନ୍ତାନକୁ ସ୍ନେହ ପ୍ରଦର୍ଶନ କରିବା ଉଚିତ୍ ବୋଲି ଯେପରି ଅନୁଭବ କରନ୍ତି, ଶିକ୍ଷକ ହିସାବରେ ସନ୍ତାନର ଅବାଂଛିତ ବ୍ୟବହାରକୁ ପରିବର୍ତ୍ତନ କରିବାରେ କଠୋରତା ଅବଲମ୍ବନରେ ମଧ୍ୟ ସେତିକି ଯତ୍ନଶୀଳ ହୁଅନ୍ତି । ଏ ଦୁଇ ଭୂମିକାର ସନ୍ଧି ସ୍ଥଳରେ କିଛି ପରିମାଣରେ ମାନସିକ ଅସ୍ଥିରତା ଆସେ । ସେହିପରି ଜଣେ ଉପରିସ୍ଥ ଅଫିସରଙ୍କର ଅଧସ୍ତନ କର୍ମଚାରୀ ଜଣଙ୍କ ବନ୍ଧୁ ହୋଇଥିଲେ ବ୍ୟକ୍ତି ଜଣକ ପ୍ରଶାସକର ଭୂମିକା ଓ ବନ୍ଧୁର ଭୂମିକା ମଧ୍ୟରେ ସମନ୍ୱୟ ଆଣିବାରେ କିଛି ମାନସିକ ମନ୍ଥନ ଅନୁଭବ କରନ୍ତି । ଏକାଧିକ ଗୋଷ୍ଠୀରେ ଚଳିବା ବେଳେ ମଧ୍ୟ ମାନସିକ ମନ୍ଥନ ସୃଷ୍ଟି ହୋଇପାରେ । ଦୁଇ ଗୋଷ୍ଠୀର ପ୍ରତ୍ୟାଶା, ମାନଦଣ୍ଡ ଓ ଆଚରଣ ବିଧି

ପୃଥକ ହୋଇଥିଲେ ମାନସିକ ମନ୍ଥନ ସୃଷ୍ଟି ହୁଏ । ଏ ଦେଶରେ ଆମେ ହାତ ଧୋଇ ନିଜ ହାତରେ ଖାଇବାରେ ଅଭ୍ୟସ୍ତ ଥିଲା ବେଳେ ବିଦେଶ ଯାଇ ସେଠାରେ ଛୁରୀ କଣ୍ଟାରେ ଖାଇବାର ବାତାବରଣ ମଧ୍ୟରେ ଆମେ କ'ଣ କରିବା ଠିକ୍ ହେବ ବୋଲି ଭାବି ଅସ୍ଥିରତା ଅନୁଭବ କରୁ । ମୋଟ ଉପରେ ଦୁଇ ଗୋଷ୍ଠୀର ସାମାଜିକ ନିୟମ ପରସ୍ପର ବିରୋଧୀ ହେଲେ ମାନସିକ ସଙ୍ଘାତ ସୃଷ୍ଟି ହୁଏ ।

ମାନସିକ ମନ୍ଥନର ଅନ୍ୟ ଏକ ଉତ୍ସ ହେଉଛି, ଦୁଇଟି ପରସ୍ପର ବିରୋଧୀ ତଥ୍ୟ ବା ଧାରଣା । ଆମେ ପୋଷଣ କରିଥିବା ତଥ୍ୟ, ଜ୍ଞାନ ବା ଧାରଣା ଏକ ବିରୋଧାତ୍ମକ ତଥ୍ୟ, ଜ୍ଞାନ ବା ଧାରଣାର ସମ୍ମୁଖୀନ ହେଲେ ମାନସିକ ମନ୍ଥନ ସୃଷ୍ଟି ହୁଏ । ପୃଥିବୀର ଚତୁଃପାର୍ଶ୍ୱରେ ସୂର୍ଯ୍ୟ ବୁଲୁଛି ବୋଲି ଧାରଣା କରିଆସୁଥିବା ମଣିଷ ସମାଜ ଯେତେବେଳେ ପ୍ରଥମେ ଜାଣିଲା ଯେ ସୂର୍ଯ୍ୟ ସ୍ଥିର ଓ ପୃଥିବୀ ତାର ଚତୁଃପାର୍ଶ୍ୱରେ ଘୂରୁଛି, ସେତେବେଳେ ଏକ ମାନସିକ ମନ୍ଥନର ଉତ୍ପତ୍ତି ହେଲା । ବ୍ୟକ୍ତିଗତ ସ୍ତରରେ ଆମର ପୂର୍ବର ଜ୍ଞାନ ବା ଧାରଣା ବହୁ ଆହ୍ୱାନର ସମ୍ମୁଖୀନ ହୁଏ । ନୂତନ ଓ ବିପରୀତଧର୍ମୀ ଧାରଣା ଆମ ଆଗରେ ଆସିଲେ ଆମେ ଏକପ୍ରକାର ଅସ୍ଥିରତା ଅନୁଭବ କରୁ । ଜ୍ଞାନ ପରିବର୍ତ୍ତନଶୀଳ । ନୂତନ ଜ୍ଞାନ ପୁରାତନ ଜ୍ଞାନର ପରିପନ୍ଥୀ ହେଲେ ମାନସିକ ସଙ୍ଘାତ ଦେଖାଦିଏ । ଏପରିକି ଦୈନନ୍ଦିନ ଜୀବନରେ ମଧ୍ୟ ନୂତନ ଜ୍ଞାନ, ନୂତନ ସୂଚନା ଏବଂ ନୂତନ ସମ୍ବାଦର ଆହରଣ ଆମର ପୁରାତନ ଚିନ୍ତାକୁ ବଦଳାଇଲା ବେଳେ ଆମେ ମାନସିକ ଅସ୍ଥିରତା ଅନୁଭବ କରୁ ।

ବହୁ ସମୟରେ ଆମ ଆଶା ବ୍ୟର୍ଥତାର ସମ୍ମୁଖୀନ ହେଲେ ଆମେ ମାନସିକ ମନ୍ଥନର ଶିକାର ହେଉ । ଆଶା କରିଥିବା ସ୍ୱୀକୃତି ନ ମିଳିବା, ଆଶାନୁପାତରେ ଫଳ ନ ମିଳିବା, ବହୁ ଆକାଂକ୍ଷିତ ପଦବୀ ନ ମିଳିବା ଇତ୍ୟାଦିର ଅନୁଭୂତି ମଧ୍ୟରେ ମାନସିକ ମନ୍ଥନର ଉଦ୍‌ଭବ ହୁଏ । ଅନେକ ସମୟରେ ଆମେ ଗୋଟିଏ ନିର୍ଦ୍ଦିଷ୍ଟ ଆକାଂକ୍ଷା ପଛରେ ଯେତେ ବେଶୀ ସମୟ ଓ ପରିଶ୍ରମ ବିନିଯୋଗ କରୁ, ଉକ୍ତ ଆକାଂକ୍ଷାଟି ନିଶ୍ଚୟ ପରିପୂରିତ ହେବ ବୋଲି ଆମର ଆଶା ବଢ଼େ । ପରିଶେଷରେ ସେ ଆଶା ଫଳବତୀ ନ ହେଲେ ମାନସିକ ଅସ୍ଥିରତାର ମାତ୍ରା ବୃଦ୍ଧି ପାଏ । ପ୍ରଖ୍ୟାତ କଥାଶିଳ୍ପୀ ପ୍ରେମଚନ୍ଦଙ୍କ ଅମର ସୃଷ୍ଟି 'ଗୋଦାନ'ରେ ହୋରିର ଗାଈ ନିମନ୍ତେ ଆପ୍ରାଣ ପ୍ରଚେଷ୍ଟା ଓ ଅକଳନ ଆଶା ଏବଂ ପରିଶେଷରେ ସେଥିରେ ବ୍ୟର୍ଥତାର ଚିତ୍ର ମାନସିକ ମନ୍ଥନର ଏକ ଅପରୂପ ଚିତ୍ରଣ ।

ମାନସିକ ମନ୍ଥନର ଆଉ ଏକ ବିଶିଷ୍ଟ ଉତ୍ସ ହେଉଛି ନିଷ୍ପତ୍ତି ଗ୍ରହଣର ପରବର୍ତ୍ତୀ ଅବସ୍ଥା । ଆମେ ଯେକୌଣସି ନିଷ୍ପତ୍ତି ନେଉ, ସେଠାରେ ଅଳ୍ପ ବହୁତେ ମାନସିକ ଅସ୍ଥିରତା ଜନ୍ମିତ ଥାଏ । କିନ୍ତୁ କେତେକ ସ୍ଥଳରେ ଏହି ମାନସିକ ମନ୍ଥନରେ ମାତ୍ରାଧିକ୍ୟ ଦେଖା-ଯାଏ । ଆମେ ଏକାଧିକ ପନ୍ଥା ମଧ୍ୟରୁ ବାଛିଥିବା ପନ୍ଥାଟିର ଅସୁବିଧା କଥା ଭାବି ଅସ୍ଥିର

ହେବ ଏବଂ ପରିତ୍ୟକ୍ତ ପନ୍ଥାଗୁଡ଼ିକର ସୁବିଧା ଭାବି ଅସ୍ଥିର ହେବ । ଜଣେ ଛାତ୍ର ବିଜ୍ଞାନ ଶ୍ରେଣୀରେ ଭର୍ତ୍ତି ହେବାର ନିଷ୍ପତ୍ତି ନେବା ପରେ ବିଜ୍ଞାନ ଶିକ୍ଷାର ଅସୁବିଧା ଦିଗଗୁଡ଼ିକ ଚିନ୍ତା କରି ମାନସିକ ମନ୍ଥନ ଅନୁଭବ କରେ । ସେହି ସମୟରେ ସେ ଛାତ୍ରଟି କଳା ଶିକ୍ଷାର ସୁବିଧା ଦିଗମାନ ଭାବି ଅଧିକ ମାନସିକ ମନ୍ଥନ ଅନୁଭବ କରେ । ବହୁ କ୍ଷେତ୍ରରେ ଦେଖାଯାଇଛି ଯେ ଲୋକମାନେ ଗୋଟିଏ ନିର୍ଦ୍ଦିଷ୍ଟ ଧରଣର ସ୍କୁଟର କିଣି ସାରିଲା ପରେ ସେହି ଧରଣର ସ୍କୁଟରର ଭଲ ଗୁଣଗୁଡ଼ିକ ଖୋଜି ଖୋଜି ସମ୍ବାଦପତ୍ର ବା ଅନ୍ୟାନ୍ୟ ସ୍ଥଳରୁ ବାହାର କରି ନିଜକୁ ସାନ୍ତ୍ୱନା ଦିଅନ୍ତି । ସେହିପରି ସେମାନେ ବାଦ୍ ଦେଇଥିବା ସ୍କୁଟର ଗୁଡ଼ିକର ଅସୁବିଧା ବିଷୟରେ ତଥ୍ୟ ସଂଗ୍ରହ କରିବାରେ ଲାଗନ୍ତି । ଜୀବନର ବିଭିନ୍ନ କ୍ଷେତ୍ରରେ ବହୁ ନିଷ୍ପତ୍ତି ନେବାର ଦରକାର ହୁଏ . ଏବଂ ପ୍ରତି ନିଷ୍ପତ୍ତି ମୂଳରେ କିଛି ପରିମାଣରେ ମାନସିକ ମନ୍ଥନ ସୃଷ୍ଟି ହୁଏ ।

କୌଣସି କାର୍ଯ୍ୟ କରିବାକୁ ଅନୁରୋଧ କରି ଦେଲେ ବା ନିର୍ଦ୍ଦେଶ ଦେଇ ଦେଲେ ଯଦି ଖୁବ୍ କମ୍ ପରିମାଣରେ ଯୁକ୍ତି ବା କାରଣ ଦର୍ଶାଯାଇଥାଏ, ତେବେ ମାନସିକ ମନ୍ଥନ ସୃଷ୍ଟି ହୁଏ । ଏହା ଏକ କୌତୂହଳପୂର୍ଣ୍ଣ ଅବସ୍ଥା । ଅନେକ ସମୟରେ ବାପ ପୁଅକୁ କିଛି କାରଣ ନ ଦର୍ଶାଇ ପୁଅ ସନ୍ଧ୍ୟାରେ ଘରକୁ ଫେରିବା ଉଚିତ ବୋଲି କହନ୍ତି । ଉପରିସ୍ଥ କର୍ମଚାରୀ କାରଣ ନ ଦର୍ଶାଇ ଅଧସ୍ତନ କର୍ମଚାରୀଙ୍କୁ ସଂଧ୍ୟା ପର୍ଯ୍ୟନ୍ତ ଅଫିସରେ ରହିବାକୁ ନିର୍ଦ୍ଦେଶ ଦେଇଥାଆନ୍ତି । ଏସବୁ ସ୍ଥଳରେ ଆଦେଶ ପାଳନକାରୀ ବ୍ୟକ୍ତି ମନରେ ମାନସିକ ଅସ୍ଥିରତା ଦେଖାଦିଏ । ଅନୁରୋଧ ବା ଆଦେଶଟି ପାଳନ କରିବାର ଯାଥାର୍ଥ୍ୟ ନ ଦର୍ଶାଇ ସେ ବିଷୟରେ ଖୁବ୍ କମ୍ ପରିମାଣରେ ସୂଚନା ଦେଲେ ମାନସିକ ସନ୍ତାପର ଉଦ୍ଭବ ଘଟେ ।

ଉପରୋକ୍ତ ମୁଖ୍ୟ ଉତ୍ସ ଗୁଡ଼ିକ ମାନସିକ ମନ୍ଥନ ସହିତ ସଂଶ୍ଳିଷ୍ଟ । ଏ ପରିସରର ବାହାରେ ମଧ୍ୟ ମାନସିକ ମନ୍ଥନର ଆବିର୍ଭାବ ଘଟିପାରେ । ଉତ୍ସ ଯାହାହେଉନା କାହିଁକି, ମନ୍ଥନର ପରେ ପରେ ମାନସିକ ସ୍ଥିତି ଫେରାଇ ଆଣିବାକୁ ମନ ବିଭିନ୍ନ କୌଶଳ ଅବଲମ୍ବନ କରେ । ମଣିଷର ମନ ଖୁବ ଜଟିଳ ଏବଂ ସୂକ୍ଷ୍ମାତିସୂକ୍ଷ୍ମ ସଂଯୋଗର ଅଧିକାରୀ ହୋଇଥିବାରୁ ସ୍ୱରସାମ୍ୟ ଫେରାଇ ଆଣିବାର କୌଶଳ ବହୁରୂପୀ ଓ ଜଟିଳ ହୋଇଥାଏ । ତଥାପି ସ୍ୱରସାମ୍ୟ ଫେରାଇବା ଦିଗରେ କେତୋଟି ମୌଳିକ ନୀତି କାମ କରେ ।

## ସ୍ୱରସାମ୍ୟ ଫେରାଇବାର କୌଶଳ

ସାଧାରଣତଃ ତିନୋଟି ଉପାୟରେ ମନ ନିଜର ସ୍ୱରସାମ୍ୟ ଫେରାଇ ଆଣିବାକୁ ଚେଷ୍ଟା କରେ । ପ୍ରଥମଟି ହେଉଛି ମାନସିକ ମନ୍ଥନ ସୃଷ୍ଟି ହେଲା ପରେ ପରେ ମନ ଏହି ମନ୍ଥନ ପରିସର ମଧ୍ୟରେ ନୂଆ ବିଶ୍ୱାସ ବା ନୂଆ ଚିନ୍ତାଧାରା ଯୋଗ କରି ସ୍ୱରସାମ୍ୟ ଫେରାଇ ଆଣିପାରେ । ପୂର୍ବ ଆଲୋଚନାରେ ଜଣେ ବ୍ୟକ୍ତିଙ୍କର ନିଜ ପ୍ରିୟବନ୍ଧୁଙ୍କ ପ୍ରୀତ୍ୟର୍ଥପହାର

ଦେବା ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଦୋକାନରୁ ଉପହାର କିଣିବାର ଚେଷ୍ଟା ଓ ଦୋକାନଟି ବନ୍ଦ ଥିବାରୁ ମାନସିକ ମନ୍ଥନର ଦୃଷ୍ଟାନ୍ତ ଦିଆଯାଇଛି । ଏ କ୍ଷେତ୍ରରେ ବ୍ୟକ୍ତିଜଣକ ନୂଆ ଚିନ୍ତାଧାରା ଯୋଗ କରି ମାନସିକ ମନ୍ଥନର ଅବସାନ ଘଟାଇ ପାରନ୍ତି । ଉଦାହରଣ ସ୍ୱରୂପ କୁହା ଯାଇପାରେ ଯେ ସେ ନିଜକୁ ନିଜେ ଯୁକ୍ତି କରି ପାରନ୍ତି ଯେ ବନ୍ଧୁଜଣକ ତାଙ୍କର ଖୁବ୍ ଅନ୍ତରଙ୍ଗ ହୋଇ ଥିବାରୁ ସେ ବନ୍ଧୁଙ୍କୁ ଗୋପନରେ ବୁଝାଇ ଦେଇପାରିବେ ସେ ଦିନର ଅସୁବିଧା । ଅନ୍ତରଙ୍ଗ ବନ୍ଧୁଙ୍କ ପାଖରେ ତାଙ୍କ ସମ୍ମାନ ହାନିର ପ୍ରଶ୍ନ ନାହିଁ । ଏପରି ଚିନ୍ତା ମନକୁ ଆଣି ବ୍ୟକ୍ତିଜଣକ ମାନସିକ ସ୍ଥିତି ଫେରାଇ ଆଣିପାରିବେ ।

ଏ କୌଶଳଟି ଦୁଇଟି ଉପାୟରେ କାର୍ଯ୍ୟ କରେ । ନୂଆ ଚିନ୍ତାଧାରାର ମିଶ୍ରଣ ଫଳରେ ବିରୋଧାତ୍ମକ ଦୁଇଟି ଭାବନାର ଗୁରୁତ୍ୱରେ ପରିବର୍ତ୍ତନ ଘଟେ । ଆଲୋଚିତ ଉଦାହରଣରେ ବନ୍ଧୁଙ୍କ ସହିତ ସମ୍ପର୍କର ଦୃଢ଼ତା କଥା ମିଶିଲା ପରେ ଉପହାର ଦେଲା ପରି ଏକ ଆନୁଷ୍ଠାନିକ ବ୍ୟବହାର କୃତ୍ରିମ ଓ ଅନାବଶ୍ୟକ ମନେ ହୋଇପାରେ । ଫଳରେ ଦୋକାନ ବନ୍ଦ ଥିବାରୁ ଉପହାର ନ ମିଳିବାର ଘଟଣା ଆଉ ମନକୁ ଅଧିକ ଆନ୍ଦୋଳିତ କରେ ନାହିଁ । ଅନ୍ୟ କେତେକ କ୍ଷେତ୍ରରେ ନୂଆ ଚିନ୍ତାର ମିଶ୍ରଣ ଫଳରେ ବିରୋଧାତ୍ମକ ଦୁଇଟି ଭାବନା ମଧ୍ୟରୁ ଗୋଟିଏ ଖୁବ୍ ଶକ୍ତିଶାଳୀ ହୋଇଉଠେ ଏବଂ ଅନ୍ୟଟି ଖୁବ୍ ଦୁର୍ବଳ ହୋଇଉଠେ । କଳା ଶ୍ରେଣୀରେ ଭର୍ତ୍ତି ହେବା ଉଚିତ କି ବିଜ୍ଞାନ ଶ୍ରେଣୀରେ ଭର୍ତ୍ତି ହେବା ଉଚିତ, ଏହା ଚିନ୍ତା କରି ଜଣେ ଛାତ୍ର ମାନସିକ ମନ୍ଥନ ଅନୁଭବ କରିପାରେ । ମାତ୍ର ଯେଉଁ ମୁହୂର୍ତ୍ତରେ ତା'ର ଚିନ୍ତା ଉଦୟ ହୁଏ ଯେ ଅତୀତରେ ସେ ଜଣେ କଳାକାର ଭାବରେ ସମ୍ମାନିତ ହୋଇଛି ଏବଂ କଳାତ୍ମକ ଶିକ୍ଷାଦ୍ୱାରା ସମାଜରେ ପ୍ରତିଷ୍ଠା ଲାଭ କରିବାର ସମ୍ଭାବନା ତା'ର ବେଶି, ସେତେବେଳେ ବିଜ୍ଞାନ ଶ୍ରେଣୀରେ ଭର୍ତ୍ତି ହେବାର ଧାରଣାଟି ଖୁବ୍ ଦୁର୍ବଳ ହୋଇପଡ଼େ । କଳା ଶିକ୍ଷାର ବିଚାର ଶକ୍ତିଶାଳୀ ହୁଏ । ଗୋଟିଏ ଭାବନାର ଶକ୍ତିବୃଦ୍ଧି ଓ ଅନ୍ୟଟିର ଶକ୍ତି ହ୍ରାସ ଫଳରେ ମାନସିକ ମନ୍ଥନର ଅବସାନ ହୁଏ ।

ଭାରସାମ୍ୟ ଫେରାଇ ଆଣିବାର ଦ୍ୱିତୀୟ କୌଶଳଟି ହେଉଛି ମନ୍ଥନ ସହିତ ଜଡ଼ିତ ଥିବା ସମସ୍ତ ଭାବନାଗୁଡ଼ିକର ପରିବର୍ତ୍ତନ । ପରସ୍ପର ବିରୋଧୀ ସବୁ ଭାବନାଗୁଡ଼ିକ ଫିଙ୍ଗି ଦେଇ ପୂରାପୂରି ନୂଆ ଭାବନାର ଉଦୟ ଏ ଦିଗରେ ସହାୟକ । କିନ୍ତୁ ନୂଆ ଭାବନାଗୁଡ଼ିକରେ ଅସଙ୍ଗତି ନ ଥିବା ଉଚିତ । ପ୍ରଚଳିତ ବିରୋଧାତ୍ମକ ଭାବନାଗୁଡ଼ିକ ପରିହାର କରି ବ୍ୟକ୍ତି ଯେତେବେଳେ ନୂତନ ଦୃଷ୍ଟିକୋଣ, ନୂତନ ପରିପ୍ରେକ୍ଷୀ ନେଇ ବିଚାର କରେ; ସେତେବେଳେ ଭାବନାଗୁଡ଼ିକ ମଧ୍ୟରେ ଅସଙ୍ଗତି ଦୂର ହୋଇ ନୂଆ ସଙ୍ଗତିର ସନ୍ଧାନ ମିଳେ । ଫଳରେ ମାନସିକ ମନ୍ଥନର ମଧ୍ୟ ବିଲୟ ଘଟେ ।

ମାନସିକ ମନ୍ଥନରୁ ମୁକ୍ତି ପାଇବାର ତୃତୀୟ କୌଶଳଟି ହେଉଛି କାର୍ଯ୍ୟ ବା ବ୍ୟବହାର ମାଧ୍ୟମରେ ଭାରସାମ୍ୟ ଫେରାଇବା । ଜଣେ ବ୍ୟକ୍ତି ନିଜର ବନ୍ଧୁଙ୍କୁ ସନ୍ତୋଷ

ଖିବୁଥିଲା ବେଳେ ତାଙ୍କର ଅସଦାଚରଣ ବିଷୟରେ କିଛି ଶୁଣିଲେ ମାନସିକ ମନ୍ଥନର ଶରବ୍ୟ ହେବେ । ପ୍ରଥମ ଦୁଇଟି ଉପାୟରେ ମାନସିକ ମନ୍ଥନର ଅବସାନ ନ ହେଲେ ବ୍ୟକ୍ତି ଜଣକ ପ୍ରକୃତ କାର୍ଯ୍ୟସ୍ଥଳକୁ ଯାଇ ଅଭିଯୋଗର ସତ୍ୟାସତ୍ୟ ସମ୍ପର୍କରେ ଅନୁସନ୍ଧାନ କରିବେ ।

ସେହିପରି ବର୍ତ୍ତମାନର ଜ୍ଞାନ ବା ଧାରଣା ବିରୋଧରେ ଅନ୍ୟ କୌଣସି ଜ୍ଞାନ ବା ଧାରଣା ଆସିଲେ, ବ୍ୟକ୍ତି ମାନସିକ ମନ୍ଥନର ଶରବ୍ୟ ହୁଏ । ଏ କ୍ଷେତ୍ରରେ ବ୍ୟକ୍ତିଟି ନିଜେ ପୁସ୍ତକ, ବିଶେଷଜ୍ଞ, ଗ୍ରନ୍ଥାଗାର ବା ସେହିପରି କିଛି ତଥ୍ୟକେନ୍ଦ୍ରର ସନ୍ଧାନ କରି ଦୁଇଟି ମଧ୍ୟରୁ କେଉଁଟି ଠିକ୍—ତାହା ନିରୂପଣ କରିବାର ପ୍ରଚେଷ୍ଟା କରେ । ମୋଟ ଉପରେ ମାନସିକ ସ୍ତରରେ ମନ୍ଥନର ବିଳମ୍ବ ନ ଘଟିଲେ ମନ୍ଥନ ହ୍ରାସକାରୀ କାର୍ଯ୍ୟକଳାପରେ ବ୍ୟକ୍ତି ନିଜକୁ ନିୟୋଜିତ କରେ ।

ମାନସିକ ମନ୍ଥନର ଉଦୟ ଓ ଅବସାନ ଆମ ଜୀବନର ଏକ ଧାରାବାହିକ ଘଟଣା । ଏହାକୁ ମନୋବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କଲେ ଜଣାପଡ଼େ, ମଣିଷର ମନ କେତେ ସନ୍ଦିଗ୍ଧ ଓ ଜଟିଳ । କେବଳ ବ୍ୟକ୍ତି ସ୍ତରରେ ନୁହେଁ, ସମାଜ ସ୍ତରରେ ମଧ୍ୟ ମାନସିକ ମନ୍ଥନର ଆରମ୍ଭ ଓ ବିଳମ୍ବ ସମାଜର ସନ୍ଦିଗ୍ଧତା ବିଷୟରେ ସ୍ପଷ୍ଟ ଧାରଣା ଦିଏ । ମାନସିକ ମନ୍ଥନର ସ୍ୱରୂପ ଜାଣିଲେ ଦୈନନ୍ଦିନ ଜୀବନର କେତେକ ଅବାଞ୍ଛିତ ମାନସିକ ମନ୍ଥନର ଅବସାନ ଘଟାଇ ଜୀବନକୁ ସୁଖମୟ କରିବା ସମ୍ଭବ ହୁଏ ।

## ସମାଜୀକରଣ

ମନୁଷ୍ୟର ଜୀବନ ନିର୍ବାନ୍ଧ ଏକ ଗୋଷ୍ଠୀବିହୀନ ପରିସରରେ ନୁହେଁ, କି ଏକ କପୋଳକଳ୍ପିତ ସ୍ୱପ୍ନରାଜ୍ୟରେ ନୁହେଁ । ଏକ ନିର୍ଦ୍ଦିଷ୍ଟ ମୂଲ୍ୟବୋଧ ଓ ଭାବଧାରାର ଅନୁଗତ ଏକ ଗୋଷ୍ଠୀ ବା ସମାଜ ମଧ୍ୟରେ ତାର ଜୀବନ ଯାପନ । ସୁତରାଂ ବ୍ୟକ୍ତିକୁ ପ୍ରତିକ୍ଷେତ୍ରରେ ଗୋଷ୍ଠୀର ରୀତିନୀତି, ଆଚାର ବିଚାର, ବିଶ୍ୱାସ ଓ ମନୋବୃତ୍ତି ସହ ସମନ୍ୱୟ ରକ୍ଷା କରିବାକୁ ପଡ଼ିଥାଏ । ସମନ୍ୱୟ ସଂସ୍ଥାପନର ଏକ ନିରବଚ୍ଛିନ୍ନ ପଦ୍ଧତି ମାଧ୍ୟମରେ ବ୍ୟକ୍ତି ଗୋଷ୍ଠୀର ଏକ ସ୍ୱୟଂସମ୍ପୂର୍ଣ୍ଣ ସଦସ୍ୟ ରୂପେ ପରିଗଣିତ ହୁଏ । ଏହି ପଦ୍ଧତି ହିଁ ସାମାଜୀକରଣ ପଦ୍ଧତି ।

ମନୋବିଜ୍ଞାନୀଙ୍କ ମତରେ ସାମାଜୀକରଣ ପଦ୍ଧତିକୁ ମନୁଷ୍ୟ ସାମୂହିକ ଉନ୍ନତି କଲେ ବ୍ୟବହାର କରିବାକୁ ଶିକ୍ଷା କରିଥାଏ ଏବଂ ଏହା କରିବା ଦ୍ୱାରା ସେ ସମାଜର ନିୟମ, ସାମାଜିକ ଦାୟିତ୍ୱ ଓ ସାଂସ୍କୃତିକ ବ୍ୟକ୍ତିତ୍ୱ ଅନୁଭବ କରିଥାଏ । ଅବଶ୍ୟ ନୃବିଜ୍ଞାନୀମାନଙ୍କ ଦୃଷ୍ଟିରେ ସାଂସ୍କୃତିକ ଭାବଧାରାର ଅର୍ନ୍ତଗତ ବିଶ୍ଳେଷଣ ଯାହାହେଲେ ମଧ୍ୟ ଏହାର ଉଦ୍ଭବ ଅତି ସ୍ପଷ୍ଟ ଓ [illegible] ।

ଶିଶୁଟି ଜନ୍ମ ସମୟରେ ସମାଜବିହୀନ ଏକ ଜୈବିକ ସ୍ଥିତି । କିନ୍ତୁ ଗୋଷ୍ଠୀ-ଜୀବନର ପରିସର ମଧ୍ୟରେ ସେ ସାମାଜିକ-ପ୍ରାଣୀକୁ ରୂପାନ୍ତରିତ ହୋଇଥାଏ । ସାମାଜିକ କ୍ରିୟା-ପ୍ରତିକ୍ରିୟା ମଧ୍ୟରେ ସାମାଜୀକରଣରେ ଏକ ବିଶିଷ୍ଟ ଭୂମିକା ରହିଛି । କାରଣ ଜୈବିକ ଆବଶ୍ୟକତାକୁ ପ୍ରକାଶ କରିବାର ଧାରା, ଭାବଧାରାର ଆଦାନପ୍ରଦାନ ତଥା ଆବେଗର ପ୍ରକାଶ କ୍ଷେତ୍ରରେ ପ୍ରତ୍ୟେକ ସଂସ୍କୃତିର କିଛି ନା କିଛି ବୈଶିଷ୍ଟ୍ୟ ରହିଛି । ତେଣୁ ସାମାଜୀକରଣ ଓ ବ୍ୟକ୍ତିତ୍ୱର ବିକାଶକୁ ପୃଥକ ପୃଥକ ବିଚାର କରିବା ଯୁକ୍ତିଯୁକ୍ତ ନୁହେଁ ।

ଏ ପ୍ରସଙ୍ଗରେ 'ଶିକ୍ଷା'ର ଭୂମିକା ସ୍ୱୀକୃତ । ଆମର ବିଶ୍ୱାସ ଯେ ମନୁଷ୍ୟର ଅଧିକାଂଶ ବ୍ୟବହାର ସମାଜଠୁ ଶିକ୍ଷିତ ସମାଜ ଦ୍ୱାରା ଉଦ୍ଭବ ଓ ସାମାଜିକ ଭାବେ ଗଠିତ । ଏ ଦୃଷ୍ଟିରୁ ସାମାଜୀକରଣ ସହିତ ବ୍ୟକ୍ତିତ୍ୱ ଗଠନର ନିବିଡ଼ ସମ୍ପର୍କର ସୂଚନା ଦେବା ଅର୍ଥ ବ୍ୟକ୍ତିତ୍ୱକୁ ମଧ୍ୟ ଏକ ଶିକ୍ଷାକୃତ ଉପାଦାନ ରୂପେ ସ୍ୱୀକାର କରିବା । ପ୍ରକାରାନ୍ତରେ କହିଲେ ସାମାଜିକ ବ୍ୟବହାର ଶିକ୍ଷା କଲା ପରି ବ୍ୟକ୍ତିତ୍ୱକୁ ମଧ୍ୟ ଶିକ୍ଷା କରାଯାଇଥାଏ ।

ବିଭିନ୍ନ ଗୋଷ୍ଠୀର ତୁଳନାତ୍ମକ ଅଧ୍ୟୟନରୁ ଏହି ସାମାଜୀକରଣର ଏକ ସ୍ପଷ୍ଟ ରୂପରେଖ ମିଳିଥାଏ । ଏ କ୍ଷେତ୍ରରେ ସାଂସ୍କୃତିକ ବିଜ୍ଞାନୀମାନଙ୍କ ଗବେଷଣା ବିଶେଷ ଭାବେ ସହାୟକ । ଏହି ଗବେଷଣା ପ୍ରତିପାଦନ କରେ ଯେ ମାନସିକ ଘଟଣା ଓ ସମ୍ପର୍କ ଅସଂଖ୍ୟ ଭାବରେ ରୂପ ଗ୍ରହଣ କରିପାରେ । ପୂର୍ବରୁ ଅପରିବର୍ତ୍ତନୀୟ ସହଜାତ ପ୍ରବୃତ୍ତି ରୂପେ ବିଚାର କରାଯାଉଥିବା କେତେକ ବିଭାଗ ଯଥା—ସହଯୋଗିତା ଓ ପ୍ରତିଯୋଗିତା ଆକ୍ରମଣ, କ୍ରୋଧର ପରିପ୍ରକାଶ । ଶିଶୁପାଳନ, ଭାବାବେଗର ଅଭିବ୍ୟକ୍ତି ଇତ୍ୟାଦି ଉପରେ ଆଲୋକପାତ କରି ଏମାନେ ଗୋଷ୍ଠୀର ବିଭିନ୍ନତା କିପରି ବ୍ୟକ୍ତିତ୍ୱ ଭଙ୍ଗୀକୁ ସ୍ୱତନ୍ତ୍ରତା ପ୍ରଦାନ କରେ, ତାହା ପ୍ରମାଣିତ କରିଛନ୍ତି ।

ବିଶିଷ୍ଟ ସାଂସ୍କୃତିକ-ନରବିଜ୍ଞାନୀ ମାର୍ଗାରେଟ ମିଡ଼ଙ୍କ ଅଧ୍ୟୟନ ଅତ୍ୟନ୍ତ କୌତୂହଳ ପ୍ରଦ । ଚାମ୍ବୁଲି, ଆରାପେଶ ଓ ମୁଣ୍ଡୁଗୁମର ଗୋଷ୍ଠୀ ସମୂହରେ ପରିଲକ୍ଷିତ ଯୌନ ସମ୍ପର୍କୀୟ ବ୍ୟବହାରର ତାରତମ୍ୟ ପ୍ରଣିଧାନର ବିଷୟ । ଚାମ୍ବୁଲରେ ସ୍ତ୍ରୀ ପୁରୁଷଙ୍କ ବ୍ୟବହାର ସମ୍ପୂର୍ଣ୍ଣ ବିପରୀତ । କେବଳ ଶରୀର ଗଠନକୁ ବାଦ ଦେଲେ ଅର୍ଥୋପାର୍ଜ୍ଜନ

ଘଟିଥିବ ସମାଜର ବଳିଷ୍ଠ କାର୍ଯ୍ୟମାନ ସ୍ତ୍ରୀମାନଙ୍କ ଦ୍ୱାରା ସମାହିତ ହୋଇଥାଏ । ସ୍ତ୍ରୀମାନେ ଯୁଦ୍ଧ, ମତ୍ସ୍ୟସଂଗ୍ରହ ଓ ଉତ୍ପାଦନ କାର୍ଯ୍ୟ କରନ୍ତି । ମାତ୍ର ପୁରୁଷମାନେ ସନ୍ଦେହୀ, ଦ୍ୱାନ୍ଦ୍ୱ, ନିର୍ଭରଶୀଳ ହୋଇ ଜୀବନ ଯାପନ କରନ୍ତି । ସେମାନଙ୍କର କାର୍ଯ୍ୟ-କୁଶଳତା କେବଳ ନୃତ୍ୟଗୀତ, ଚିତ୍ରାଙ୍କନ ପ୍ରଭୃତି କଳାତ୍ମକ କାର୍ଯ୍ୟରେ ସୀମିତ ।

ଆରାପେଶ ଗୋଷ୍ଠୀର ଗୁଣାବଳୀ ସ୍ତ୍ରୀ ସୁଲଭ । ସ୍ତ୍ରୀ ପୁରୁଷ ଉଭୟେ ଶିଶୁମାନଙ୍କ ପ୍ରତି ଯତ୍ନଶୀଳ ଏବଂ ସେମାନଙ୍କ ଲାଳନ ପାଳନରେ ସଦା ତତ୍ପର । ପ୍ରତ୍ୟେକ ସ୍ତ୍ରୀ ପୁରୁଷ ନମ୍ର, ଭଦ୍ର, ଓ ସହଯୋଗ ମନୋବୃତ୍ତିସମ୍ପନ୍ନ । ଶିଶୁ ଅବସ୍ଥାରେ ନିର୍ବନ୍ଧ କାର୍ଯ୍ୟ ସମାପ୍ତ ହୁଏ ଏବଂ ବାଳିକାଟି ଶିଶୁ ଥିଲା ବେଳେ ବାଳକ ଘରକୁ ଯାଇ ସେଠାରେ ବସବାସ କରେ । ଏହା ଫଳରେ ଉଭୟ ମଧ୍ୟରେ ପ୍ରେମାତ୍ମକ ଭାବବିକାଶର ସୁଯୋଗ ଦିଆଯାଏ । ଯୌନକ୍ରିୟାକୁ ପବିତ୍ର ମନେ କରାଯାଏ ଏବଂ ଅଜନ୍ମିତ ସନ୍ତାନର ଶାରୀରିକ ବିକାଶ ପାଇଁ ଏହାକୁ ଅତ୍ୟାବଶ୍ୟକ ଉପାଦାନ ବୋଲି ବିଚାର କରାଯାଏ । ସ୍ଥୂଳତଃ ପାଶ୍ଚାତ୍ୟ ଜଗତର ମାନଦଣ୍ଡରେ ଏହା ଏକ ସ୍ତ୍ରୀ ଗୁଣଯୁକ୍ତ ସମାଜ ।

ଆରାପେଶ ସମାଜର ଏକ ବିପରୀତ ଅବସ୍ଥା ପରିଲକ୍ଷିତ ହୁଏ ମୁଣ୍ଡୁଗୁମର ସମାଜରେ । କର୍ମଠତା, ଆକ୍ରମଣ, ଉଦ୍ୟମଶୀଳତା ଏ ସମାଜର ବୈଶିଷ୍ଟ୍ୟ । ବିନୀତ, ନମ୍ର ବ୍ୟକ୍ତି ସମାଦୃତ ହୁଏ ନାହିଁ । ପୁରୁଷ କିମ୍ବା ସ୍ତ୍ରୀ କେହି ହେଲେ ସନ୍ତାନ ପ୍ରିୟ ନୁହନ୍ତି । ବରଂ ଶିଶୁମାନେ ଏମାନଙ୍କ ଠାରୁ ରୁକ୍ଷ ବ୍ୟବହାର ପାଇଥାଆନ୍ତି । ସ୍ତ୍ରୀ ମାନଙ୍କ ସନ୍ତାନ ହେଲେ ମଧ୍ୟ ସେମାନେ ସନ୍ତାନ ପାଳନକୁ ଏକ କଷ୍ଟ କାର୍ଯ୍ୟ ରୂପେ ଗ୍ରହଣ କରନ୍ତି ଓ ଏହା ଉପରେ ଖୁବ୍ କମ୍ ଦୃଷ୍ଟି ଦେଇଥାଆନ୍ତି । ସ୍ତ୍ରୀ ପୁରୁଷ ଉଭୟେ କଳହ ପ୍ରିୟ ଓ ଶତ୍ରୁଭାବ ସମ୍ପନ୍ନ । ସ୍ଥୂଳତଃ ଏହା ଏକ ପୁରୁଷ ଗୁଣଗତ ସମାଜ ।

କେବଳ ଯୌନ ବ୍ୟବହାର କ୍ଷେତ୍ରରେ ନୁହେଁ, କୈଶୋର କାଳୀନ ବ୍ୟବହାରରେ ତାରତମ୍ୟ ମଧ୍ୟ ସାମାଜୀକରଣର ସ୍ପଷ୍ଟ ପରିପ୍ରକାଶ । ସୋମୁଆର ସାଂସ୍କୃତିକ ପରିବେଷ୍ଟନୀ ଯୌବନ କାଳରେ ଯୌନ ପ୍ରବୃତ୍ତିର ପରିତୃପ୍ତିକୁ ଅନୁମୋଦନ କରିଥାଏ । ଏହି ଯୌବନ କାଳରେ କୌଣସି ସାମାଜିକ ଦାୟିତ୍ୱକୁ ଲଦି ଦିଆ ନ ଯାଇଥିବାରୁ ବିଭିନ୍ନ ସମସ୍ୟାମୂଳକ ବ୍ୟବହାର ପରିଦୃଷ୍ଟ ହୋଇ ନ ଥାଏ । ସୋମୁଆ ସହ ଆମ ସଂସ୍କୃତିର ତୁଳନାତ୍ମକ ଚିତ୍ର ଆମର କୈଶୋର କାଳୀନ ଦ୍ୱିଗୁଣ ଦାୟିତ୍ୱର ଆଭାସ ଦେଇଥାଏ ।

ଆକ୍ରମଣାତ୍ମକ, ସହଯୋଗ ମୂଳକ ଏବଂ ଉଚ୍ଚପଦବୀ ଅନ୍ୱେଷଣଗତ ବ୍ୟବହାର ପୂର୍ବରୁ ସହଜାତ ଓ ଅପରିବର୍ତ୍ତନୀୟ ବୋଲି ବିଚାର କରାଯାଉଥିଲା । ମାତ୍ର ଏହା ଯେ ଭିନ୍ନ ସାମାଜିକ ପୃଷ୍ଠଭୂମିରେ ଭିନ୍ନ ରୂପ ନିଏ, ତାହା ମଧ୍ୟ ଗବେଷଣା ଲବ୍ଧ ଫଳ ହୋଇ ଉଠିଛି । ଉତ୍ତର ଆମେରିକାର ରେଡ୍‌ଇଣ୍ଡିଆନ ଭାରତୀୟ ସମାଜର ହୋପୀ ଓ କ୍ୱାକୁଟଲ୍ ଏହାର ଏକ ନିଦର୍ଶନ । କ୍ୱାକୁଟଲ୍ ଅଧିବାସୀମାନେ ବିଳାସର ପ୍ରାଚୁର୍ଯ୍ୟ ମଧ୍ୟରେ ବସବାସ

କଲେ ମଧ୍ୟ ଏମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଅତି ତୀବ୍ର ଓ ବ୍ୟାପକ । ଅଧିକ ଧ୍ୱଂସକାରୀ ବ୍ୟକ୍ତି ଅଧିକ ସମ୍ମାନିତ । ଅପମାନର ପ୍ରତିଶୋଧ ନେବା ଓ ଅବମାନନାଠାରୁ ଦୂରରେ ରହିବାର ନିଶା ଏମାନଙ୍କର ଖୁବ୍ ବେଶୀ । ଅନ୍ୟକ୍ଷେତ୍ରରେ ଅଧିବାସୀ ମାନଙ୍କ ପାଇଁ ଜୀବନ ହୋଇଛି ଏକ ପ୍ରତିଯୋଗିତାର ରଣାଙ୍ଗନ ।

ଏହାର ବିପରୀତ ସ୍ଥଳରେ ହୋପୀ ଅଧିବାସୀ ସହଯୋଗିତା, କର୍ମଠତା, ବିନମ୍ରତା ଓ ଆତ୍ମସଂଯମ ଏ ଜାତିର ସମ୍ମାନିତ ଗୁଣାବଳୀ । ଏପରିକି ନେତୃତ୍ୱ ନେବାକୁ ଇଚ୍ଛାପୋଷଣ କରୁଥିବା ବ୍ୟକ୍ତି ସ୍ଥଳ ବିଶେଷରେ ଉପହସିତ ମଧ୍ୟ ହୋଇଥାଏ । ଏପରି ଆମ ସମାଜରେ ବ୍ୟକ୍ତିଗତ ଉଦ୍ୟମ ଓ ପ୍ରତିଯୋଗିତା ଉପରେ ଆରୋପିତ ଗୁରୁତ୍ୱ ହୋପୀ ଭାରତୀୟ ପକ୍ଷେ ଅବୋଧ୍ୟ ।

ପ୍ରତିଯୋଗିତା-ସହଯୋଗିତା ପରି ଭାବାବେଗର ପରିପ୍ରକାଶର ବୈସାଦୃଶ୍ୟର ଅନୁଧ୍ୟାନର ସାମଗ୍ରୀ । ଦୁଃଖରେ କାନ୍ଦିବା ଓ ଆନନ୍ଦରେ ହସିବା ସାଧାରଣ କଥା ହେଲେ ବି ଏହାର ବ୍ୟତିକ୍ରମ ରହିଛି । ଅନେକ ଲୋକ ଆନନ୍ଦରେ ମଧ୍ୟ କ୍ରନ୍ଦନରତ । କେତେକ ଲୋକଙ୍କ ପାଇଁ କାନ୍ଦିବା ଏକ ଉତ୍ସବକାଳୀନ ଭାବଭଙ୍ଗୀ ।

ନବ ବିବାହିତ ଚୀନା-ବଧୂ ନିଜର ମାତୃ ବିୟୋଗରେ ଯେତିକି କାନ୍ଦେ, ନିଜର ଶାଶୁ ବିୟୋଗରେ ଅଧିକ କାନ୍ଦି ଥାଏ । ସ୍ଥୂଳତଃ ବିଭିନ୍ନ ସାମାଜିକ ମାଧ୍ୟମରେ ଭାବାବେଗ କିପରି ପ୍ରଭାବିତ ହୁଏ ଓ ଆଂଶିକ ଭାବେ ଏହା କିପରି ଶିକ୍ଷା କରାଯାଏ, ତାହା ଏହି ପ୍ରକାଶଗତ ବୈଚିତ୍ର୍ୟରୁ ଅବଧାରଣା କରିହୁଏ ।

କେବଳ ଗୋଷ୍ଠୀଗତ ବିଭିନ୍ନତା ପରିପ୍ରେକ୍ଷୀରେ ବ୍ୟକ୍ତିତ୍ୱର ତାରତମ୍ୟ ସାମାଜୀକରଣର ପରିଚାୟକ ନୁହେଁ । ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀରେ ସାମଞ୍ଜସ୍ୟ ମଧ୍ୟ ସାମାଜୀକରଣର ଅନ୍ୟ ଏକ ପରିପ୍ରକାଶ । ଜାପାନୀ ଚରିତ୍ରରେ ଆନୁଗତ୍ୟ, ଆଜ୍ଞାଧୀନତା, ଶୃଙ୍ଖଳା, ଅଭିଳାଷ ଅଧିକ ମାତ୍ରାରେ ପରିଦୃଷ୍ଟ । ସେହିପରି ଆଜ୍ଞାଧୀନତା, କର୍ତ୍ତୃପକ୍ଷଙ୍କ ପ୍ରତି ସମ୍ମାନବୋଧ ଓ ଶକ୍ତି, ପଦାଧିକାର ପାଇଁ ପ୍ରବଳ ଉଦ୍ୟମ ଜର୍ମାନୀମାନଙ୍କର ସତେ ଯେପରି ଅସ୍ଥିମଜ୍ଜାଗତ । ଜର୍ମାନୀ ଓ ଆମେରିକା ଯୁବକମାନଙ୍କର ଏକ ତୁଳନାତ୍ମକ ଗବେଷଣାରୁ ଦେଖାଗଲା ଯେ ଆମେରିକାବାସୀ ଅପେକ୍ଷା ଜର୍ମାନମାନେ ଆଜ୍ଞାଧୀନତା, ସମ୍ମାନ ଓ ଆନୁଗତ୍ୟ ଉପରେ ଅଧିକ ଗୁରୁତ୍ୱ ଆରୋପ କରନ୍ତି । ପ୍ରକାରାନ୍ତରେ ଜର୍ମାନୀମାନେ ସାଧାରଣ ଲୋକଙ୍କ ପ୍ରତି ଘୃଣା ଓ ସମ୍ମାନ ଉପରେ ଅଧିକ ଗୁରୁତ୍ୱ ଆରୋପ କରନ୍ତି ।

ଆବ୍ରାମ କାର୍ଡିନର ମଧ୍ୟ ଆନୁଷ୍ଠାନିକ ରୀତିନୀତି ଓ ମୌଳିକ ବ୍ୟକ୍ତିତ୍ୱ ଗଠନ ମଧ୍ୟରେ ସମ୍ପର୍କ ସୂଚାଇବାକୁ ପ୍ରୟାସ କରିଛନ୍ତି । ତାଙ୍କ ମତରେ କେତେକ ଭାବାବେଗର ଏକ ସମ୍ମିଳିତ ରୂପ କେବଳ କେତେକ ନିର୍ଦ୍ଦିଷ୍ଟ ଗୋଷ୍ଠୀରେ ପରିଦୃଷ୍ଟ ହୁଏ; ମାତ୍ର ଅନ୍ୟ

ଗୋଷ୍ଠୀରେ ନୁହେଁ । ଆଲେଖିକ୍ ମାନଙ୍କ ମଧ୍ୟରେ ବାଲ୍ୟକାଳରେ ମାତୃ ଅବହେଳାରୁ ସ୍ପଷ୍ଟ ଉଦ୍‌ବିଗ୍ନତା ଓ ଆକ୍ରମଣ ମନୋବୃତ୍ତି ଦେଖାଯାଏ । ଓଜିବ୍ୱା ସନ୍ତାନମାନଙ୍କର ପିତାମାତାଙ୍କ ଠାରେ ଦାବି ସାବ୍ୟସ୍ତ କରିବାର ସୁଯୋଗ ସୀମିତ । ଫଳରେ ପରେ ଅନ୍ୟମାନଙ୍କ ସହ ଭାବଗତ ସମ୍ପର୍କ ସ୍ଥାପନ କରିବା ଉଦ୍ୟମ ସେପରି ଦେଖା ଯାଏ ନାହିଁ । ମୋଟ ଉପରେ ସମାନ ପ୍ରକାର ସାଂସ୍କୃତିକ ପରିବେଶ ମଧ୍ୟରେ ବର୍ଦ୍ଧିତ ବ୍ୟକ୍ତି ମାନଙ୍କର ଏକ ନିର୍ଦ୍ଦିଷ୍ଟ ସାମଞ୍ଜସ୍ୟ ରହିଛି ।

## ସାମାଜିକ ଶକ୍ତି

ଆଜି ବିଶ୍ୱରେ ରିଚାର୍ଡ଼ ଆଟେନବର୍ଗଙ୍କ ପ୍ରଯୋଜିତ ଗାନ୍ଧୀ ଚଳଚ୍ଚିତ୍ର ଖ୍ୟାତି ବହୁ ଆଲୋଚିତ ଏକ ଛବିଳ ବାତାୟନ ପଥ ଦେଇ ଭାରତର ଇତିହାସକୁ ଦେଖିବାକୁ ଆଗ୍ରହୀ ବହୁ ମନକୁ ମୁଗ୍ଧ କରିଛି । ଇତିହାସର ଜଣେ ସ୍ରଷ୍ଟାଙ୍କ ଜୀବନାବୃତ୍ତି ଭାରତୀୟ ମନକୁ ଯେତିକି ଭାବାପ୍ଲୁତ କରିଛି, ବିଶ୍ୱଚେତନାକୁ ଯେତିକି ସ୍ପର୍ଶ କରିଛି । ତାତ୍ତ୍ୱିକ ଚିନ୍ତାଧାରା ଅପେକ୍ଷା ରକ୍ତ ମାଂସ ଶରୀରଧାରୀ ଜଣେ ମନୁଷ୍ୟର ଅଦମନୀୟ ମାନସିକ ଶକ୍ତି ଆମ ଆଗରେ ମୂର୍ତ୍ତିମନ୍ତ । ସେ ମାନସିକ ଶକ୍ତି କେବଳ ବ୍ୟକ୍ତି ମଧ୍ୟରେ ସୀମିତ ନୁହେଁ, ତାର ଉଚ୍ଛ୍ୱାସ ସମଗ୍ର ପୃଥିବୀରେ ପରିବ୍ୟାପ୍ତ । ସାମାଜିକ ବିବର୍ତ୍ତନରେ ସେ ଏକ ଅଖଣ୍ଡ ଉତ୍ସ ।

ଗାନ୍ଧୀ ଚଳଚ୍ଚିତ୍ର ଉପରୋକ୍ତ ଚିନ୍ତାଧାରାକୁ ଉଜ୍ଜୀବିତ କରିଥିଲେ ହେଁ, ତାହା ଏକ ନୂତନ ଉଦ୍‌ଘାଟିତ ସତ୍ୟ ନୁହେଁ । ଗାନ୍ଧୀଜୀଙ୍କ ମାନସିକ ଶକ୍ତି ଓ ତାହାର ସାମାଜିକ ପ୍ରଭାବ ଇତିହାସ ସ୍ୱୀକୃତ । ବିଶେଷତଃ ସାମାଜିକ ଶକ୍ତିର ତାହା ଏକ ଜ୍ୱଳନ୍ତ ଉଦାହରଣ । କୌଣସି ବ୍ୟକ୍ତିଦ୍ୱାରା ଅନ୍ୟବ୍ୟକ୍ତି ବା ଗୋଷ୍ଠୀର ବିଶ୍ୱାସ, ମନୋବୃତ୍ତି, ଚିନ୍ତାଧାରା ଓ କାର୍ଯ୍ୟକଳାପରେ ପରିବର୍ତ୍ତନ ଆସିଲେ ତାହାକୁ ସାମାଜିକ ଶକ୍ତି କୁହାଯାଏ । ସମାଜ-ବିଜ୍ଞାନୀ ଓ ମନୋବିଜ୍ଞାନୀମାନେ ସାମାଜିକ ଶକ୍ତିର ଉଦାହରଣ ଦେବାକୁ ଗଲାବେଳେ ପ୍ରଥମ ଉଦାହରଣଟି ଦିଅନ୍ତି ଗାନ୍ଧୀଜୀଙ୍କ ଲବଣ ସତ୍ୟାଗ୍ରହ ଓ ଦାଣ୍ଡି ଯାତ୍ରା । ଏହି ସତ୍ୟାଗ୍ରହ ଫଳରେ ଲକ୍ଷ ଲକ୍ଷ ଲୋକଙ୍କ ଚିନ୍ତାଧାରା ଓ କାର୍ଯ୍ୟରେ ଯେଉଁ ପରିବର୍ତ୍ତନ ଦେଖାଗଲା, ତାହା ସାମାଜିକ ଶକ୍ତିର ଏକ ସୁସ୍ପଷ୍ଟ ପରିପ୍ରକାଶ । ଗାନ୍ଧୀଙ୍କର ଏହି ସାମାଜିକ ଶକ୍ତିର ଉତ୍ସ ଅନନ୍ୟସାଧାରଣ । ଏହାର ଅର୍ଥ ନୁହେଁ ଯେ, ସାମାଜିକ ଶକ୍ତି ସବୁବେଳେ

ଅସାଧାରଣ ରୂପ ନିଏ । ସାଧାରଣ ଲୋକେ ଅନ୍ୟଲୋକର ବ୍ୟବହାରରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟାକଲେ ଏବଂ ନିଜର ମନ ମୁତାବକ କାମ କରାଇନେବାକୁ ଇଚ୍ଛା କଲେ ଏହି ଅସ୍ତ୍ର ଗୁଡ଼ିକ ବ୍ୟବହାର କରନ୍ତି । ଆମର ଦୈନନ୍ଦିନ ଜୀବନରେ ସାମାଜିକ ଶକ୍ତିର ଉପଯୋଗ ଏକ ବିରାଟ ବାସ୍ତବତା । ସୁତରାଂ ସାମାଜିକ ଶକ୍ତିର ଅସ୍ତ୍ର ଓ ତାହାର କାର୍ଯ୍ୟକାରିତା ବିଷୟରେ ସମ୍ୟକ ଜ୍ଞାନ ବିଶେଷ ପ୍ରୟୋଜନ । ଯେଉଁ ବ୍ୟକ୍ତି ନିଜର ସାମାଜିକ ଶକ୍ତି ପ୍ରୟୋଗ କରି ନିଜର ବିଶ୍ୱାସ ମନୋବୃତ୍ତି, ଅନୁଭୂତି ଓ କାର୍ଯ୍ୟରେ ପରିବର୍ତ୍ତନ ଆଣନ୍ତି, ତାଙ୍କୁ ପ୍ରଭାବକାରୀ କୁହାଯାଇ ପାରେ ।

ଅନ୍ୟକୁ ପ୍ରଭାବିତ କରିବାର ଏକ ସୁପରିଚିତ ଓ ସୁବ୍ୟବହୃତ ସାମାଜିକ ଶକ୍ତି ହେଉଛି ତଥ୍ୟ ପ୍ରଦାନ । ଶିକ୍ଷକ ଏକ ନିର୍ଦ୍ଦିଷ୍ଟ ଗାଣିତିକ ଧାରା ବୁଝାଇ ଦେଇ ଛାତ୍ରର ବ୍ୟବହାରରେ ପରିବର୍ତ୍ତନ ଆଣନ୍ତି । ଛାତ୍ରଟି ବୁଝେ ଯେ ଶିକ୍ଷାକୃତ ଧାରାଟି ଖୁବ୍ ଉପାଦେୟ ଏବଂ ଏହାଦ୍ୱାରା ଅନେକ ଗୁଡ଼ିଏ ଗାଣିତ ପ୍ରଶ୍ନର ସମାଧାନ ସହଜ । ବିକ୍ରୟକାରୀ ଏକ ନିର୍ଦ୍ଦିଷ୍ଟ ଜିନିଷ (ଯଥା ସିଲାଇମେସିନ୍)ର କାର୍ଯ୍ୟକାରିତା ବୁଝାଇ ଦେଇ କ୍ରେତାର ବ୍ୟବହାରରେ ପରିବର୍ତ୍ତନ ଆଣନ୍ତି । ବୁଝାଇ ସୁଝାଇ ଯେଉଁ ପରିବର୍ତ୍ତନ ଅଣାଯାଏ, ତାହା ବହୁଦିନ ସ୍ଥାୟୀ ହୁଏ । ଜୀବନର ବହୁ କ୍ଷେତ୍ରରେ ଆମେ ଏ ସାମାଜିକ ଶକ୍ତି ବ୍ୟବହାର କରିଥାଉ । ଅସୁବିଧାରେ ପଡ଼ି କୌଣସି ଦୋଷ କଲେ ଯେଉଁ ପରିସ୍ଥିତିରେ ପଡ଼ି ଏପରି ତ୍ରୁଟି ହୋଇଛି, ତାହା ବୁଝାଇବାକୁ ଚେଷ୍ଟା କରି ଆମେ ଉପରିସ୍ଥ କର୍ମଚାରୀଙ୍କ ଠାରୁ କ୍ଷମା ପାଇବାକୁ ଚେଷ୍ଟାକରୁ । ଏପରି ସାମାଜିକ ଶକ୍ତିର ପ୍ରୟୋଗ ବହୁଳ । ମାତ୍ର ବହୁ ସ୍ଥଳରେ ଏହାଦ୍ୱାରା ପରିବର୍ତ୍ତନ ଆଣିବା ସମ୍ଭବ ହୁଏନାହିଁ । ତଥାପି ଯେଉଁ ସ୍ଥାନରେ ପରିବର୍ତ୍ତନ ଆସେ, ତାହା ଦୀର୍ଘଦିନ ସ୍ଥାୟୀ ହୁଏ । ଗୋଷ୍ଠୀ ସ୍ତରରେ ଭାଷଣ ଓ ଦଳଗତ ଅଭିଯାନ ପ୍ରଭୃତି ମାଧ୍ୟମରେ ଏହାର ପ୍ରୟୋଗ କରାଯାଇପାରେ । ଜାତି ପ୍ରଥା, ଯୌତୁକ ବ୍ୟାଧି ଓ ସାମ୍ପ୍ରଦାୟିକତା ପ୍ରଭୃତି କ୍ଷେତ୍ରରେ ଲୋକମାନଙ୍କର ଅବାଞ୍ଛନୀୟ ବ୍ୟବହାରର ବିଲୋପ ପାଇଁ ଏ ମାଧ୍ୟମର ବ୍ୟବହାର ହୁଏ ।

ଅନ୍ୟକୁ ପ୍ରଭାବିତ କରିବାର ଅନ୍ୟ ଏକ ବିଶିଷ୍ଟ ମାଧ୍ୟମ ହେଉଛି ପୁରସ୍କାର ଓ ତିରସ୍କାରର ବ୍ୟବହାର । ଟେଲିଭିଜନ ଦେଖି ଅଧିକ ସମୟ ନଷ୍ଟ କରୁଥିବା ପିଲାକୁ ଭଲ ପଢ଼ିବାକୁ ପରାମର୍ଶ ଦେଇ ବାପ ମା' କହିପାରନ୍ତି ଯେ, ପିଲାଟି ଭଲ ପଢ଼ିଲେ ତାକୁ ଗୋଟିଏ ରେଡ଼ିଓ ଦିଆଯିବ । ଶ୍ରମିକର କାମ କରିବାର ସ୍ପୃହା ବଢ଼ାଇବାକୁ ଅଫିସର କହି ପାରନ୍ତି ଯେ, ସେ ଭଲ କାମ କଲେ ତାକୁ ପଦୋନ୍ନତି ଦିଆଯିବ । ତିରସ୍କାର ଦେବାକୁ ହେଲେ ଶ୍ରମିକକୁ କୁହାଯାଏ ଯେ, ସେ ଭଲ କାମ ନ କଲେ ତାକୁ ଆଦୌ ପଦୋନ୍ନତି ଦିଆଯିବ ନାହିଁ । ବହୁ ଉପାୟରେ ବ୍ୟକ୍ତିକୁ ପ୍ରୋତ୍ସାହନ ଦିଆଯାଇ ପାରେ । କେବଳ ବସ୍ତୁଗତ ଲାଭ ନୁହେଁ; ସ୍ନେହ ଶ୍ରଦ୍ଧା, ସମ୍ମାନ ଓ ପ୍ରଶଂସା ଦ୍ୱାରା ବ୍ୟକ୍ତିକୁ ନିଜ

ପ୍ରଭାବ ମଧ୍ୟକୁ ଅଣାଯାଇଥାଏ । ପରୋକ୍ଷରେ ଶାସ୍ତି ବିଧାନ କ୍ଷେତ୍ରରେ ନିନ୍ଦା, ଅବଜ୍ଞା ପ୍ରଦର୍ଶନ ଓ ଅପମାନ ଦ୍ୱାରା ବ୍ୟକ୍ତିକୁ ପ୍ରଭାବିତ କରାଯାଇପାରେ । କିନ୍ତୁ ଉଚ୍ଚାର କ୍ଷେତ୍ରରେ ଏକ ବିପଦ ମଧ୍ୟ ରହିଛି । ଅଫିସର ଅଧସ୍ତନ କର୍ମଚାରୀଙ୍କୁ ଉଚ୍ଚାର ଦେଇ ତା'ର କାର୍ଯ୍ୟନିଷ୍ଠତା ବଢ଼ାଇବାକୁ ଚେଷ୍ଟା କଲେ ବେଳେ ବେଳେ ତାହା ସଫଳ ହୁଏ । କେତେକ ସ୍ଥଳରେ କର୍ମଚାରୀ ବି ହତୋତ୍ସାହ ହୋଇ ସେ ଅଫିସ ଛାଡ଼ି ଚାଲି ଯାଇ-ପାରେ ।

ସାମାଜିକ ପ୍ରଭାବର ଅନ୍ୟ ଏକ ଉତ୍ସ ହେଉଛି ବିଶେଷ ଜ୍ଞାନ । କୌଣସି ବିଶେଷଜ୍ଞ ତାଙ୍କ ନିଜ କାର୍ଯ୍ୟଧାରା ସମ୍ପୃକ୍ତ କୌଣସି ବିଷୟରେ ଉପଦେଶ ଦେଲେ ତାହା ସାମାଜିକ ଶକ୍ତି ରୂପେ କାମ କରେ ଏବଂ ଅନ୍ୟମାନେ ପ୍ରଭାବିତ ହୁଅନ୍ତି । କୌଣସି ରୋଗର ପ୍ରାଦୁର୍ଭାବ ସମୟରେ ଖ୍ୟାତନାମା ବୈଜ୍ଞାନିକ ଓ ଚିକିତ୍ସକଙ୍କ ଉପଦେଶ ବହୁ ଲୋକଙ୍କୁ ପ୍ରଭାବିତ କରେ । ଜଣେ ଅଧ୍ୟାପକ ଏ କଥା କହୁଛନ୍ତି ଜାଣି ଛାତ୍ରମାନେ କେତେକ ଜିନିଷ ଗ୍ରହଣ କରନ୍ତି ଏବଂ ନିଜ ବିଶ୍ୱାସ, ଚିନ୍ତାଧାରା ଓ ବ୍ୟବହାରରେ ପରିବର୍ତ୍ତନ ଆଣନ୍ତି । ଉପଦେଷ୍ଟାଙ୍କ ପ୍ରତି ଯେତେ ବେଶି ଆସ୍ଥା ଓ ସମ୍ମାନ ଥାଏ, ସେତେ ବେଶି ପରିବର୍ତ୍ତନ ଆସିଥାଏ ।

ଅନ୍ୟ ସହିତ ନିଜର ଆତ୍ମୀକରଣ ଦର୍ଶାଇ ଅନ୍ୟ ବ୍ୟବହାରରେ ପରିବର୍ତ୍ତନ ଅଣାଯାଇ ପାରେ । ବିଦେଶରେ ଦୁଇଜଣ ଭାରତୀୟଙ୍କ ଦେଖା ହେଲେ ଜଣେ ଭାରତୀୟ ଅନ୍ୟଜଣଙ୍କ ପାଖରେ ତାଙ୍କ ଭାରତୀୟତାର ନଜିର ଦେଇ ପ୍ରଭାବ ବିସ୍ତାର କରନ୍ତି । ଜଣେ ରାଜନୀତିଜ୍ଞ ସଭା ମଞ୍ଚରେ ସେ ମଧ୍ୟ ଉପସ୍ଥିତ ବ୍ୟକ୍ତିମାନଙ୍କ ପରି ଦଳିତ, ନିର୍ଯ୍ୟାତିତ ବୋଲି କହି ଉପସ୍ଥିତ ବ୍ୟକ୍ତିଙ୍କ ସହଯୋଗର ଆଶା ରଖନ୍ତି । ରାଜ୍ୟ ବାହାରେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେଇ ଅନ୍ୟ ଓଡ଼ିଆ ଠାରୁ ସାହାଯ୍ୟ ପ୍ରାପ୍ତିର ଆଶା କରାଯାଏ । ବିଭିନ୍ନ କ୍ଷେତ୍ରରେ ଏପରି ସାମାଜିକ ଶକ୍ତିର ବହୁଳ ପ୍ରୟୋଗ କରାଯାଏ ।

ସାମାଜିକ ଶକ୍ତିର ଶେଷ ଉତ୍ସଟି ହେଉଛି ଯୌକ୍ତିକ ଶକ୍ତି । ଅଧସ୍ତନ କର୍ମଚାରୀ ନିଜେ ଉପରସ୍ଥ କର୍ମଚାରୀଙ୍କ ଆଦେଶ ଶୁଣିବା କଥା ବୋଲି ବିଚାର କରି ନିଜ ଚିନ୍ତା ଓ କାର୍ଯ୍ୟରେ ପରିବର୍ତ୍ତନ ଆଣନ୍ତି । ମୋର ଏପରି କରିବା କଥା—ଏ ଭାବନାରେ ପ୍ରଭାବିତ ହୋଇ ବ୍ୟକ୍ତି ପରିବର୍ତ୍ତନ ସୃଷ୍ଟି । ଅନେକ ସମୟରେ ସ୍ତ୍ରୀ ସ୍ୱାମୀଙ୍କର କଥା ମାନିବା ଉଚିତ ବୋଲି ବିଚାର କରି ନିଜର ବ୍ୟବହାରରେ ପରିବର୍ତ୍ତନ ଆଣନ୍ତି । ଅନ୍ୟ ଭାଷାରେ କହିଲେ ବ୍ୟକ୍ତି ନିଜର ପଦବୀ ଫଳରେ ଅନ୍ୟଠାରେ ବେଳେବେଳେ ପରିବର୍ତ୍ତନ ଆଣିପାରେ ।

ଉପରୋକ୍ତ ଭିତ୍ତିଗୁଡ଼ିକ ସାମାଜିକ ଶକ୍ତିର ପ୍ରକୃତ ଉତ୍ସ । କେଉଁ ସ୍ଥଳରେ କେଉଁ ପ୍ରକାର ସାମାଜିକ ଶକ୍ତିଟି ସର୍ବାପେକ୍ଷା ଅଧିକ ପ୍ରଭାବଶାଳୀ ହେବ, ତାହା ସଂକ୍ଷେପରେ କହିବା ଖୁବ୍ କଷ୍ଟ । ପରିସ୍ଥିତି ଓ ସମ୍ପୃକ୍ତ ବ୍ୟକ୍ତି ବିଶେଷଙ୍କ ଉପରେ ନିର୍ଭର କରେ

ଏଗୁଡ଼ିକର ପ୍ରଭାବରେ ଭିନ୍ନତା ଦେଖାଯାଏ । ଗବେଷଣାରୁ ଦେଖାଯାଇଛି ଯେ ପରିବାର ମଧ୍ୟରେ ଦାମ୍ପତ୍ୟ ସମ୍ପର୍କ କ୍ଷେତ୍ରରେ ଆତ୍ମୀକରଣ ଓ ପୁରସ୍କାର ଉତ୍ସ ସର୍ବାଧିକ ପ୍ରଭାବଶୀଳ; ଅର୍ଥାତ୍ ସ୍ୱାମୀ ସ୍ତ୍ରୀର କଥାକୁ ମାନି ନେଉଥିଲେ ବା ସ୍ତ୍ରୀ ସ୍ୱାମୀର କଥା ମାନି ନେଉଥିଲେ ସେମାନେ ଉଭୟେ ଉଭୟଙ୍କୁ ମାନି ନେବା ମୂଳରେ ମୁଖ୍ୟ ବିଶ୍ୱାସ ଥାଏ ଯେ, ସେମାନେ ଏକ ପରିବାରର ଅଂଶବିଶେଷ । ସୁତରାଂ ଜଣେ ଅନ୍ୟର ନିଷ୍ପତ୍ତିକୁ ସମ୍ମାନ ଦେବା ଉଚିତ । ତିରସ୍କାର କରି ଅନ୍ୟକୁ ମନେଇବାଟି ସବୁଠାରୁ କମ୍ ପ୍ରଭାବଶାଳୀ । ଦାମ୍ପତ୍ୟ ଶକ୍ତିର ଅନ୍ୟ ଏକ ଦିଗ ହେଉଛି ଯେ ସାମାଜିକ ଶକ୍ତି ପ୍ରୟୋଗର କ୍ଷେତ୍ର । କେଉଁ ପ୍ରକାର ଗାଡ଼ି କଣାଯିବ, ତା'ର ନିଷ୍ପତ୍ତି ନେବାକୁ ଥିଲେ ସ୍ୱାମୀର ସାମାଜିକ ଶକ୍ତି ସ୍ତ୍ରୀ ଠାରୁ ବେଶୀ ଥାଇପାରେ । କେବଳ ଦାମ୍ପତ୍ୟ ଜୀବନରେ ନୁହେଁ, ଜୀବନର ପ୍ରତି କ୍ଷେତ୍ରରେ ପରିସ୍ଥିତିର ସ୍ୱାତନ୍ତ୍ର୍ୟ ସ୍ଥିର କରେ କେଉଁ ପ୍ରକାର ସାମାଜିକ ଶକ୍ତିର ପ୍ରୟୋଗ ସର୍ବାପେକ୍ଷା ଅଧିକ ପ୍ରଭାବଶାଳୀ ହେବ ।

ଆଲୋଚିତ ଉତ୍ସଗୁଡ଼ିକ ଦୃଷ୍ଟିରେ ରଖି ବିଜ୍ଞତାର ସହିତ ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ସାମାଜିକ ଶକ୍ତିର ପ୍ରୟୋଗ କରିବା ବୁଦ୍ଧିମାନର କାର୍ଯ୍ୟ ।

## ସାମାଜିକ ପ୍ରଗତି

ସାମାଜିକ ପ୍ରଗତି ସମସ୍ତଙ୍କର କାମ୍ୟ । ନିଜର ଗୋଷ୍ଠୀ ବା ସମାଜ ଉନ୍ନତ ହେଉ, ଏଥିର ଲୋକମାନେ ସୁଖସ୍ୱାଚ୍ଛନ୍ଦ୍ୟରେ କାଳଯାପନ କରନ୍ତୁ ଏବଂ ଏହା ଅନ୍ୟ ଗୋଷ୍ଠୀମାନଙ୍କର ଅନୁକରଣୀୟ ହେଉ, ଏହା ସମସ୍ତେ ଚାହାନ୍ତି । ଏପରି ମହତ ଇଚ୍ଛା ସବୁବେଳେ ସଫଳ ହୁଏ ନାହିଁ । ଅନେକ ସ୍ଥଳରେ ପ୍ରାକୃତିକ ସମ୍ପଦର ଅଭାବ, ଜନସଂଖ୍ୟାର ଚାପ ଓ ପ୍ରାକୃତିକ ଦୁର୍ବିପାକ ସାମାଜିକ ପ୍ରଗତିକୁ ବାଧାଦିଏ । କିନ୍ତୁ ଏଗୁଡ଼ିକ ବ୍ୟତୀତ ସମାଜରେ ବସବାସ କରୁଥିବା ଲୋକମାନଙ୍କର କେତେକ ବୈଶିଷ୍ଟ୍ୟ ସାମାଜିକ ପ୍ରଗତି ଉପରେ ପ୍ରଭାବ ପକାଏ । ଆମର ପରିପାର୍ଶ୍ୱରେ ଆମେ ଦେଖୁଥିବା କେତେକ ଲୋକ ପରିଶ୍ରମୀ ଓ ଲକ୍ଷ୍ୟ ସାଧନ ପାଇଁ ତତ୍ପର । ପୁଣି ଅନ୍ୟ କେତେକ ଲୋକ ପରିଶ୍ରମକାତର ଓ ଲକ୍ଷ୍ୟହୀନ । କହିବା ଅନାବଶ୍ୟକ ଯେ ସମାଜରେ ପରିଶ୍ରମୀ ଓ ଲକ୍ଷ୍ୟ ସାଧନମୁଖୀ ଲୋକଙ୍କର ବହୁଳତା ସେ ସମାଜର ପ୍ରଗତିକୁ ତ୍ୱରାନ୍ୱିତ କରିଥାଏ ।

ଲକ୍ଷ୍ୟ ସାଧନମୁଖୀ ବ୍ୟକ୍ତିବିଶେଷ ହଠାତ୍ ତିଆରି ହୁଅନ୍ତି ନାହିଁ । ଏଥିପାଇଁ ଏକ ଅନୁକୂଳ ପରିବେଶ ଓ ଯୋଜନାବଦ୍ଧ ଉଦ୍ୟମ ଦରକାର । ବିଶେଷ କରି ଏପରି

ମନୋବୃତ୍ତିର ଜନ୍ମ ଅଳ୍ପ ବୟସରୁ ହେଲେ ଭବିଷ୍ୟତ ଜୀବନରେ ତା'ର ବିକାଶ ଘଟି ବ୍ୟକ୍ତିଗତ ଓ ସାମାଜିକ ଜୀବନ ତୁର୍ଦ୍ଧିମନ୍ତ ହୁଏ । ଅନ୍ୟ ଭାବରେ କହିଲେ ଲକ୍ଷ୍ୟ ସାଧନ ପାଇଁ ଦୃଢ଼ ମନୋଭାବ ବିକାଶର ପ୍ରକୃତ ସମୟ ହେଉଛି ବାଲ୍ୟକାଳ । ୧୯୨୦ ମସିହାରୁ ୧୯୨୯ ମସିହା ମଧ୍ୟରେ ୨୨ଟି ଦେଶରେ ପିଲାମାନଙ୍କର ଲକ୍ଷ୍ୟ ସାଧନମୁଖୀ ମନୋବୃତ୍ତିର ମାପ କରାଗଲା । ଦେଖାଗଲା ଯେ ଯେଉଁ ଦେଶରେ ଲକ୍ଷ୍ୟ ସାଧନମୁଖୀ ପିଲା ଅଧିକ ଅଛନ୍ତି, ସେ ଦେଶରେ ୧୯୨୯ ରୁ ୧୯୫୦ ମସିହା ମଧ୍ୟରେ ପ୍ରଭୂତ ଅର୍ଥନୈତିକ ବିକାଶ ଘଟିଛି । ଦେଶର ଅର୍ଥନୈତିକ ସ୍ୱଚ୍ଛଳତା ସହିତ ସେ ଦେଶର ସାଧନମୁଖୀ ମନୋଭାବର ଦୃଢ଼ତା ବିଶେଷ ଭାବରେ ଜଡ଼ିତ ।

ସାମାଜିକ ପ୍ରଗତିରେ ପିଲାମାନଙ୍କର ସାଧନମୁଖୀ ମନୋଭାବର ଗୁରୁତ୍ୱ ଦୃଷ୍ଟିରୁ ଆମ ଆଗରେ ଏକ ବିରାଟ ପ୍ରଶ୍ନ ହେଉଛି କି ପ୍ରକାର ଲାଳନ ପାଳନ ପିଲାମାନଙ୍କର ଏ ପ୍ରକାର ମନୋଭାବ ବିକାଶରେ ସାହାଯ୍ୟ କରେ । ଏହାର ଉତ୍ତର ପାଇଁ ଗତ ତିରିଶ ବର୍ଷ ମଧ୍ୟରେ ମନୋବିଜ୍ଞାନୀମାନେ ବହୁ ଉଦ୍ୟମ କରିଛନ୍ତି । ପୃଥିବୀର ବିଭିନ୍ନ ସ୍ଥାନରେ ପିଲାମାନଙ୍କର ଲାଳନ ପାଳନ ଭଙ୍ଗୀ ଓ ଅନ୍ୟାନ୍ୟ ବିକାଶର ପର୍ଯ୍ୟବେକ୍ଷଣ ଏବଂ ଅନୁଷଙ୍ଗିକ ଗବେଷଣାରୁ ତିନୋଟି ଅବସ୍ଥାର ଗୁରୁତ୍ୱ ସୂଚିତ ହୁଏ ।

## ସ୍ୱାଧୀନତାମୁଖୀ ଶିକ୍ଷା—

ପିଲାମାନଙ୍କ ମନରେ ଲକ୍ଷ୍ୟ ସାଧନର ତୀବ୍ର ଇଚ୍ଛା ଅଙ୍କୁରିତ ହୁଏ ପିତାମାତାଙ୍କ ଲାଳନ ପାଳନ ମଧ୍ୟରେ । ସବୁଠାରୁ ବେଶି ପ୍ରଭାବ ପକାଏ ପିଲାଟିକୁ ସ୍ୱାଧୀନତା ଶିକ୍ଷା ଦେବାରେ । ଅନେକ ପିତାମାତା ଅଛନ୍ତି, ଯେଉଁମାନେ ନିଜର ସନ୍ତାନ ସନ୍ତତିମାନଙ୍କୁ କୌଣସି ପ୍ରକାର ସ୍ୱାଧୀନତା ଦେବାକୁ ନାରାଜ । ପିଲାଟି କେଉଁ ପ୍ରକାର ଖାଦ୍ୟ ଖାଇବ ତାହା ନିଷ୍ପତ୍ତି କରିବାଠାରୁ ଆରମ୍ଭ କରି ସେ ବଡ଼ ହେଲେ କଲେଜରେ ବିଜ୍ଞାନ ଶ୍ରେଣୀରେ ଭର୍ତ୍ତି ହେବ କି କଳା ଶ୍ରେଣୀରେ ଭର୍ତ୍ତି ହେବ ତାହାର ନିଷ୍ପତ୍ତି ନିଅନ୍ତି । ସ୍ୱାଧୀନ ଭାବରେ ପିଲାଟି କିଛି କାମ କରିବାକୁ ଗଲେ ତାକୁ ନିରୁତ୍ସାହିତ କରନ୍ତି । ଏପରି ପିଲାମାନେ ବଡ଼ହେବା ଯାଏ ନିଜ ହାତରେ ଖାଇ ଶିଖି ନ ଥାନ୍ତି କି ଏକୁଟିଆ ଦୂର ଜାଗାକୁ ଯାଆନ୍ତି ନାହିଁ । ପକ୍ଷାନ୍ତରରେ ଲକ୍ଷ୍ୟ ସାଧନମୁଖୀ ପିଲାମାନଙ୍କର ଲାଳନ ପାଳନ ଭଙ୍ଗୀ ଭିନ୍ନ ଧରଣର । ବାପ ମା ସେମାନଙ୍କୁ ସ୍ୱାଧୀନ ଭାବରେ କିଛି କିଛି କରିବା ପାଇଁ ଅନୁମତି ଦିଅନ୍ତି, ସୁଯୋଗ ଦିଅନ୍ତି ଓ ଉତ୍ସାହିତ କରନ୍ତି ।

ପିଲାକୁ ସ୍ୱାଧୀନମୁଖୀ ଶିକ୍ଷା ଦେବାରେ ମା'ର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ । ପିଲାବେଳେ ମା' ସହିତ ସମ୍ପର୍କ ଅଧିକ ଏବଂ ନିବିଡ଼ । ଏ ସମୟରେ ମା' ଯେଉଁ ପ୍ରକାର ଶିକ୍ଷା ଦିଏ, ତାହା ପିଲା ମନରେ ଅଧିକ ଛାପ ପକାଏ । ପିଲାର ମା' ତାକୁ ସ୍ୱାଧୀନ ମନୋବୃତ୍ତି ପାଇଁ ଉତ୍ସାହ ଦେଲେ ପିଲାଟିର ମନୋଭାବ ସାଧନମୁଖୀ ହୁଏ ଏବଂ ତା'ର

ମାନସିକ ପ୍ରବୃତ୍ତି ଯେ ଢଙ୍ଗରେ ବୃଦ୍ଧିପାଏ । କେତୋଟି ସରଳ ପ୍ରଶ୍ନ ପଚାରି ମା'ମାନେ ସେମାନଙ୍କର ସନ୍ତାନ ସନ୍ତତିମାନଙ୍କୁ ସ୍ୱାଧୀନତା ଶିକ୍ଷା ଦେଉଛନ୍ତି କି ନାହିଁ ତାହା ଜାଣି-ହେବ । ଉଦାହରଣ ସ୍ୱରୂପ ମାଆ ମାନଙ୍କୁ ପଚରା ଯାଇପାରେ ପିଲାର କେଉଁ ବୟସରେ ସେମାନେ ତାକୁ ରାସ୍ତା ପାର ହେବାକୁ ଅନୁମତି ଦେବେ ? ସେହିପରି ପଚରା ଯାଇ-ପାରେ ଯେ ପିଲାର କେଉଁ ବୟସରେ ସେମାନେ ତାକୁ ବର୍ଷାରେ ଖେଳିବାକୁ ମନା କରିବେ ନାହିଁ । ଏ ଧରଣର ସଂଖ୍ୟାଧିକ ପ୍ରଶ୍ନ ପଚରା ଯାଇପାରେ । ସ୍ୱାଧୀନ କାର୍ଯ୍ୟ ଓ ଚିନ୍ତାକୁ ଉତ୍ସାହ ଦେଉଥିବା ମାଆମାନେ କମ୍ ବୟସ ପିଲାର ଅଳ୍ପବୟସରେ ତାକୁ ଏ ସବୁ କାର୍ଯ୍ୟ କରିବାକୁ ସୁଯୋଗ ଦିଅନ୍ତି । ଏଥିରୁ ବୁଝିବାକୁ ହେବନାହିଁ ଯେ ଲକ୍ଷ୍ୟ ସାଧନମୁଖୀ ପିଲା ଗଠନରେ ଅଂଶୀଦାର ମାଆମାନେ କଠୋର ଏବଂ ହୃଦୟଶୂନ୍ୟ; ବରଂ ଏମାନଙ୍କ ହୃଦୟରେ ସନ୍ତାନ ସନ୍ତତି ପ୍ରତି ଅଫୁରନ୍ତ ସ୍ନେହ ଥାଏ । କିନ୍ତୁ ସେ ସ୍ନେହର ପ୍ରାବଲ୍ୟ ଶିଶୁର ସ୍ୱାଧୀନ କାର୍ଯ୍ୟକୁ ପଣ୍ଡ କରି ତାକୁ ଏକ ପୂରାପୂରି ନିର୍ଭରଶୀଳ ଶିଶୁ କରିଦିଏ ନାହିଁ ।

ସ୍ୱାଧୀନତା ଶିକ୍ଷାର ଅନ୍ୟ ଏକ ଦିଗ ହେଉଛି ଗଣତାନ୍ତ୍ରିକ ମୂଲ୍ୟବୋଧ । ଗଣ-ତାନ୍ତ୍ରିକ ଭାବସମ୍ପନ୍ନ ବାପ ମା' ସାଧାରଣତଃ ପିଲାକୁ ତା' କାମରେ ଉପଦେଶ ଦେଲା-ବେଳେ ବୁଝାଇ ଦିଅନ୍ତି । ପିଲାର କିଛି କିଛି ମତ ଗ୍ରହଣ କରନ୍ତି ଏବଂ ଅତିବେଶି ହସ୍ତକ୍ଷେପ କରନ୍ତି ନାହିଁ । ଏପରି ସୁପରିଚାଳନା ଫଳରେ ସେମାନଙ୍କର ସନ୍ତାନ ସନ୍ତତି ସ୍ୱାଧୀନ ଚେତା ଓ ଲକ୍ଷ୍ୟ ସାଧନମୁଖୀ ହୁଅନ୍ତି । ଅପର ପକ୍ଷରେ କେତେକ ପିତାମାତା ଖୁବ୍ ସ୍ୱେଚ୍ଛାଚାରୀ ହୋଇ ନିଜର ଉପଦେଶ ପିଲା ଉପରେ ଲଦି ଦିଅନ୍ତି । ପ୍ରତି ପଦକ୍ଷେପରେ 'ଏହା କର' ଓ 'ଏହା କର ନାହିଁ' ବୋଲି କହୁଥା'ନ୍ତି । ପିଲାଟି ଠିକ୍ ଏ ଅଲଗା ପ୍ରକାର କଲେ ରାଗିଯାଆନ୍ତି । ଏପରି ଲାଳନ ପାଳନ ପରିପ୍ରେକ୍ଷୀରେ ପିଲାମାନେ ସ୍ୱାଧୀନମୁଖୀ ମନୋଭାବ ହରାଇ ବସିବା ସ୍ୱାଭାବିକ ।

## ପାରିବାରିକ ଉତ୍ସାହ :

ସାଧନମୁଖୀ ମନୋଭାବ ଗଠନର ଅନ୍ୟ ଏକ ପୃଷ୍ଠଭୂମି ହେଉଛି ପାରିବାରିକ ଉତ୍ସାହ । ଶିଶୁଟିକୁ ସ୍ୱାଧୀନ କାମ କରିବାକୁ ସୁଯୋଗ ଦେବା ସଙ୍ଗେ ସଙ୍ଗେ ତାର ଲକ୍ଷ୍ୟ-ସାଧନ ପାଇଁ ସେ ପୁରସ୍କୃତ ହେବା ଉଚିତ । ପିଲାଟି ଅନେକ କାମ କରେ । ସ୍ୱାଧୀନ ଭାବରେ କିଛି କରିବା ମାତ୍ରେ ପିତାମାତା,ଅଭିଭାବକ,ଶିକ୍ଷକ ଓ ତା'ର ପରିପାର୍ଶ୍ୱରେ ଥିବା ବ୍ୟକ୍ତି-ବିଶେଷ ତାକୁ ପ୍ରଶଂସା କରିବା ବାଞ୍ଛନୀୟ । ପ୍ରଶଂସା କରିବା ସଙ୍ଗେ ସଙ୍ଗେ କିଛି ପ୍ରିୟ ଜିନିଷ ଦେଇ ପିଲାଟିକୁ ଅଧିକ ଖୁସି କରାଯାଇପାରେ । ସ୍ଥୂଳତଃ ପିଲାଟିର କୃତିତ୍ୱକୁ ଚିହ୍ନଟ କରିବା ଏବଂ ପ୍ରଶଂସା କରିବା ଲାଳନ ପାଳନର ଏକ ବିଶିଷ୍ଟ ଦିଗ ।

ପିଲାଟି କୌଣସି କାର୍ଯ୍ୟରେ ସଫଳତା ଦେଖାଇବା ସଙ୍ଗେ ସଙ୍ଗେ ତାକୁ ପୁରସ୍କାର ଦେବା ଆବଶ୍ୟକ । ପିଲାଟିର ସଫଳତା ବାପା ମା'ଙ୍କ ଆଖିରେ ପଡ଼ୁଛି, ଏ ଧାରଣା ପିଲାଟିକୁ ଦେବାକୁ ହେବ । ପିତାମାତା ଏଥିରେ ଖୁସି, ତାହା ବୁଝାଇବାକୁ ହେବ । ସର୍ବୋପରି ସ୍ନେହପୂର୍ଣ୍ଣ ଭଙ୍ଗୀରେ ପିଲାଟିକୁ ପୁରସ୍କୃତ କରିବାକୁ ହେବ । ମା' ନିଜେ ଆଲିଙ୍ଗନ କରି ପିଲାଟିକୁ ଜଣାଇ ଦେବା ଉଚିତ୍ ଯେ ସେ କିଛି ହାସଲ କରିପାରିଛି । ଶିଶୁକୁ ସାଧନମୁଖୀ କରିବାରେ ଏହାର ଗୁରୁତ୍ୱ ଖୁବ୍ ବେଶି । କଥା ଏବଂ କାର୍ଯ୍ୟଦ୍ୱାରା ପିଲାକୁ ନିଜ ଆନନ୍ଦ ଜଣାଇ ଦିଆଯିବାର କଥା ।

କେତେକ ବ୍ୟକ୍ତି ନିଜ ସନ୍ତାନ କୃତିତ୍ୱର ଭଲ ଦିଗଟି ଦେଖି ତାକୁ ପ୍ରଶଂସା ନ କରି ଅଯଥା ଦାବି ସାବ୍ୟସ୍ତ କରନ୍ତି । ପିଲାଟି ସ୍କୁଲରୁ ଫେରି ଶ୍ରେଣୀରେ ଚତୁର୍ଥ ହୋଇଛି ବୋଲି କହିବା ମାତ୍ରେ ସେମାନେ କହିଉଠନ୍ତି, "ପିଲାମାନେ ଶ୍ରେଣୀରେ ପ୍ରଥମ, ଦ୍ୱିତୀୟ ହେଉଛନ୍ତି, ଆଉ ତୁମେ ଚତୁର୍ଥ ହୋଇ କ'ଣ କାମଟି କଲ ?" ଏପରି ମନୋଭାବରେ ପିଲାଟି ନିରୁତ୍ସାହିତ ହୁଏ । ଦାୟିତ୍ୱ ସମ୍ପନ୍ନ ବ୍ୟକ୍ତିମାନେ ପିଲାଟିର କୃତିତ୍ୱ ପାଇଁ ପ୍ରଶଂସା ଦେଲା ପରେ ପ୍ରଥମ ଦ୍ୱିତୀୟ ହେବାର ସମ୍ଭାବନା ପ୍ରତି ସୂଚନା ଦିଅନ୍ତି ।

**ଆକାଂକ୍ଷାର ସ୍ତର :**

ପିଲାମାନଙ୍କୁ ସାଧନମୁଖୀ ଶିକ୍ଷା ଦେଇ ପ୍ରଗତିଶୀଳ ସମାଜ ଗଠନ କରିବାର ଅନ୍ୟ ଏକ ପନ୍ଥା ହେଉଛି ସେମାନଙ୍କ ମନରେ ଉଚ୍ଚ ଆକାଂକ୍ଷାର ବୀଜ ବପନ କରିବା । ଏହା ସହଜରେ ଅନୁମେୟ ଯେ, ଲକ୍ଷ୍ୟ ସାଧନମୁଖୀ ପିଲାମାନେ ନିଜର ଲକ୍ଷ୍ୟ ସାଧନ ପାଇଁ ମନେ ମନେ ଉତ୍କର୍ଷତାର ଏକ ମାନଦଣ୍ଡ ତିଆରି କରନ୍ତି ଏବଂ ଏହି ମାନଦଣ୍ଡକୁ ଆଖିରେ ରଖି ପ୍ରତିଯୋଗିତାରେ ଭାଗ ନିଅନ୍ତି । ସାହିତ୍ୟ, ସଙ୍ଗୀତ, ଗଣିତ ବା କ୍ରୀଡ଼ା ନୈପୁଣ୍ୟ ଯେଉଁ ବିଭାଗରେ ହେଉନା କାହିଁକି, ସାଧନମୁଖୀ ପିଲାମାନଙ୍କ ମନରେ ଏକ ମାନଦଣ୍ଡ କାମ କରୁଥାଏ । ପିଲାମାନେ ଯେତେ ବେଶି ପ୍ରତ୍ୟାଶା କରନ୍ତି, ସେହି ଅନୁପାତରେ ସଫଳତା ଲାଭ କରନ୍ତି । ଆମର ପରିପାର୍ଶ୍ୱରେ ଆମେ ମଧ୍ୟ ଦେଖୁ ଯେ, ଯେଉଁ ପିଲାମାନେ ଅଳ୍ପ ବୟସରେ ମଧ୍ୟ ଚିନ୍ତା କରନ୍ତି, ସେମାନେ ଏମ୍. ଏ. ପର୍ଯ୍ୟନ୍ତ ନିଶ୍ଚୟ ପଢ଼ିବେ । ସେମାନେ ଶିକ୍ଷା କ୍ଷେତ୍ରରେ ବେଶି ଦୂର ଯାଆନ୍ତି । କୌଣସି ବାହ୍ୟିକ କାରଣରୁ ଏମ୍. ଏ. ପଢ଼ି ନ ପାରିଲେ ମଧ୍ୟ ଉଚ୍ଚ ଶିକ୍ଷା ପାଆନ୍ତି । ମୋଟ ଉପରେ ସାଧନମୁଖୀ ପିଲାମାନଙ୍କର ଆକାଂକ୍ଷାର ସ୍ତର ଖୁବ୍ ବେଶି ।

ଉଦୀୟମାନ ପିଲାଙ୍କ ମନରେ ଉଚ୍ଚ ଆକାଂକ୍ଷା ସୃଷ୍ଟି କରିବାରେ ପିତାମାତା, ଅଭିଭାବକ, ଶିକ୍ଷକ ଓ ଅନ୍ୟାନ୍ୟ ବ୍ୟକ୍ତି ବିଶେଷ କିଛି କରିପାରିବେ । ମହାପୁରୁଷମାନଙ୍କର ଜୀବନୀ, ସେମାନଙ୍କର ସଂଗ୍ରାମର ଇତିହାସ ଏବଂ ଇତିହାସର ଗୌରବପୂର୍ଣ୍ଣ କଥାବସ୍ତୁ ପିଲାମାନଙ୍କୁ କହି ସେମାନଙ୍କର ଆକାଂକ୍ଷାର ସ୍ତର ବଢ଼ାଯାଇପାରେ ।

ପିଲାଟି ନିଜେ ମଧ୍ୟ ଜୀବନରେ ଏମିତି ଉତ୍କର୍ଷ ହାସଲ କରିପାରେ ବୋଲି ସଦାସର୍ବଦା ଧାରଣା ଦେବାକୁ ହେବ । ପିଲାମାନଙ୍କର ଲାଳନପାଳନରେ ସେମାନଙ୍କର ଶିକ୍ଷା ବ୍ୟବସ୍ଥା ଏବଂ ପରିଚାଳନାରେ ଅଲୋଚିତ ପନ୍ଥାଗୁଡ଼ିକର ବିନିଯୋଗ ଏକ ଲକ୍ଷ୍ୟ ସାଧନମୁଖୀ ସମାଜ ଗଠନରେ ଯେ ନିଶ୍ଚିତ ସହାୟକ ହେବ, ଏଥିରେ ସନ୍ଦେହ ନାହିଁ ।

## ପ୍ରତିଭାଶାଳୀ ବ୍ୟକ୍ତି

ମୂଲ୍ୟବାନ ଜିନିଷ ଯେପରି ସହଜଲବ୍ଧ ନୁହେଁ, ପ୍ରତିଭା ମଧ୍ୟ ସେହିପରି ଖୁବ୍ ଦୁର୍ଲଭ । ପ୍ରତ୍ୟେକ ଗୋଷ୍ଠୀ ଓ ସମାଜ ପ୍ରତିଭାଶୀଳ ବ୍ୟକ୍ତିର ସଂସର୍ଗ ଲାଭ କରିବାକୁ ସଦାସର୍ବଦା ଆଗ୍ରହୀ । କିନ୍ତୁ କୃତ୍ରିମ ଉପାୟରେ ଶିଳ୍ପଜାତ ପଦାର୍ଥ ପ୍ରସ୍ତୁତ କଲା ପରି ପ୍ରତିଭାଶାଳୀ ବ୍ୟକ୍ତି ତିଆରି କରିବାରେ କୌଣସି ସମାଜ ସକ୍ଷମ ହୋଇ ପାରି ନାହିଁ । କେଉଁ ପରିସ୍ଥିତିରେ ପ୍ରତିଭାର ବିକାଶ ହୁଏ ଏବଂ କେଉଁ ବ୍ୟକ୍ତିଠାରେ ଭବିଷ୍ୟତରେ ପ୍ରତିଭାର ସ୍ଫୁରଣ ଘଟିବ, ତାହା ନିର୍ଦ୍ଧାରଣ କରିବା ସହଜ ନୁହେଁ । ତଥାପି ପ୍ରତିଭାଶାଳୀ ପିଲା ଓ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କୁ ବୁଝିବା ପାଇଁ ମନୋବୈଜ୍ଞାନିକମାନେ ଉଦ୍ୟମ ଚଳାଇ ଆସିଛନ୍ତି । ଏ ଉଦ୍ୟମର ଫଳ ପୂର୍ଣ୍ଣାଙ୍ଗ ନ ହେଲେ ମଧ୍ୟ ବହୁ ଉପାଦେୟ ତଥ୍ୟ ଆମର ଚିନ୍ତାରାଜ୍ୟକୁ ସମୃଦ୍ଧ କରିଛି ।

ଏକ ସମୟରେ ଅସାଧାରଣ ବୁଦ୍ଧିସମ୍ପନ୍ନ ବ୍ୟକ୍ତିଙ୍କୁ ପ୍ରତିଭାଶାଳୀ ବ୍ୟକ୍ତି ରୂପେ ବିଚାର କରା ଯାଉଥିଲା । ଖୁବ୍ କମ୍ ବୁଦ୍ଧିସମ୍ପନ୍ନ ଲୋକମାନଙ୍କୁ ମାନସିକ ସ୍ୱଳ୍ପତା ସମ୍ପନ୍ନ (Mental difficient) ବ୍ୟକ୍ତି ରୂପେ ବିଚାର କରାଯାଉଥିଲା ଏବଂ ଖୁବ୍ ବେଶି ବୁଦ୍ଧିମତ୍ତାର ପରିଚୟ ଦେଉଥିବା ବ୍ୟକ୍ତିଙ୍କୁ ପ୍ରତିଭାବାନ୍ ରୂପେ ଗ୍ରହଣ କରାଯାଉଥିଲା । ଅଧିକ ସ୍ପଷ୍ଟ ରୂପେ କହିଲେ ବୁଦ୍ଧିଅଙ୍କ (Intelligent Quotient) ୧୫୦ରୁ ଅଧିକ ପାଉଥିବା ବ୍ୟକ୍ତିମାନେ ପ୍ରତିଭାସମ୍ପନ୍ନ ବୋଲି ଧରା ଯାଉଥିଲେ । କିନ୍ତୁ ଆଧୁନିକ ଯୁଗରେ ପ୍ରତିଭାସମ୍ପନ୍ନ ବ୍ୟକ୍ତିମାନେ ସାଧାରଣତଃ ଅଧିକ ବୁଦ୍ଧିମତ୍ତାର ପରିଚୟ ଦିଅନ୍ତି ବୋଲି ଗ୍ରହଣ କରା ଯାଉଥିଲେ ମଧ୍ୟ ବୁଦ୍ଧିର ଆଧିକ୍ୟକୁ ପ୍ରତିଭାର ନିର୍ଦ୍ଧାରକ ରୂପେ ଆଉ ବିବେଚନା କରାଯାଉ ନାହିଁ । ଖୁବ୍ ବେଶି ବୁଦ୍ଧିଅଙ୍କ ପାଉଥିବା ଲୋକେ ସ୍କୁଲ୍ କଲେଜରେ ମିଳି ପାରନ୍ତି, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରତିଭାଶୂନ୍ୟ । ପ୍ରଥମତଃ ଯେଉଁମାନଙ୍କର କୃତିତ୍ୱ ସମୟର ଗଣ୍ଡି ମଧ୍ୟରେ ଆବଦ୍ଧ ନ ହୋଇ ପରବର୍ତ୍ତୀ

ସମସ୍ତ ଓ ସମାଜକୁ ବୁଦ୍ଧିମନ୍ତ କରେ, ସେମାନେ ପ୍ରତିଭାସମ୍ପନ୍ନ ପଦବାଚ୍ୟ । ଦେଖା-ଯାଉଛି, କେତେକ ଲୋକଙ୍କର କୃତିତ୍ୱ କେବଳ ସେମାନଙ୍କ ସମସାମୟିକଙ୍କ ମଧ୍ୟରେ ସୀମିତ ହୋଇଥାଏ । ଏପରି ଲୋକମାନଙ୍କୁ ପ୍ରଖ୍ୟାତ କୁହାଯାଇ ପାରେ; ମାତ୍ର ଏମାନେ ପ୍ରତିଭାବାନ୍ ନୁହନ୍ତି । ଅତଏବ ସମୟର ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇ ଆଗାମୀ ଦିନର ଉଚ୍ଚାଙ୍ଗ ମୂଲ୍ୟାୟନ ଲାଭ କରିବା ପ୍ରତିଭାର ଏକ ସୁସ୍ପଷ୍ଟ ନିଦର୍ଶନ ।

ଏହାର ଅର୍ଥ ନୁହେଁ ଯେ ପ୍ରତିଭା ପରିଚୟରେ ବୁଦ୍ଧିର କୌଣସି ସ୍ଥାନ ନାହିଁ । ପ୍ରତିଭାଶାଳୀ ବ୍ୟକ୍ତିମାନେ ସାଧାରଣତଃ ବିଚକ୍ଷଣ ବୁଦ୍ଧିସମ୍ପନ୍ନ । ତଥାପି ବୁଦ୍ଧି ମାପକରେ ପାରଦର୍ଶିତା ଲାଭ କରୁଥିବା ବ୍ୟକ୍ତିକୁ ପ୍ରତିଭାବାନ କହିବା ସମୁଚିତ ନୁହେଁ । ବିଶେଷତଃ ଲଳିତ କଳାରେ ଅସାମାନ୍ୟ ପାରଦର୍ଶିତା ଦର୍ଶାଉଥିବା ବ୍ୟକ୍ତିମାନେ ଉଚ୍ଚ ବୁଦ୍ଧି ପ୍ରଦର୍ଶନ ନ କରି ମଧ୍ୟ ପ୍ରତିଭାସମ୍ପନ୍ନ ରୂପେ ବିବେଚିତ ହୁଅନ୍ତି । ଆମେରିକାର ସଙ୍ଗୀତ ରାଜ୍ୟରେ ଶୀର୍ଷସ୍ଥାନକୁ ଯାଇଥିବା ଜାଜ୍ ସଙ୍ଗୀତର ପ୍ରାଣ ପ୍ରତିଷ୍ଠାତା ଲୁଇସ୍ ଆର୍ମଷ୍ଟ୍ରଙ୍ଗ୍ ତା'ର ଏକ ଜ୍ୱଳନ୍ତ ଉଦାହରଣ । ସାଧାରଣ ଲୋକ-ଗୀତର ସୂତ୍ର ନେଇ ଆର୍ମଷ୍ଟ୍ରଙ୍ଗ୍ ଯେପରି ଭାବରେ ଜାଜ୍ ସଙ୍ଗୀତର ରୂପରେଖ ଦେଲେ, ତାହା ବାସ୍ତବରେ ଅଚିନ୍ତନୀୟ । କିନ୍ତୁ ଲୁଇସ୍ ଆର୍ମଷ୍ଟ୍ରଙ୍ଗ୍ଙ୍କର କୌଣସି ଆନୁଷ୍ଠାନିକ ଶିକ୍ଷାଦୀକ୍ଷା ନ ଥିଲା । ବୁଦ୍ଧି ମାପ-କରେ ସେ ଯେ ଖୁବ୍ ନିମ୍ନରେ, ଏହା ସହଜରେ ଅନୁମେୟ ।

ପ୍ରତିଭା ସମ୍ପର୍କରେ ଆଉ ଏକ ବିସ୍ମୟ ହେଉଛି ଉନ୍ନତ ପରିବେଷ୍ଟନୀର ଆବ-ଶ୍ୟକତା ପ୍ରତି ଗୁରୁତ୍ୱ । ଅନେକଙ୍କ ଧାରଣା ଯେ ପ୍ରଚ୍ଛନ୍ନ ପ୍ରତିଭା ଥିବା ପିଲାମାନେ ବହୁ ସୁଖ ସୁବିଧା-ପୂର୍ଣ୍ଣ ଗୃହରେ ପ୍ରତିପାଳିତ ନ ହେଲେ, ସେମାନଙ୍କର ପିତାମାତା-ମାନେ ପ୍ରତିଭାର ବିକାଶ ପାଇଁ ବୁଦ୍ଧିମତ୍ତାର ସହ କାମ ନ କଲେ ସେ ପିଲାମାନେ ପ୍ରତିଭାସମ୍ପନ୍ନ ବ୍ୟକ୍ତି ହୋଇ ପାରନ୍ତି ନାହିଁ । ପ୍ରକୃତରେ ଉନ୍ନତ ପରିବେଶ ପ୍ରତିଭାର ବିକାଶରେ ସହାୟକ ହୋଇଥାଏ । ମାତ୍ର ଉନ୍ନତ ପରିବେଶର ଅଭାବରେ ବିକାଶ ଯେ ଆଦୌ ସମ୍ଭବ ନୁହେଁ —ଏ କଥା ଠିକ୍ ନୁହେଁ । ବହୁ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କ ଜୀବନର ପ୍ରାକ୍କାଳରେ ଅନୁଶୀଳନ କରାଯାଇ ଦେଖା ଯାଇଛି ଯେ ଉନ୍ନତ ପରିବେଶ ପ୍ରତିଭାର ବିକାଶ କ୍ଷେତ୍ରରେ ଅତ୍ୟାବଶ୍ୟକ ନୁହେଁ । ଆର୍ମଷ୍ଟ୍ରଙ୍ଗ୍ ପିଲା ଦିନରେ ଖୁବ୍ ଅବ-ହେଳିତ ହୋଇଥିଲେ ଓ ପିତାମାତାଙ୍କ ସ୍ନେହ କ'ଣ ଜାଣି ନ ଥିଲେ । ବିଖ୍ୟାତ ବୈଜ୍ଞାନିକ ନିଉଟନଙ୍କ ପିତା ଜଣେ ସାଧାରଣ କୃଷକ ଥିଲେ ଏବଂ ନିଉଟନଙ୍କ ଜନ୍ମ ପୂର୍ବରୁ ଇହଧାମ ତ୍ୟାଗ କରିଥିଲେ । ଗାଣିତିକ ଗସ୍ଙ୍କ ପିତା ଜଣେ ଦୈନିକ ଶ୍ରମଜୀବୀ ଥିଲେ । ଲିଙ୍କନଙ୍କ ପିତା ବଢ଼େଇ ଥିଲେ । ମାର୍ଟିନ୍ ଲୁଥର ଜଣେ କୃଷକର ସନ୍ତାନ ଏବଂ କେପ୍ଲର୍ ଜଣେ ମଦ୍ୟପ ଜନ୍ତୁଆଳର ପୁତ୍ର । ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଓ ସ୍ୱାମୀ ବିବେକାନନ୍ଦ ମଧ୍ୟ ସେହିଭଳି ବାଲ୍ୟ କାଳରୁ ସୁବିଧା ସୁଯୋଗରୁ ବଞ୍ଚିତ ହୋଇ ଜୀବନ ନିର୍ବାହ କରିଥିଲେ ।

ଏ ସମସ୍ତ ଅନୁଶୀଳନରୁ କେତେକ ବିଶେଷଜ୍ଞ ମତ ଦିଅନ୍ତି ଯେ ପ୍ରତିଭାଶୀଳ ବ୍ୟକ୍ତିର ଏକ ବୈଶିଷ୍ଟ୍ୟ ହେଉଛି ପାରିପାର୍ଶ୍ୱିକ ପ୍ରତିବନ୍ଧକ ଅତିକ୍ରମ କରି ପ୍ରତିଷ୍ଠାଲାଭ କରିବାର ଅଦମ୍ୟ ଇଚ୍ଛା ଓ ସାଧନା । ଅନ୍ୟ ଦୃଷ୍ଟିରୁ ଦେଖିଲେ ପ୍ରତିଭାଶୀଳ ବ୍ୟକ୍ତିମାନେ ଦୁଃସ୍ଥ ବାତାବରଣ ଦ୍ୱାରା ଖୁବ୍ କମ୍ କ୍ଷତିଗ୍ରସ୍ତ ହୁଅନ୍ତି । ବାତାବରଣର କୁପ୍ରଭାବ ସେମାନଙ୍କ ଉପରେ ବିଶେଷ ପ୍ରଭାବ ବିସ୍ତାର କରି ପାରେନା । ଗୋଟିଏ ଗବେଷଣାରୁ ଦେଖା ଯାଇଛି ଯେ ପ୍ରତିଭାସମ୍ପନ୍ନ ପିଲାମାନଙ୍କ ବାପା ମା' ଖୁବ୍ ଦାୟିତ୍ୱହୀନ ଓ ସହାନୁଭୂତିହୀନ ହୋଇଥିଲେ ମଧ୍ୟ ଏପରି ପିଲାମାନେ ସେମାନଙ୍କ ମାନସିକ ଆବଶ୍ୟକତା ପରିପୂରଣ ପାଇଁ ବାହାର ଲୋକଙ୍କ ଉପରେ ନିର୍ଭର କରନ୍ତି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ଏପରି ପିଲା ଶ୍ରେଣୀରେ ପ୍ରଥମ ହୋଇ ଆସି ପ୍ରଥମେ ତା'ର ମଦ୍ୟପ ବାପାକୁ ନିଜର କୃତିତ୍ୱ ନ କହି ବାହାରେ ଆତ୍ମୀୟତା ଥିବା ଗୋଟିଏ ଲୋକକୁ ନିଜର କୃତିତ୍ୱ ଜଣାଏ । ସ୍ଥୂଳତଃ ଉନ୍ନତ ପରିବେଶ ବ୍ୟତୀତ ମଧ୍ୟ ପ୍ରତିଭାର ଉନ୍ମେଷ ଓ ବିକାଶ ସମ୍ଭବପର ।

ପ୍ରତିଭାଶୀଳ ବ୍ୟକ୍ତି ସମ୍ପର୍କରେ ଅନ୍ୟ ଏକ ଲୋକ-ବିଶ୍ୱାସ ହେଉଛି ପ୍ରତିଭାଶୀଳ ବ୍ୟକ୍ତିର ମାନସିକ ଅସ୍ଥିରତା । ଅନେକେ ଭାବନ୍ତି, ପ୍ରତିଭାବାନ୍ ବ୍ୟକ୍ତିମାନେ ପାଗଳ ଏବଂ ଏକଦେଶଦର୍ଶୀ । ପ୍ରତିଭାବାନ୍ ବ୍ୟକ୍ତିଙ୍କଠାରେ ପରିଦୃଷ୍ଟ ଭାବଗତ ଅସ୍ଥିରତାରୁ ଏ ଧାରଣାର ସୃଷ୍ଟି । ଉଦାହରଣ ସ୍ୱରୂପ, ଗାଲଟନ ତାଙ୍କ ଜୀବନ ସାରା ସ୍ନାୟବିକ ଦୁର୍ବଳତାର ଶିକାର ହୋଇଥିଲେ ଏବଂ ଦୁଇଥର ତାଙ୍କର ମାନସିକ ବିପର୍ଯ୍ୟୟ ଘଟିଥିଲା । ସେହିପରି ବ୍ଲେକ, ଡାଉନସ୍, ସକ୍ରେଟିସ୍, ରଫେଲ୍ ଓ ରୁଷୋ ପ୍ରଭୃତି ପ୍ରତିଭାବାନଙ୍କ ଜୀବନରେ ମଧ୍ୟ ମାନସିକ ଅସ୍ଥିରତାର ଯଥେଷ୍ଟ ଉଦାହରଣ ରହିଛି । କିନ୍ତୁ ଏ କଥା ମଧ୍ୟ ବିଚାର୍ଯ୍ୟ ଯେ ଦାନ୍ତେ, ଡାରଉଇନ ଓ ଆଇନଷ୍ଟାଇନଙ୍କ ପରି ପ୍ରତିଭାସମ୍ପନ୍ନ ବ୍ୟକ୍ତିମାନେ ମାନସିକ ସ୍ଥିରତା ପୂର୍ଣ୍ଣ ଜୀବନ ଯାପନ କରିଛନ୍ତି ଏବଂ ଏକ ପୂର୍ଣ୍ଣାଙ୍ଗ ଜୀବନାନୁଭୂତି ଲାଭ କରିଛନ୍ତି । ମୋଟ ଉପରେ ପ୍ରତିଭାବାନ୍ ବ୍ୟକ୍ତିର ଜୀବନ ଯେ ନିଶ୍ଚିତ ଭାବରେ ବିପର୍ଯ୍ୟସ୍ତ ହେବ, ଏ କଥା ନୁହେଁ । ତେଣୁ ମନ ଗୋଟିଏ ଦିଗରେ ନିୟୋଜିତ ହେଉଥିବାରୁ ଏବଂ ଗୋଟିଏ ଦିଗରେ ବିଶେଷ ଜ୍ଞାନର ଗଭୀରତା ବୃଦ୍ଧି ପାଉଥିବାରୁ ବେଳେବେଳେ ଦୈନନ୍ଦିନ ଜୀବନ ପରିଚାଳନାରେ ବିଭ୍ରାଟ ଦେଖାଯାଏ । ଗୋଟିଏ ଦିଗରେ ଶକ୍ତି ଓ ସାମର୍ଥ୍ୟର ସର୍ବାଧିକ ପ୍ରୟୋଗ ଅନ୍ୟ ଦିଗରେ ଏକ ଶୂନ୍ୟତା ସୃଷ୍ଟି କରିବା ଯୋଗୁଁ ନିତ୍ୟନୈମିତ୍ତିକ ଜୀବନର ଦବିଶେଷ ଘଟଣାବଳୀ ସହ ସଂଯୋଗ ବିଚ୍ଛିନ୍ନ ହୋଇପଡ଼େ । ବ୍ୟକ୍ତିର ମୌଳିକ ଲକ୍ଷ୍ୟ ତୁଳନାରେ ଏପରି ଘଟଣା ସବୁ ତୁଚ୍ଛ ମନେହୁଏ । ଫଳରେ ସାମାଜିକ ଓ ଭାବଗତ ଜୀବନରେ କିଛିଟା ଅଭାବ ପରିଲକ୍ଷିତ ହେବା ବିଚିତ୍ର ନୁହେଁ । ନିଜର ନିଃସଙ୍ଗତାପୂର୍ଣ୍ଣ ଜୀବନ-ବିଷୟରେ ମାଇକେଲ୍ ଆଞ୍ଜେଲୋ ମତ ଦେଇ କହିଛନ୍ତି ଯେ ସେ ନିଜ ସମୟର ଅଭାବ ଦୃଷ୍ଟିରୁ ସାମାଜିକ ସମ୍ପର୍କ ରକ୍ଷାକରି ପାରି ନ ଥିଲେ ।

ତେଣୁ ସୃଜନାତ୍ମକ କାର୍ଯ୍ୟରେ ଜୀବନର ବେଶି ଭାଗ ସମୟ ଦେଇ ପ୍ରତିଭାଶାଳୀ ବ୍ୟକ୍ତି ଜୀବନ ନିର୍ବାହ କରନ୍ତି ।

ଅନ୍ୟପକ୍ଷରେ ବହୁ ଗବେଷଣାରେ ଦେଖା ଯାଇଛି ଯେ ପ୍ରତିଭାଶୀଳ ବ୍ୟକ୍ତିମାନେ ମାନସିକ ସୁସ୍ଥତାପୂର୍ଣ୍ଣ ଜୀବନଯାପନ କରନ୍ତି । ଟରମ୍ୟାନ୍ ବହୁ ସଂଖ୍ୟକ ପ୍ରତିଭାଶୀଳ ବ୍ୟକ୍ତିଙ୍କ ଜୀବନ ଅନୁଶୀଳନ କରି ଦର୍ଶାଇଛନ୍ତି ଯେ, ପ୍ରତିଭାବାନ୍ ବ୍ୟକ୍ତିମାନଙ୍କ ମଧ୍ୟରୁ ଅଧିକାଂଶ ସାମାଜିକ ଦକ୍ଷତାପୂର୍ଣ୍ଣ ଓ କ୍ରୀଡ଼ାକୌତୁକରେ ଆଗ୍ରହୀ । ମୁଣ୍ଡବିନ୍ଧା, ନିଦ୍ରାହୀନତା ଓ ପାଣି ଲାଗିବା ଏମାନଙ୍କ ଠାରେ କମ୍ ଦେଖାଯାଏ । ଶିକ୍ଷା କ୍ଷେତ୍ରରେ ଏମାନଙ୍କର ଦକ୍ଷତା ପ୍ରଶଂସନୀୟ ।

ଅନ୍ୟ କେତେକ ଗବେଷଣାରେ ପ୍ରତିଭାଶୀଳ ବ୍ୟକ୍ତିର ବ୍ୟକ୍ତିତ୍ୱ ଜାଣିବା ପାଇଁ ଉଦ୍ୟମ ହୋଇଛି । ଦେଖାଯାଇଛି ଯେ ଏପରି ବ୍ୟକ୍ତିମାନେ ପରିସ୍ଥିତି ସହ ଖାପ ଖୁଆଇ ଜାଣନ୍ତି ନାହିଁ ବୋଲି ଯେଉଁ ଧାରଣା ଅଛି, ତାହା ଅମୂଳକ । ଏମାନଙ୍କର ଦୁର୍ଗୁଣ-ଗୁଡ଼ିକ ସାଧାରଣତଃ ଗୌଣ ଧରଣର । ଏମାନେ ପଢ଼ାପଢ଼ିରେ ଅତି ବେଶି ସମୟ ଦିଅନ୍ତି, ଅନ୍ୟମାନଙ୍କ ସହିତ ମିଶି ପାରନ୍ତି ନାହିଁ, ଶୀଘ୍ର ଚିଡ଼ି ଯାଆନ୍ତି ଓ ଅନ୍ୟ ମତକୁ ସହଜରେ ଗ୍ରହଣ କରନ୍ତି ନାହିଁ । ଏଥିରେ କିଛି ପରିମାଣରେ ସତ୍ୟତା ଥିଲେ ମଧ୍ୟ ଏପରି ଆପତ୍ତି ଅଭିଯୋଗ ଯେ ଅତି ଗୁରୁତର, ଏ କଥା କହି ହେବନାହିଁ ।

ପ୍ରତିଭାବାନ୍ ବ୍ୟକ୍ତିର ବ୍ୟକ୍ତିତ୍ୱ ସମ୍ପର୍କରେ ଅନ୍ୟକେତେକ ଉପାଦାନ ଉପରେ ଆଲୋକପାତ କରାଯାଇଛି । କେତେକ ଗବେଷକ ମତ ଦିଅନ୍ତି ଯେ ପ୍ରତିଭାଶୀଳ ବ୍ୟକ୍ତି-ମାନେ ସାଧାରଣତଃ ବାହ୍ୟଜଗତରୁ ମିଳୁଥିବା ଉଦ୍ଦୀପକ ପ୍ରତି ଅତି ବେଶି ପ୍ରତିକ୍ରିୟା ଦେଖାନ୍ତି । ସେମାନଙ୍କର ବୌଦ୍ଧିକ ବିକାଶ ଓ ଭାବଗତ ବିକାଶ ମଧ୍ୟରେ ଏକ ବ୍ୟବଧାନ ଥାଏ । ଏତଦ୍‌ବ୍ୟତୀତ ସେମାନେ ନିଜ ଉପରେ ଅତି ବେଶି ଦାବୀ କରିବାକୁ ପସନ୍ଦ କରନ୍ତି ।

କିନ୍ତୁ ନିଜର ସାଫଲ୍ୟ ସଦାବେଳେ କମ୍ ବୋଲି ମନେ କରନ୍ତି । ଏହା ଫଳରେ ଅଧିକାଂଶ ସମୟରେ ସେମାନଙ୍କ ମନରେ କିଛି ପରିମାଣରେ ଅସନ୍ତୋଷ ଥାଏ । ଏ ଅସନ୍ତୋଷ କେବଳ ନିଜକୁ ନେଇ । ଜଣେ ପ୍ରତିଭାବାନ୍ ବ୍ୟକ୍ତି ଏପରି ଅସନ୍ତୋଷ ପ୍ରତି କି ପ୍ରତିକ୍ରିୟା ଦର୍ଶାଇବ, ତାହା ଉପରେ ସମନ୍ୱୟ ରକ୍ଷାର ଗୁଣ ନିର୍ଭର କରେ । ଏପରି ପ୍ରତିକ୍ରିୟା ତ୍ରୁଟିପୂର୍ଣ୍ଣ ହେଲେ ବ୍ୟକ୍ତିର ମାନସିକ ସମସ୍ୟା ସୃଷ୍ଟି ହୁଏ । ଅନ୍ୟ ପକ୍ଷରେ ପ୍ରତିକ୍ରିୟା ଉପଯୋଗୀ ହେଲେ ତାହା ଭାରସାମ୍ୟ ରକ୍ଷାରେ ସହାୟକ ହୁଏ । ମୂଳତଃ ପ୍ରତିଭାଶାଳୀ ବ୍ୟକ୍ତି ନିଜର ବ୍ୟକ୍ତିଗତ ଜୀବନକୁ ବିପଥଗାମୀ କରିବାର ଯେପରି ସମ୍ଭାବନା ରହିଛି, ତାହାକୁ ସମୁନ୍ନତ କରିବାର ଆଶା ମଧ୍ୟ ସେପରି ଅଛି । ନିଜର କୃତିତ୍ୱ ପ୍ରତି ବ୍ୟକ୍ତି କିପରି ମନୋଭାବ ପୋଷଣ କରୁଛି, ତା' ଉପରେ ତାର ମାନସିକ ସ୍ଥିତି ନିର୍ଭର କରୁଛି ।

ପ୍ରତିଭାଶୀଳ ପିଲାର ଶିକ୍ଷାଦୀକ୍ଷା ନେଇ ବିଶେଷଜ୍ଞମାନଙ୍କ ମଧ୍ୟରେ ଦ୍ୱିମତ ରହିଛି । କେତେକ ମତ ଦିଅନ୍ତି ଯେ ପ୍ରତିଭାଶୀଳ ପିଲାକୁ ଅନ୍ୟାନ୍ୟ ସାଧାରଣ ପିଲାଙ୍କ ସହିତ ଶ୍ରେଣୀ ଗୃହରେ ଶିକ୍ଷା ଦିଆଯିବା ଉଚିତ୍ । କିନ୍ତୁ ଅନ୍ୟ କେତେକ ବିଶେଷଜ୍ଞଙ୍କ ମତାନୁଯାୟୀ ପ୍ରତିଭାବାନ୍ ପିଲାଙ୍କ ପାଇଁ ସ୍ୱତନ୍ତ୍ର ଶିକ୍ଷା ବ୍ୟବସ୍ଥା ହେବା ବିଧେୟ । ଶିକ୍ଷାର ବ୍ୟବସ୍ଥା ଯେଉଁ ରୂପରେଖ ନେଲେ ମଧ୍ୟ ପ୍ରତିଭାଶୀଳ ପିଲାମାନେ ଯେ ଦେଶର ଏକ ସ୍ୱତନ୍ତ୍ର ସମ୍ବଳ, ଏଥିରେ ସନ୍ଦେହ ନାହିଁ । ଏ ସମ୍ବଳ ବିକାଶ ଓ ପରିଚାଳନାରେ ପ୍ରତି ରାଷ୍ଟ୍ର ଓ ସମାଜର ଏକ ଦାୟିତ୍ୱପୂର୍ଣ୍ଣ କର୍ତ୍ତବ୍ୟ ରହିଛି ।

———

# ମନର ବୈଚିତ୍ର୍ୟ

## ଧନ୍ୟବାଦ କହିବା ସପକ୍ଷରେ

ବୈଦିକ ଯୁଗର କପିଳ ମୁନିଙ୍କଠାରୁ ଆରମ୍ଭକରି ବୁଦ୍ଧଦେବ, ମୋଜେସ୍, ଯୀଶୁଖ୍ରୀଷ୍ଟ, କନ୍‌ଫୁସିୟସ୍, ମହାତ୍ମାଗାନ୍ଧୀଙ୍କ ପର୍ଯ୍ୟନ୍ତ ବିଶ୍ୱବନ୍ଦିତ ନୀତିବାଦୀମାନେ ସାଧୁତା, ସତ୍ୟବାଦିତା ଓ କର୍ତ୍ତବ୍ୟପରାୟଣତା ପ୍ରଭୃତି ସୁଗୁଣରେ ଗୁରୁତ୍ୱ ବିନ୍ୟାସ କରିଯାଇଛନ୍ତି । ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଜୀବନରେ ଏ ଗୁଣଗୁଡ଼ିକର ପ୍ରକାଶ ପାଇଁ ବହୁ ଉଦ୍ୟମ ହୋଇଛି ବହୁ ଶାସ୍ତ୍ର ଲେଖାଯାଇଛି ଓ ବହୁ ଅନୁଷ୍ଠାନ ଜନ୍ମ ନେଇଛି; କିନ୍ତୁ 'ଧନ୍ୟବାଦ' କହିବାର ଅଭ୍ୟାସକୁ ଉତ୍ସାହିତ କରିବା ପାଇଁ ସେପରି କିଛି ଉଲ୍ଲେଖଯୋଗ୍ୟ ଉଦ୍ୟମ ହୋଇଛି ବୋଲି ମନେହୁଏ ନାହିଁ । କୌଣସି ମହାପୁରୁଷ ଏହାକୁ ଏକ ମହନୀୟ ଗୁଣ ବୋଲି ପ୍ରତିପାଦନ କରିବାକୁ ଉଦ୍ୟମ କରିବାର ଦୃଷ୍ଟାନ୍ତ ନାହିଁ । ତଥାପି ଆଜିର ବ୍ୟବହାର ବିଜ୍ଞାନର ଗତି-ଧାରାକୁ ଲକ୍ଷ୍ୟ କଲେ ମନେହୁଏ, ଧନ୍ୟବାଦ କହିବାର ଅଭ୍ୟାସ ଉପରେ ବହୁ ବ୍ୟକ୍ତିଗତ ଓ ସାମାଜିକ ପ୍ରଗତି ନିର୍ଭରଶୀଳ ।

କଥାଟି ଆପାତତଃ ଅତିରଞ୍ଜିତ ମନେ ହୋଇପାରେ । ଦୋକାନୀଠାରୁ ପରିବା ନେଇ ସାରିଲା ପରେ ପରେ ଦୋକାନୀକୁ 'ଧନ୍ୟବାଦ' କହିଲେ ପାଖରେ ଥିବା ଲୋକ-ମାନେ ଯେଉଁ ହସହାସିରେ ହସନ୍ତି; ସେ ହସହାସିରେ ପ୍ରଶଂସା ନ ଥାଏ, କିଛି ପରିମାଣରେ ବିଦ୍ରୂପ ଥାଏ । ସେହିପରି କୌଣସି ବନ୍ଧୁ କିଛି ସାହାଯ୍ୟ ଦେବା ପରେ ପରେ ତାଙ୍କୁ "ବହୁତ ଧନ୍ୟବାଦ" କହି କୃତଜ୍ଞତା ଜଣାଇଲେ ପାଖରେ ଥିବା ଅନ୍ୟ ବନ୍ଧୁମାନେ ଥଟ୍ଟାକରି କହିପାରନ୍ତି—'ଏବେ କ'ଣ ଲଣ୍ଡନରୁ ଫେରିଛ କି ?' ଏହିପରି ବହୁ କ୍ଷେତ୍ରରେ ଦେଖାଯାଏ ଯେ, ଧନ୍ୟବାଦ କହି ପରିବେଶଟିର ସ୍ୱାଭାବିକତା ରକ୍ଷା କରିଯାଇ ପାରୁନାହିଁ । ମୋଟ ଉପରେ ଧନ୍ୟବାଦ କହିବା ଅଭ୍ୟାସକୁ କୃତ୍ରିମତାର ପରିପ୍ରକାଶ ବୋଲି ଭାବି ଆମେ ଏକ ବିରାଟ ଭୁଲ କରିବାକୁ ଯାଉଛୁ । ଧନ୍ୟବାଦ କହିବା ମାଧ୍ୟମରେ ଯେ ବହୁ ବାଞ୍ଛିତ ବ୍ୟବହାରକୁ ଗଠିତ ଓ ଦୃଢ଼ୀଭୂତ କରାଯାଇପାରେ, ଏକଥା ହୃଦୟଙ୍ଗମ କରିବା କଷ୍ଟ ହେଲେ ମଧ୍ୟ ଏହା ବିଜ୍ଞାନସମ୍ମତ ।

ପ୍ରଥମତଃ ବ୍ୟବହାର ଗଠନର ଏକ ମୌଳିକ-ନୀତି ହେଉଛି ପ୍ରୋତ୍ସାହନ ନୀତି ବା ପୁରସ୍କାର ଦେବାର ନୀତି । ଯଦି ନିୟନ୍ତ୍ରିତ ପରୀକ୍ଷାଗାରରେ ବ୍ୟବସ୍ଥା କରାଯାଏ ଯେ ମୂଷାଟି କାନ କୁଣ୍ଡାଇଲା ମାତ୍ରେ ତାକୁ କିଛି ଖାଦ୍ୟପଦାର୍ଥ ଦିଆଯିବ, ଏ ବ୍ୟବସ୍ଥାର

ପୁନରାବୃତ୍ତି କଲେ ମୂଷାର ଜାନ କୁଣ୍ଠାଇବା ନିଶ୍ଚୟ ବୃଦ୍ଧି ପାଇବ । ସେହିପରି ଯଦି ବ୍ୟବସ୍ଥା କରାଯାଏ ଯେ, ବିରକ୍ତିଟି ନିକଟରେ ଥିବା ଏକ ଭାରଦଣ୍ଡରେ ଚାପ ପ୍ରଦାନ କଲେ କିଛି ଖାଦ୍ୟ ମିଳିବ, ତେବେ ବିରକ୍ତିର ଚାପ ପ୍ରଦାନ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବ । କେବଳ ଖାଦ୍ୟପଦାର୍ଥ ଦ୍ୱାରା ନୁହେଁ, ଆମର ଶାରୀରିକ ଓ ମାନସିକ ଆବଶ୍ୟକତାକୁ ମେଣ୍ଟାଉଥିବା ପଦାର୍ଥମାନ ପୁରସ୍କାର ବା ପ୍ରୋତ୍ସାହନ ରୂପେ କାର୍ଯ୍ୟକରେ ଏବଂ ଏହି ପ୍ରୋତ୍ସାହନ ଲାଭ କରି ଆମର ବ୍ୟବହାର ଗଠିତ ଓ କ୍ରମଶଃ ଦୃଢ଼ୀଭୂତ ହୁଏ ।

ପୂର୍ବରୁ ବିଶ୍ୱାସ କରାଯାଉଥିଲା ଯେ ଏହି ପ୍ରୋତ୍ସାହନ ଦେଇ ଆମର ଇଚ୍ଛାକୃତ ବ୍ୟବହାରଗୁଡ଼ିକ ଗଠନ କରାଯାଇପାରେ । ଚାଲିବା, ବୁଲିବା, ଦୌଡ଼ିବା ଇତ୍ୟାଦି ଆମର ଇଚ୍ଛାକୃତ ବ୍ୟବହାର । ପ୍ରୋତ୍ସାହନ ଦେଇ ଶ୍ୱାସକ୍ରିୟା, ହୃତ୍ସ୍ପନ୍ଦନ,ରକ୍ତସଞ୍ଚାଳନ ମସ୍ତିଷ୍କ ତରଙ୍ଗ ଇତ୍ୟାଦି ଅନିଚ୍ଛାକୃତ କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରିବା ଅସମ୍ଭବ ବୋଲି ବିଚାର କରାଯାଉଥିଲା । ମାତ୍ର କିଛି ବର୍ଷ ତଳେ ଏ ଧାରଣାର ପରିବର୍ତ୍ତନ ଘଟିଛି । ଓଲ୍‌ଡସ୍ ଓ ମିଲ୍‌ନର ନାମକ ଦୁଇଜଣ ମନୋବିଜ୍ଞାନୀ ପ୍ରଥମେ ଦର୍ଶାଇଲେ ଯେ ପ୍ରୋତ୍ସାହନ ଦେଇ ମୂଷାର ହୃତସ୍ପନ୍ଦନକୁ ଏକ ନିର୍ଦ୍ଦିଷ୍ଟ ସ୍ତର ପର୍ଯ୍ୟନ୍ତ ଆଣିବା ସମ୍ଭବ । ଏକ ଉଦାହରଣ ଦେଇ ଏହା ସ୍ପଷ୍ଟ କରାଯାଇପାରେ । ଆମେ ଜାଣୁ ଯେ ହୃତ୍‌ସ୍ପନ୍ଦନର ଗତି ପ୍ରତି ମିନିଟ୍‌ରେ ବଦଳୁଥାଏ । ଧରାଯାଉ ଉକ୍ତ ମୂଷାଟିର ହୃତ୍‌ସ୍ପନ୍ଦନ ପ୍ରତି ମିନିଟ୍‌ରେ ୭୦ରୁ ୮୦ ପର୍ଯ୍ୟନ୍ତ ଚାଲିଥିଲା । କୌଣସି ଏକ ମିନିଟରେ ୭୨ ହେଲେ ପରବର୍ତ୍ତୀ ମିନିଟରେ ୭୪ ହୋଇପାରେ । ମନୋବିଜ୍ଞାନୀ ଦୁଇଜଣ ପୂର୍ବ ଯୋଜନା ଅନୁଯାୟୀ ମୂଷାଟି ଯେତେବେଳେ ଏକ ନିର୍ଦ୍ଦିଷ୍ଟ ଗତିର ହୃତସ୍ପନ୍ଦନ (ଧରାଯାଉ ମିନିଟରେ ୭୫ ଥର) ଦେଖାଇଲା, ସେତେବେଳେ ଏକ ବୈଦ୍ୟୁତିକ ପ୍ରଣାଳୀରେ ମୂଷା ମସ୍ତିଷ୍କର ଆନନ୍ଦ କେନ୍ଦ୍ରକୁ କ୍ରିୟାଶୀଳ କଲେ । ଏହି ଆନନ୍ଦ କେନ୍ଦ୍ରର କ୍ରିୟାଶୀଳତା ମୂଷା ପାଇଁ ପୁରସ୍କାର ବା ପ୍ରୋତ୍ସାହନ । ଏହି ପଦ୍ଧତିଟିକୁ ବାରମ୍ବାର ପୁନରାବୃତ୍ତି କଲା ପରେ ଦେଖାଗଲା ଯେ ମୂଷାଟିର ହୃତ୍‌ସ୍ପନ୍ଦନ କେବଳ ୭୫ ଉପରେ ପର୍ଯ୍ୟବସିତ । ଅନ୍ୟପ୍ରକାରେ କହିଲେ, ପ୍ରୋତ୍ସାହନ ଦେଇ ହୃତ୍‌ସ୍ପନ୍ଦନକୁ ଏକ ନିର୍ଦ୍ଦିଷ୍ଟ ଗତି ଦେବା ସମ୍ଭବ ବୋଲି ପରୀକ୍ଷାଟି ପ୍ରମାଣ କଲା ।

ପରେ ପରେ ବହୁ ମନୋବିଜ୍ଞାନୀ ରକ୍ତ ସଞ୍ଚାଳନ, ଅନ୍ତ୍ରସଞ୍ଚାଳନ ଓ ମସ୍ତିଷ୍କ ତରଙ୍ଗକୁ ନିୟନ୍ତ୍ରଣ କରିବା ପାଇଁ ବିଭିନ୍ନ ଜୀବଜନ୍ତୁ ଓ ମଣିଷ ଉପରେ ପରୀକ୍ଷା ନିରୀକ୍ଷା ଆରମ୍ଭ କଲେ । ଲେଖକ କାନାଡ଼ାର ଯେଉଁ ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିଲା, ସେହି ବିଶ୍ୱବିଦ୍ୟାଳୟର ଅସ୍ଥି ବିଭାଗର ଅଧ୍ୟାପକ ବାସ୍‌ମାଜିଆନ ଦେଖାଇଲେ ଯେ, ପ୍ରୋତ୍ସାହନ ଦ୍ୱାରା କିଛି ସମୟ ପାଇଁ ହାତ ପାପୁଲିର ଏକ ନିର୍ଦ୍ଦିଷ୍ଟ ଶିରାକୁ କ୍ରିୟାଶୀଳ ରଖି ଅନ୍ୟ ଶିରାମାନଙ୍କୁ ଅପେକ୍ଷାକୃତ କ୍ରିୟାହୀନ ରଖାଯାଇ ପାରେ । ସେ ହାତ ପାପୁଲି ସହିତ ଏକ ଯନ୍ତ୍ର ସଂଯୁକ୍ତ କରିଦେଲେ, ଯେଉଁଥିରେ ଜଣାପଡ଼ିଲା ଯେ, କେଉଁ କେଉଁ ଶିରା କେତେବେଳେ ଅଧିକ କ୍ରିୟାଶୀଳ । ଯନ୍ତ୍ରଟିକୁ ଚାହିଁଲେ ବିଭିନ୍ନ ଶିରା କ୍ରିୟାଶୀଳ ହେବାର

ସୂଚନା ମିଳେ । ଗବେଷକ କେଉଁ ଶିରାଟିକୁ ଅଧିକ କ୍ରିୟାଶୀଳ କରିବେ; ତାହା ଠିକ୍ କରି ସାରିବା ପରେ ଯନ୍ତ୍ରଟି ଆଡ଼କୁ ଲକ୍ଷ୍ୟ ରଖିଥାଆନ୍ତି । ଯେତେବେଳେ ଉକ୍ତ ଶିରାଟି ଅଧିକ କ୍ରିୟାଶୀଳ ହୁଏ, ସେତେବେଳେ ଉଚ୍ଚ ଓ ପରିଷ୍କାର ସ୍ୱରରେ ଯନ୍ତ୍ର ସଂଯୁକ୍ତ ବ୍ୟକ୍ତି ଆଡ଼କୁ ଚାହିଁ କହନ୍ତି, 'ଖୁବ୍ ଭଲ'। ଯେତେବେଳେ ଅନ୍ୟ ଶିରାସବୁ କ୍ରିୟାଶୀଳ ସେତେବେଳେ ଗବେଷକ ନୀରବ । ପୁଣି କିଛି କିଛି ସମୟ ପରେ ନିର୍ଦ୍ଦିଷ୍ଟ ଶିରାଟି କ୍ରିୟାଶୀଳ ହେଲେ ତାଙ୍କର ପ୍ରଶଂସା ସୂଚକ 'ଖୁବ୍ ଭଲ' ଶବ୍ଦଟି ଶୁଣାନ୍ତି । ଏହି କ୍ରମପର୍ଯ୍ୟାୟଶୀଳ ପ୍ରୋତ୍ସାହନ ଦେବା ପରେ ଯନ୍ତ୍ରରେ ସ୍ପଷ୍ଟ ଦେଖାଯାଏ ଯେ, ନିର୍ଦ୍ଦିଷ୍ଟ ଶିରାଟି ନିରବଚ୍ଛିନ୍ନ ଭାବେ ଅଧିକ କ୍ରିୟାଶୀଳ ।

ସ୍ୱତଃସ୍ଫୂର୍ତ୍ତ ପ୍ରୋତ୍ସାହନର ମାଧ୍ୟମ ଯାହା ହେଉନା କାହିଁକି, ଶରୀରର ବିଭିନ୍ନ ଜୈବିକ କାର୍ଯ୍ୟ ଯେ ନିୟନ୍ତ୍ରଣଶୀଳ, ତାହା ପ୍ରମାଣିତ ହେଲା । ଏହି ନିୟନ୍ତ୍ରଣ ପାଇଁ ବିଭିନ୍ନ ପଦ୍ଧତି ଅନୁସୃତ ହେଲେ ମଧ୍ୟ ମୌଳିକ ନୀତି ଥିଲା ଏକ । ତାହା ହେଉଛି ପ୍ରୋତ୍ସାହନ ଦେଇ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟକୁ ସକ୍ରିୟ କରିବା । ଏହି ପଦ୍ଧତିରେ ଭାରତୀୟ ଋଷିମାନେ ଯୋଗ ମାଧ୍ୟମରେ ମସ୍ତିଷ୍କ ତରଙ୍ଗ ସମେତ ଅନ୍ୟାନ୍ୟ କ୍ରିୟାକୁ ନିୟନ୍ତ୍ରଣ କରି ପାରୁଥିଲେ । ଚୀନ ଓ ଜାପାନର ଜେନ୍ ସମ୍ପ୍ରଦାୟର ଲୋକମାନେ ମଧ୍ୟ ମାନସିକ ସ୍ଥିରତା ଆଣି ପାରୁଥିଲେ । ଶରୀରର ସୁସ୍ଥତା ଓ ଜୀବନର ଦୀର୍ଘତା ପାଇଁ ଯେଉଁ ପ୍ରକାର ହୃତ୍‌ସ୍ପନ୍ଦନ, ରକ୍ତସଞ୍ଚାଳନ ଓ ମସ୍ତିଷ୍କ ତରଙ୍ଗ ଉପଯୋଗୀ, ସେ ସମସ୍ତ ଅନିଚ୍ଛାକୃତ କ୍ରିୟାକୁ ଯଦି ପ୍ରୋତ୍ସାହନ ଦ୍ୱାରା ନିୟନ୍ତ୍ରଣ କରାଯାଏ, ତେବେ ଅପେକ୍ଷାକୃତ ଇଚ୍ଛାଧୀନ ବ୍ୟବହାରକୁ ନିୟନ୍ତ୍ରଣ କରିବା ନିଶ୍ଚୟ ଅଧିକ ସହଜ ।

ଉପରୋକ୍ତ ବିଜ୍ଞାନ ସମ୍ମତ ତଥ୍ୟ ପରିପ୍ରେକ୍ଷୀରେ 'ଧନ୍ୟବାଦ' କହିବାର ତାତ୍ପର୍ଯ୍ୟ ସୁସ୍ପଷ୍ଟ । ଯେଉଁ ବ୍ୟକ୍ତି ସହିତ ଆମେ ଗୋଟିଏ ମୁହୂର୍ତ୍ତିରେ କାରବାର କରୁଛୁ, ସେ ବ୍ୟକ୍ତିଟି ସୁବ୍ୟବହାର ଦେଖାଇଲା ବେଳେ ଆମେ ଯନ୍ତ୍ର ଚାଳିତ ମନୁଷ୍ୟ ପରି ଯଦି ଧନ୍ୟବାଦ ଦେଉ, ତେବେ ତାହାର ପ୍ରଭାବ ନିଶ୍ଚୟ ପଡ଼ିବ । ସେ ବ୍ୟକ୍ତି ଓ ଆମେ ନିଜେ ହୁଏତ ସେ ମୁହୂର୍ତ୍ତିରେ ତାହା ଅନୁଭବ ନ କରି ପାରୁ ; ମାତ୍ର ଧନ୍ୟବାଦ କହିବାର ପୁନରାବୃତ୍ତି ଫଳରେ ଧନ୍ୟବାଦ ପ୍ରାପ୍ତ ବ୍ୟକ୍ତିର ସୁବ୍ୟବହାର କ୍ରମଶଃ ବୃଦ୍ଧି ପାଇବ ତା'ର ଅଜ୍ଞାତସାରରେ । ବ୍ୟକ୍ତିଟି ଯେତେ ଅଳ୍ପ ସାହାଯ୍ୟ ଆମକୁ ଦେଲେ ମଧ୍ୟ 'ଧନ୍ୟବାଦ' କହି ତାକୁ କୃତଜ୍ଞତା ଜଣାଇବାର ପ୍ରବୃତ୍ତି ଏକ ସାମାଜିକ ପ୍ରୋତ୍ସାହନ । ଏହାର ଶକ୍ତି ଅସୀମ । ଆମର ସମାଜ ମଧ୍ୟ ଏକ ଗବେଷଣାଗାର । ସେ ଗବେଷଣାଗାରରେ ମାର୍ଜିତ ବ୍ୟବହାର, ସାମାଜିକ ସୁବ୍ୟବହାର ପାଇଁ ଯେତେ ବେଶୀ ପ୍ରୋତ୍ସାହନ ମିଳିବ, ବ୍ୟବହାରର ଶୋଭନୀୟତା ସେତିକି ବୃଦ୍ଧି ପାଇବ । ଏ ଶୋଭନୀୟତା ବୃଦ୍ଧିରେ ଧନ୍ୟବାଦ ଦେବାର ପ୍ରୋତ୍ସାହନ ଏକ ମୌଳିକ ଆବଶ୍ୟକତା । ଏହାର ସାମାଜିକ ଉପଲବ୍ଧି ଉପରେ ଭବିଷ୍ୟତର ବହୁ ଆକାଂକ୍ଷା ନିର୍ଭର କରୁଛି ।

## ଅନ୍ୟ ସମ୍ପର୍କରେ ଆପଣ ଧାରଣା କରନ୍ତି କିପରି ?

ଆପଣଙ୍କ ମନରେ ବେଳେ ବେଳେ ନିଶ୍ଚୟ ଦୁଃଖ ହେଉଥିବ ଯେ, ଅମୁକ ଲୋକ ଆପଣଙ୍କୁ ଠିକ୍ ବୁଝି ପାରିଲା ନାହିଁ । କିଏବା ଚାହେଁ ସଂସାରରେ ନିଜର ଶତ୍ରୁ ସଂଖ୍ୟା ବଢ଼ାଇବାକୁ ? ତଥାପି ସମୟ ସମୟରେ ଅବୁଝାମଣା ସୃଷ୍ଟି ହୁଏ, ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ମାନସିକ ଦୂରତ୍ୱ ବୃଦ୍ଧି ପାଏ ଓ ସାମାଜିକ ଜୀବନନିର୍ବାହ ବ୍ୟାହତ ହୁଏ । କାହିଁକି ଏପରି ହୁଏ ?—ତାହା ସମସ୍ତଙ୍କ ମନରେ ଏକ ପ୍ରଶ୍ନ । କେଉଁ ପ୍ରକାର ନୈତିକ ଓ ସାମାଜିକ ମୂଲ୍ୟବୋଧର ଅନୁଗାମୀ ହେଲେ ବୁଝାମଣା ବୃଦ୍ଧି ପାଏ, ତା'ର ଏକ ଚିନ୍ତାମୂଳକ ବିଚାର ଏ ଆଲୋଚନାର ଲକ୍ଷ୍ୟ ନୁହେଁ । ଆମେ ଅନ୍ୟଲୋକ ସମ୍ପର୍କରେ ଯେଉଁ ଭାବଧାରା ଗଢ଼ିତୋଳୁ, ତାହା କି କି ଅବସ୍ଥା ଦ୍ୱାରା ପ୍ରଭାବିତ ହୁଏ, ତା'ର ବିଜ୍ଞାନସମ୍ମତ-ବିଚାର ଏଠାରେ ଆଲୋଚ୍ୟ । ଏ ପ୍ରକାର ବିଚାର ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସୃଷ୍ଟି ହେଉଥିବା ଅବୁଝାମଣାର କାରଣ ଦର୍ଶାଇବା ସଙ୍ଗେ ସଙ୍ଗେ ବୁଝାମଣା ବୃଦ୍ଧିରେ ସହାୟକ ।

ଜଣେ ବ୍ୟକ୍ତି ବିଷୟରେ କୌଣସି ଧାରଣା ପୋଷଣ କଲା ବେଳେ ତା' ସମ୍ପର୍କରେ ମିଳୁଥିବା ବିଭିନ୍ନ ଖବର ଆମେ କିପରି ନିର୍ବାଚନ କରୁ, କେଉଁ ଖବରକୁ କି ପ୍ରକାର ଗୁରୁତ୍ୱ ଦେଉ ଓ ଖବରଗୁଡ଼ିକୁ କେଉଁ ଭାବରେ ଏକାଠି କରି ବ୍ୟକ୍ତି ସମ୍ପର୍କରେ ଏକ ମୋଟାମୋଟି ଛବି ଧାରଣ କରୁ—ସେ ବିଷୟରେ ଯେଉଁ ସମସ୍ତ ଗବେଷଣା ହୋଇଛି, ସେଥିରୁ ଚାରୋଟି ମୁଖ୍ୟ ସିଦ୍ଧାନ୍ତ ମିଳିଛି । ଏ ସିଦ୍ଧାନ୍ତଗୁଡ଼ିକ ବିଚାରକୁ ନେଲାବେଳେ ଭାବିବା ଉଚିତ ନୁହେଁ ଯେ, ଏଗୁଡ଼ିକରେ ବ୍ୟତିକ୍ରମ ନାହିଁ । ସ୍ଥଳ ବିଶେଷରେ ବ୍ୟତିକ୍ରମ ଥିବା ସତ୍ତ୍ୱେ ଅଧିକାଂଶ ଲୋକଙ୍କ କ୍ଷେତ୍ରରେ ଯେଉଁ ନିୟମ ଦେଖାଯାଏ, ତାକୁ ଏକ ସମାଜ ବିଜ୍ଞାନ-ସମ୍ମତ ନିୟମ ରୂପେ ଗ୍ରହଣ କରାଯାଇଥାଏ ।

**ଭଲ ଖବର ଓ ଖରାପ ଖବର—**

ଆପଣ ନିଜକୁ ଗୋଟିଏ ପ୍ରଶ୍ନ ପଚାରନ୍ତୁ । ଧରାଯାଉ ଆପଣ ଜାଣନ୍ତି, ଦାସବାବୁ ତାଙ୍କର ସ୍ତ୍ରୀ ଓ ଦୁଇଟି ସନ୍ତାନ ସହିତ ଆପଣଙ୍କ ସହରରେ ବେଶ୍ କିଛିଦିନ ଧରି ବସବାସ କରୁଛନ୍ତି । ସେ ଜଣେ ପ୍ରତିଷ୍ଠିତ ବ୍ୟାଙ୍କ କର୍ମଚାରୀ ଓ ହୃଦୟବାନ ଲୋକ । ତାଙ୍କର କାର୍ଯ୍ୟ ଓ ସମାଜ ସେବା ପାଇଁ ସ୍ଥାନୀୟ ସମ୍ବାଦପତ୍ର ବହୁବାର ତାଙ୍କୁ ପ୍ରଶଂସା କରିଛି । ତା'ପରେ ଦିନେ ପୋଲିସକୁ ଲାଞ୍ଚ ଦେଉଥିବା ବେଳେ ତାଙ୍କୁ ଗିରଫ କରାଗଲା । ବର୍ତ୍ତମାନ ପ୍ରଶ୍ନ ହେଉଛି—କେଉଁଟିକୁ ଆପଣ ଅଧିକ ଗୁରୁତ୍ୱ ଦେବେ ? ଦାସବାବୁଙ୍କର ଦୀର୍ଘଦିନର ସମାଜ ସେବା କି ଦାୟିତ୍ୱହୀନ କାର୍ଯ୍ୟ ?

ଅଧିକାଂଶ ଗବେଷଣାରୁ ଜଣାଯାଇଛି ଯେ, ଲୋକେ ଖରାପ ଖବର ଉପରେ ଅଧିକ ଗୁରୁତ୍ୱ ଆରୋପ କରନ୍ତି । ଅନେକ ସମୟରେ ଲୋକେ ବିଶ୍ୱାସ କରନ୍ତି ଯେ ଭଲ ଖବର ଅପେକ୍ଷା ଖରାପ ଖବର ବ୍ୟକ୍ତି ସମ୍ପର୍କରେ ଅଧିକ ସୂଚନା ଦେଇଥାଏ । କେତେଜଣ ଗବେଷକ ତିନି ପ୍ରକାର ତାଲିକା ପ୍ରସ୍ତୁତ କଲେ । ପ୍ରଥମ ତାଲିକାରେ ଜଣେ କାଳ୍ପନିକ ବ୍ୟକ୍ତିଙ୍କୁ ଭଲ ବିଶେଷଣଦ୍ୱାରା ବର୍ଣ୍ଣନା କରାଗଲା । ଦ୍ୱିତୀୟ ତାଲିକାରେ ଆଉଜଣେ କାଳ୍ପନିକ ବ୍ୟକ୍ତିଙ୍କୁ ସମାନ ସଂଖ୍ୟକ ଖରାପ ବିଶେଷଣ ଦ୍ୱାରା ବର୍ଣ୍ଣନା କରାଗଲା । ତୃତୀୟ ତାଲିକାରେ ତୃତୀୟ କାଳ୍ପନିକ ବ୍ୟକ୍ତିଙ୍କୁ ସମାନ ସଂଖ୍ୟକ ବିଶେଷଣ ଦ୍ୱାରା ବର୍ଣ୍ଣନା କରାଗଲା ଓ ଏ ବିଶେଷଣଗୁଡ଼ିକ ଭଲ କିମ୍ବା ଖରାପ ନ ଥିଲା । ତିନୋଟି ତାଲିକାକୁ ବହୁ ଲୋକଙ୍କୁ ଦିଆଯାଇ ପଚରାଗଲା ଯେ, କେଉଁ ତାଲିକାଟି ସେମାନେ ପୂର୍ଣ୍ଣାଙ୍ଗ ଓ ସୂଚନା-ବହୁଳ ବୋଲି ବିଚାର କରୁଛନ୍ତି ? ଅନ୍ୟ ଭାଷାରେ ପଚାରିଲେ, କେଉଁ ତାଲିକାଟି ପଢ଼ି ସାରିବା ପରେ ବର୍ଣ୍ଣିତ ବ୍ୟକ୍ତିସମ୍ପର୍କରେ ଆଉକିଛି ଜାଣିବା ପାଇଁ ସବୁଠାରୁ କମ୍ ଇଚ୍ଛା ହେଉଛି ? ଦେଖାଗଲା ଯେ ଖରାପ ବିଶେଷଣ ପୂର୍ଣ୍ଣ ତାଲିକାଟିକୁ ପୂର୍ଣ୍ଣାଙ୍ଗ ବୋଲି ଲୋକମାନେ ବିଚାର କରୁଛନ୍ତି ।

ବିଭିନ୍ନ କ୍ଷେତ୍ରରେ ଖରାପ ଖବର ଉପରେ ଏପରି ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ମନୋବିଜ୍ଞାନୀ ମେଫିଲ୍ଡ ବିଭିନ୍ନ ସାକ୍ଷାତକାରର ଉପାଦାନ ବିଶ୍ଳେଷଣ କରି ଦର୍ଶାଇଛନ୍ତି ଯେ, ସାକ୍ଷାତ୍କାର (interveiw)ରେ କୌଣସି ପ୍ରାର୍ଥୀ ଉପଯୋଗୀ ଉତ୍ତର ଦେଲେ ପ୍ରାର୍ଥୀଟି ନିଯୁକ୍ତି ନ ପାଇ ପାରେ, ମାତ୍ର ଯଦି ପ୍ରାର୍ଥୀଟି ଅନୁପଯୋଗୀ ଓ ଖରାପ ଉତ୍ତର-ଦିଏ, ତେବେ ତା'ର ବିଫଳତାର ସମ୍ଭାବନା ଖୁବ୍ ବଢ଼ିଯାଏ । ଯେଉଁମାନେ ସାକ୍ଷାତ୍କାର ପରିଚାଳନା କରନ୍ତି, ସେମାନେ ପ୍ରାର୍ଥୀର ଗୁଣ ଦେଖି ପୁରସ୍କୃତ କରିବା ପରିବର୍ତ୍ତେ ତା'ର ଅବଗୁଣ ଦେଖି ବହିଷ୍କୃତ କରିବାକୁ ବେଶୀ ଆଗଭର । ପୁଣି ଅସୁବିଧାର କଥା ଯେ ପ୍ରାର୍ଥୀର ଯେଉଁ ଉତ୍ତର ଜଣକୁ ସୁଗୁଣ ବୋଲି ମନେ ହୁଏ, ସେହି ଉତ୍ତର ଅନ୍ୟଜଣକୁ ଅବଗୁଣ ବୋଲି ଜଣାପଡ଼େ । ମୋଟ ଉପରେ ବହୁ ପରୀକ୍ଷାରୁ ସିଦ୍ଧାନ୍ତ ମିଳେ ଯେ ଲୋକ-ମାନେ ଖରାପ ଖବର ଉପରେ ବେଶୀ ଜୋର ଦିଅନ୍ତି ।

ଏପରି କାହିଁକି ହୁଏ ?—ତାହା ଏକ ପ୍ରଶ୍ନ । କେତେକ ମନୋବିଜ୍ଞାନୀଙ୍କ ମତରେ ଭଲ ଗୁଣଗୁଡ଼ିକ ଖରାପ ଗୁଣର ମାତ୍ରାକୁ ଯେତିକି କମାଇ ଦିଏ, ଖରାପ ଗୁଣଗୁଡ଼ିକ ଭଲ ଗୁଣର ମାତ୍ରାକୁ ତା'ଠାରୁ ଅଧିକ କମାଇ ଦିଏ । ଉଦାହରଣ ସ୍ୱରୂପ, ସୁଦକ୍ଷ ପ୍ରଶାସକ ରୂପେ ଜଣେ ବ୍ୟକ୍ତିର ସୁନାମ ଥାଇ ପାରେ । ମାତ୍ର ଆପଣଙ୍କର ଯଦି ସନ୍ଦେହ ହୁଏ ଯେ, ସେହି ବ୍ୟକ୍ତି ଜଣକ ତାଙ୍କ ପୂର୍ବ ମାଲିକର ଅର୍ଥ ଆତ୍ମସାତ୍ କରିଥିଲେ, ତେବେ ଆପଣ ସେ ବ୍ୟକ୍ତିକୁ ନିଜ ଅନୁଷ୍ଠାନର ଦୋଷ ତ୍ରୁଟି ସୁଧାରିବାର ଦାୟିତ୍ୱ ଦେବେ କି?

ଅବଶ୍ୟ ଅଳ୍ପ କେତେକ ସ୍ଥଳରେ କେତେଗୁଡ଼ିଏ ଭଲ ଗୁଣ ସହିତ ଅଳ୍ପ କିଛି ଖରାପ ଗୁଣ ମିଶାଇ ବର୍ଣ୍ଣନା କଲେ ବ୍ୟକ୍ତି ସମ୍ପର୍କରେ ଧାରଣା ଉନ୍ନତ ହୁଏ । ଏପରି

ସ୍ଥଳରେ ମନେ ହୁଏ ଯେ ଦିଆ ଯାଇଥିବା ଖବର ଖୁବ୍ ନିରପେକ୍ଷ ଓ ବିଶ୍ୱାସଯୋଗ୍ୟ । ଖଗ୍ରପ ଗୁଣର ସାମାନ୍ୟ ସ୍ପର୍ଶରେ ବ୍ୟକ୍ତି ଅବାସ୍ତବ ନ ହୋଇ ମାନବୋଚିତ ଜଣା ପଡ଼ିବାରୁ ଅଧିକ ପ୍ରିୟ ମନେହୁଏ ।

## ମୁଖ୍ୟ ଚିହ୍ନ ଓ ଗୌଣ ଚିହ୍ନ :

କିଛି ବର୍ଷ ତଳେ ମନୋବିଜ୍ଞାନୀ ଆସ୍ ଗୋଟିଏ ପରୀକ୍ଷା କରିଥିଲେ । ସେ ଦୁଇଟି କାଳ୍ପନିକ ବ୍ୟକ୍ତିଙ୍କୁ ବର୍ଣ୍ଣନା କରିବା ପାଇଁ ବିଶେଷଣର ଦୁଇଟି ତାଲିକା ପ୍ରସ୍ତୁତ କଲେ । ପ୍ରଥମ ତାଲିକାରେ ସୁଦକ୍ଷ, ସରସ, ପରିଶ୍ରମୀ, ସଚେତନ, ବୁଦ୍ଧିମାନ, ସଂକଳ୍ପବଦ୍ଧ ଓ ବାସ୍ତବବାଦୀ ରହିଲେ । ଦ୍ୱିତୀୟ ତାଲିକାଟି ଏକା ପରି ଥିଲା, କେବଳ ସରସ ସ୍ଥାନରେ ନିରସ ରଖାଯାଇଥିଲା । ଏ ଦୁଇଟି ତାଲିକା ବହୁତ ଲୋକଙ୍କୁ ଦିଆଯାଇ ପଚରାଗଲା ଯେ ବର୍ଣ୍ଣିତ ଦୁଇଟି ଲୋକଙ୍କୁ ସେମାନେ ଆଉ କିପରି ଭାବରେ ବର୍ଣ୍ଣନା କରିପାରିବେ ? ଆଶା କରାଯାଉଥିଲା, ତାଲିକା ଦୁଇଟିରେ କେବଳ ଗୋଟିଏ ବିଶେଷଣ ବ୍ୟତୀତ ଅନ୍ୟ ସବୁ ବିଶେଷଣ ସମାନ ଥିବାରୁ ଲୋକମାନେ କାଳ୍ପନିକ ବ୍ୟକ୍ତି ଦୁଇଜଣଙ୍କୁ ଅତି ବେଶୀ ପୃଥକ ଭାବରେ ଚିତ୍ରଣ କରିବେ ନାହିଁ । ମାତ୍ର ପରୀକ୍ଷାରେ ଦେଖାଗଲା ଯେ, ଲୋକମାନଙ୍କଠାରୁ ମିଳିଥିବା ଚିତ୍ରଣ ଦୁଇଟି ସମ୍ପୂର୍ଣ୍ଣ ଭାବରେ ପୃଥକ । ପ୍ରଥମ ତାଲିକାର ବ୍ୟକ୍ତିକୁ ଅଧିକ ବିଜ୍ଞ, ଲୋକପ୍ରିୟ, କୌତୁକ ପ୍ରିୟ ଓ କଳ୍ପନାପ୍ରବଣ ବୋଲି ଚିତ୍ରଣ କରାଯାଇଛି । ଅଧିକ ଗବେଷଣା କରାଯାଇ ପୁଣି ଦେଖାଗଲା ଯେ, ସରସ ସ୍ଥାନରେ 'ରୁକ୍ଷ' ବିଶେଷଣ ରଖି ଦୁଇଟି ତାଲିକା କଲେ ଲୋକମାନଙ୍କ ଠାରୁ ପୂରାପୂରି ଅଲଗା ଚିତ୍ରଣ ମିଳୁନାହିଁ ।

କେତେଗୁଡ଼ିଏ ଗୁଣ ବା ଚିହ୍ନ ଅନ୍ୟ ଗୁଣ ବା ଚିହ୍ନ ଅପେକ୍ଷା ବେଶୀ ପରିମାଣରେ ଆମର ସାଧାରଣ ଧାରଣାକୁ ପ୍ରଭାବିତ କରେ । ଉପର ଦୃଷ୍ଟାନ୍ତରେ ସରସ-ନିରସ ବିଶେ-ଷଣ ଦ୍ୱୟର ପ୍ରଭାବ ନମ୍ର-ରୁକ୍ଷ ଚିହ୍ନ ଦ୍ୱୟର ପ୍ରଭାବଠାରୁ ଅଧିକ । ଅନ୍ୟ ଭାଷାରେ କହିଲେ ସରସ-ନିରସ ମୁଖ୍ୟ ଚିହ୍ନ ରୂପେ ଓ ନମ୍ର-ରୁକ୍ଷ ଗୌଣ ଚିହ୍ନ ରୂପେ କାର୍ଯ୍ୟ କରେ ।

## ଅଳ୍ପ କଥାରୁ ବେଶୀ ଧାରଣା :

ପୂର୍ବ ଆଲୋଚନା ଅନୁଯାୟୀ ଆମେ ଖୁବ୍ ଅଳ୍ପ ସୂଚନାକୁ ଭିତ୍ତି କରି ଅଧିକ ଧାରଣା ଗଢ଼ି ତୋଳୁ । ବ୍ୟକ୍ତି ସମ୍ପର୍କରେ ଏକ ପୂରାପୂରି ଛବି ଆଙ୍କିବାର ଇଚ୍ଛା ଆମ ଭିତରେ ଖୁବ୍ ବେଶୀ । ସୁତରାଂ ଅଳ୍ପ କେତେକ ଗୁଣ ଜାଣିଥିଲେ ମଧ୍ୟ ଆମେ ଶୂନ୍ୟ-ସ୍ଥାନ ପୂରଣ କରିବାକୁ ଆଉ କେତେଗୁଡ଼ିଏ ସେଥିରେ ଯୋଗ କରୁ । ଦୈନନ୍ଦିନ ଜୀବନର କେତେକ ଅଭିଜ୍ଞତା ଆମକୁ ଜଣାଇଥାଏ ଯେ, କେତେଗୁଡ଼ିଏ ଗୁଣ ବା ଅବ-ଗୁଣ ସାଧାରଣତଃ ଏକାଠି ରହନ୍ତି । ଫଳରେ ଗୋଟିଏ ଗୁଣ ଜାଣିଲେ ଆମେ ଅନ୍ୟ-ଗୁଡ଼ିକର ସିଦ୍ଧାନ୍ତ ନେଉ ବା ଯୋଡ଼ି ଦେଉ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇ ପାରେ ଯେ,

କୌଣସି ବ୍ୟକ୍ତି ଜୁଆ ଖେଳ କରି ଅର୍ଥ ନଷ୍ଟ କରିଛି ଜାଣିଲେ ଆମେ ଧରିନେଉ ଯେ ସେ ବ୍ୟକ୍ତି ଜଣେ ମଦ୍ୟପ, ଅନ୍ୟ ନାରୀ ପ୍ରତି ଆସକ୍ତ ଓ ସ୍ୱେରକାମରେ ମଧ୍ୟ ଜଡ଼ିତ ।

ଏ ପ୍ରସଙ୍ଗରେ ଅନ୍ୟ କେତୋଟି କଥା ମଧ୍ୟ ମନେ ରଖିବାକୁ ହେବ । ପ୍ରଥମତଃ ଗୁଡ଼ିଏ ଗୁଣକୁ ଏକତ୍ର କରିବାର ଚେଷ୍ଟା ବୟସ ଅନୁପାତରେ ଭିନ୍ନ ହୋଇଥାଏ । ଅର୍ଥାତ୍, ବୟସ୍କ ଲୋକମାନେ ଯେଉଁ ଯେଉଁ ଗୁଣସବୁ ଏକତ୍ର ରହେ ବୋଲି ଭାବନ୍ତି, ତାହା ପିଲାମାନଙ୍କର ବିଚାରରେ ଥିବା ଏକତ୍ରିତ ଗୁଣମାନଙ୍କଠାରୁ ଭିନ୍ନ । ଦ୍ୱିତୀୟତଃ ଏକ ନିର୍ଦ୍ଦିଷ୍ଟ ସଂସ୍କୃତିର ଲୋକମାନେ ଏ ଦିଗରେ ପ୍ରାୟ ଏକ ପ୍ରକାର ବିଚାର କରନ୍ତି । ତଥାପି ସେ ସଂସ୍କୃତିରେ ବିଭିନ୍ନ ବ୍ୟକ୍ତିଙ୍କର ଭାବଧାରାରେ ପାର୍ଥକ୍ୟ ଦେଖାଯାଏ । ତୃତୀୟତଃ ଯେଉଁ ଯେଉଁ ଗୁଣସବୁ ସହାବସ୍ଥାନ କରନ୍ତି ବୋଲି ଲୋକଙ୍କର ବିଶ୍ୱାସ, ବାସ୍ତବ କ୍ଷେତ୍ରରେ ସେପରି ଗୁଣସବୁ ଏକାଠି ରହୁଥିବାର କେତେକ ପ୍ରମାଣ ମିଳିଛି । ଗୋଟିଏ ଗବେଷଣାରୁ ଦେଖାଯାଇଛି ଯେ, ଲୋକମାନେ ବିଶେଷଣଗୁଡ଼ିକ ମଧ୍ୟରୁ ଯେଉଁ ଗୁଡ଼ିକ ପ୍ରାୟ ଏକତ୍ର ଦେଖାଇଥାଆନ୍ତି, ତା' ସହିତ କମ୍ପ୍ୟୁଟର ବିଭାଗୀକରଣର ମେଳ ଦେଖାଯାଇଛି ।

## ଯୋଗ ଓ ହାରାହାରି ନିୟମ :

ଲୋକଙ୍କ ସମ୍ପର୍କରେ ଧାରଣା ଗଠନ ନେଇ ଚତୁର୍ଥ ଓ ଶେଷ ପ୍ରଶ୍ନଟି ହେଉଛି— ଆମେ ପାଉଥିବା ସୂଚନା ସବୁ କିପରି ଭାବରେ ଏକତ୍ର କରି ଏକ ପୂର୍ଣ୍ଣ ଚିତ୍ର ଅଙ୍କନ କରୁ ? ଏହାର ଉତ୍ତରରେ ଦୁଇଟି ନିୟମର ଉଲ୍ଲେଖ କରାଯାଇଛି । ଯୋଗ ନିୟମ ଓ ହାରାହାରି ନିୟମ । ଯୋଗ ନିୟମ ଅନୁସାରେ ଆମେ ଯେଉଁ ସମସ୍ତ ଖବର ବା ସୂଚନା ପାଉ, ତାକୁ ମିଶାଇ ଦେବା ଫଳରେ ଯେଉଁ ଚିତ୍ର ମିଳେ, ତାହା ଆମେ ଗ୍ରହଣ କରୁ । ଅନ୍ୟ ପକ୍ଷରେ ହାରାହାରି ନିୟମାନୁଯାୟୀ ଆମେ ସମସ୍ତ ଖବର ମିଶାଇଲା ପରେ ତାକୁ ଖବର ବା ସୂଚନାର ସଂଖ୍ୟାଦ୍ୱାରା ଭାଗ କଲେ ଯେଉଁ ଭାଗଫଳ ପାଉ, ତାହା ବ୍ୟକ୍ତି ସମ୍ପର୍କରେ ଆମର ସାଧାରଣ ଭାବନାକୁ ରୂପ ଦିଏ ।

ଉପରୋକ୍ତ ନିୟମ ଦୁଇଟି ବହୁ ଅଂଶରେ ପରସ୍ପର ବିରୋଧୀ । ପ୍ରକୃତରେ କେଉଁ ନିୟମଟି କାର୍ଯ୍ୟ କରେ, ତାହାର ମୂଲ୍ୟାୟନ କରିବା ପୂର୍ବରୁ ପ୍ରଥମେ ଯେଉଁ ଖବର ବା ସୂଚନାଗୁଡ଼ିକର ଯୋଗଫଳ ବା ହାରାହାରି ନିର୍ଣ୍ଣିତ କଥା ଉଠୁଛି, ସେମାନଙ୍କର ପରିମାଣ କଥା ଭାବିବାକୁ ପଡ଼ିବ । ଏହା ଏପରି କିଛି ଦୁରୂହ କାର୍ଯ୍ୟ ନୁହେଁ । ମନୋବିଜ୍ଞାନୀମାନେ ସାଧୁ, ଅସାଧୁ, ସତ୍ୟବାଦୀ, ମିଥ୍ୟାବାଦୀ ଓ କର୍ତ୍ତବ୍ୟନିଷ୍ଠ ପରି ଶହ ଶହ ବିଶେଷଣର ତାଲିକା ହଜାର ହଜାର ଲୋକମାନଙ୍କୁ ଦେଇ ସେଗୁଡ଼ିକର ମୂଲ୍ୟାଙ୍କ ନିରୂପଣ କରିଛନ୍ତି । ପ୍ରତ୍ୟେକ ଲୋକକୁ ଏ ବିଶେଷଣ ଗୁଡ଼ିକର ତାଲିକା ଦିଆଯାଇ ପଚରାଗଲା ଯେ, ସେମାନଙ୍କୁ ଯଦି ୧ରୁ ୭ ପର୍ଯ୍ୟନ୍ତ ମୂଲ୍ୟ ଥିବା ଗୋଟିଏ ସ୍କେଲ ଦିଆଯାଏ ଏବଂ ୧ ସ୍ଥାନଟି ସବୁଠାରୁ ଖରାପ ଓ ୭ ସ୍ଥାନଟି ସବୁଠାରୁ ଭଲ ବୋଲି ଧରାଯାଏ, ତେବେ

ପ୍ରତି ବିଶେଷଣକୁ ସେମାନେ ଉକ୍ତ ସ୍କେଲରେ କେଉଁ କେଉଁ ସ୍ଥାନ ଦେବେ ? ବିଭିନ୍ନ ଲୋକ ବିଭିନ୍ନ ବିଶେଷଣ ଗୁଡ଼ିକୁ ପୃଥକ ପୃଥକ ସ୍ଥାନ ଦେଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ବିଶେଷଣ ପାଇଁ ସବୁ ଲୋକଙ୍କ ଉତ୍ତରରେ କିଛି ପରିମାଣରେ ସାମଞ୍ଜସ୍ୟ ରହିବ । ପ୍ରାୟ ପ୍ରତ୍ୟେକ ଲୋକ ସାଧୁତାକୁ ୭ର ନିକଟ ସ୍ଥାନ ଓ ଅସାଧୁତାକୁ ୧ର ନିକଟ ସ୍ଥାନ ଦେବେ । ସବୁଲୋକଙ୍କର ବିଚାରକୁ ଅନୁଶୀଳନ କରି ପାଶ୍ଚାତ୍ୟ ଜଗତରେ ଦେଖାଯାଇଛି ଯେ ସାଧୁତା ଓ ଅସାଧୁତାର ମୂଲ୍ୟାଙ୍କ ଯଥାକ୍ରମେ ୫.୭୩ ଓ ୦.୨୭ । ଆମ ଦେଶର ପରିପ୍ରେକ୍ଷୀରେ ଏହାଠାରୁ ଭିନ୍ନ ମୂଲ୍ୟ ମିଳିଲେ ବି ନିକଟ ସ୍ଥାନ ମିଳିବାର ଆଶା କରାଯାଏ ।

ପ୍ରତି ବିଶେଷଣର ସଂଖ୍ୟାତ୍ମକ ମୂଲ୍ୟ ଆଲୋଚନା କରିବାର ଏକ ବିଶେଷ ତାତ୍ପର୍ଯ୍ୟ ରହିଛି । ଏହାକୁ ଏକ ଉଦାହରଣ ଦ୍ୱାରା ଖୁବ୍ ସ୍ପଷ୍ଟ କରାଯାଇ ପାରେ । ଧରାଯାଉ ଜଣେ ବ୍ୟକ୍ତିଙ୍କୁ ବର୍ଣ୍ଣନା କରାଯିବା ପ୍ରସଙ୍ଗରେ କର୍ତ୍ତବ୍ୟନିଷ୍ଠ ଓ ସାଧୁ ବିଶେଷଣ ଦୁଇଟିର ପ୍ରୟୋଗ କରାଗଲା । ଆଉ ଜଣେ ବ୍ୟକ୍ତିକୁ ବର୍ଣ୍ଣନା କରିବା ପାଇଁ କର୍ତ୍ତବ୍ୟନିଷ୍ଠ, ସାଧୁ, ମାର୍ଜିତ ଓ ଅଧ୍ୟବସାୟୀ ବିଶେଷଣ ଚାରୋଟିର ପ୍ରୟୋଗ କରାଗଲା । କେଉଁ ବ୍ୟକ୍ତିଙ୍କ ସମ୍ପର୍କରେ ଆପଣଙ୍କର ଉଚ୍ଚଧାରଣା ସୃଷ୍ଟି ହେବ ?

ପୂର୍ବ ପରୀକ୍ଷାରୁ ଦେଖାଯାଇଛି ଯେ କର୍ତ୍ତବ୍ୟନିଷ୍ଠ ଓ ସାଧୁ ଦୁଇଟି ଖୁବ୍ ଉଚ୍ଚ-ସ୍ଥାନୀୟ ବିଶେଷଣ; ଉଭୟଙ୍କ ମୂଲ୍ୟାଙ୍କ ୫.୭୩ । ମାର୍ଜିତ ଓ ଅଧ୍ୟବସାୟୀ ଦୁଇଟି ମଧ୍ୟମ ସ୍ଥାନୀୟ ବିଶେଷଣ; ସେମାନଙ୍କ ମୂଲ୍ୟାଙ୍କ ଯଥାକ୍ରମେ ୩.୭୨ ଓ ୩.୪୭ । ଯଦି ଆପଣ ଯୋଗ ନିୟମ ଦ୍ୱାରା ପ୍ରଭାବିତ ହେଉଥାଆନ୍ତି, ତେବେ ଆପଣ ନିଶ୍ଚୟ ଦ୍ୱିତୀୟ ବ୍ୟକ୍ତିଙ୍କ ବିଷୟରେ ଉଚ୍ଚଧାରଣା ପୋଷଣ କରିବେ । କାରଣ ଚାରୋଟି ବିଶେଷଣର ଯୋଗଫଳ ଦୁଇଟି ବିଶେଷଣର ଯୋଗଫଳଠାରୁ ଅଧିକ ହେବ । ମାତ୍ର ହାରାହାରି ନିୟମ ଆପଣଙ୍କ କ୍ଷେତ୍ରରେ କାମ କରୁଥିଲେ, ପୃଥକ ଫଳ ହେବ । ପ୍ରଥମ ବ୍ୟକ୍ତିଙ୍କୁ ବିଚାର କଲାବେଳେ ଆପଣ ହାରାହାରି ନିୟମରେ ତାଙ୍କୁ (୫.୭୩ + ୫.୭୩) ÷ ୨ = ୫.୭୩ ମୂଲ୍ୟ ଦେବେ । ଦ୍ୱିତୀୟ ଲୋକଟିକୁ ମୂଲ୍ୟାୟନ କଲାବେଳେ ଆପଣ (୫.୭୩ + ୫.୭୩ + ୩.୭୨ + ୩.୪୭) ÷ ୪ = ୪.୬୫ ମୂଲ୍ୟାଙ୍କ ଦେବେ । ଫଳତଃ ପ୍ରଥମ ଲୋକଟି ସମ୍ପର୍କରେ ଆପଣଙ୍କର ଉଚ୍ଚ ଧାରଣା ହେବ ।

ଗବେଷଣାରୁ ଦେଖାଯାଇଛି ଯେ ଅଧିକାଂଶ ଲୋକ ଅନ୍ୟ ସମ୍ପର୍କରେ ଧାରଣା କଲାବେଳେ ହାରାହାରି ନିୟମ ଦ୍ୱାରା ଖବର ସବୁ ଏକତ୍ର କରି ଧାରଣା ପୋଷଣ କରନ୍ତି । ଏଥିରୁ ଆପଣଙ୍କର ଶିକ୍ଷା କରିବାର କଥା ଯେ, ଯଦି ନିଜ ବନ୍ଧୁ ବିଷୟରେ ଅନ୍ୟ ପାଖରେ ଉଚ୍ଚ ଧାରଣା ଦେବାକୁ ଚାହୁଁଥାଆନ୍ତି, ତେବେ ନିଜ ବନ୍ଧୁଙ୍କ ବିଷୟରେ ଉଚ୍ଚ ଧରଣର ଓ ମଧ୍ୟମ ଧରଣର ମିଶାମିଶି ଅନେକ ଗୁଡ଼ିଏ ବିଶେଷଣ ପ୍ରୟୋଗ କରିବା ଠାରୁ ଅଳ୍ପସଂଖ୍ୟକ ଉଚ୍ଚ ଧରଣର ବିଶେଷଣ ପ୍ରୟୋଗ କରିବା ଶ୍ରେୟସ୍କର ।

ଏ ବ୍ୟବହାର ନିୟମ କେବଳ ଭଲ ବିଶେଷଣ ପ୍ରୟୋଗ କ୍ଷେତ୍ରରେ ପ୍ରଯୁଜ୍ୟ ନୁହେଁ, ଖରାପ ବିଶେଷଣ ପ୍ରୟୋଗ କ୍ଷେତ୍ରରେ ମଧ୍ୟ କାର୍ଯ୍ୟ କରେ; ଅର୍ଥାତ୍ କେତୋଟି ଖୁବ୍ ଖରାପ ବିଶେଷଣ ପ୍ରୟୋଗ କରି ଗୋଟିଏ ବ୍ୟକ୍ତି ବିଷୟରେ ଯେଉଁ ଖରାପ ଧାରଣା ସୃଷ୍ଟି କରାଯାଇପାରେ, କେତୋଟି ଖୁବ୍ ଖରାପ ଓ କେତୋଟି ମଧ୍ୟମ ଧରଣର ଖରାପ ବିଶେଷଣର ଏକତ୍ର ପ୍ରୟୋଗରେ ତା'ଠାରୁ କମ୍ ଖରାପ ଧାରଣା ସୃଷ୍ଟି ହୋଇଥାଏ ।

ଆଲୋଚିତ ସ୍ୱେଗୋଟି ଦିଗରେ "ଗବେଷିତ ତଥ୍ୟର" ସାରମର୍ମକୁ ସ୍ୱେଗୋଟି ବାକ୍ୟରେ ପ୍ରକାଶ କରାଯାଇପାରେ । ଦେଖାଯାଏ ଯେ ବ୍ୟକ୍ତି ସମ୍ପର୍କରେ ଭଲ ଖବର ବା ସୁଗୁଣଠାରୁ ଖରାପ ଖବର ବା ଦୁର୍ଗୁଣକୁ ଲୋକେ ବେଶୀ ଗୁରୁତ୍ୱ ଦିଅନ୍ତି । କେତେଗୁଡ଼ିଏ ଗୁଣ ବା ଚିହ୍ନ ଆମର ଧାରଣା ଗଠନରେ ବେଶୀ ଭୂମିକା ନିଅନ୍ତି । ଅନେକ ସମୟରେ ଜାଣିଥିବା ଅଳ୍ପ ଖବରକୁ ଭିତ୍ତି କରି ଲୋକେ ବହୁତ କଥା ଭାବିନିଅନ୍ତି । ବ୍ୟକ୍ତି ସମ୍ପର୍କରେ ଧାରଣା ପୋଷଣ କଲାବେଳେ ତା' ସମ୍ପର୍କରେ ଜାଣିଥିବା ଖବର ବା ଗୁଣଗୁଡ଼ିକରେ ଏକ ସାମଞ୍ଜସ୍ୟ ନେଇ ପୂର୍ଣ୍ଣାଙ୍ଗ ଚିତ୍ର ଅଙ୍କନ କରିବାକୁ ଲୋକମାନେ ଚେଷ୍ଟା କରନ୍ତି ।

## ଅନ୍ୟମାନଙ୍କ ସହ ଭଲରେ ଚଳିବା ପ୍ରସଙ୍ଗରେ

ଆଧୁନିକ ଯୁଗରେ ବିଜ୍ଞାନ ଓ କାରିଗରୀ ବିଦ୍ୟାର ଅଦ୍ଭୁତ ବିକାଶ ଘଟି ମନୁଷ୍ୟର ସ୍ୱାଚ୍ଛନ୍ଦ୍ୟ ବୃଦ୍ଧି ପାଇଛି ସତ୍ୟ କିନ୍ତୁ ମନୁଷ୍ୟ ମନୁଷ୍ୟ ମଧ୍ୟରେ, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା ପଥରେ ଅନେକ ବାଧା ଏବେ ମଧ୍ୟ ରହିଛି । ଅନ୍ୟମାନଙ୍କ ସହିତ ସୁସମ୍ପର୍କ ଗଢ଼ି ତୋଳିବା ପାଇଁ ମଣିଷ ଚାହେଁ । କିନ୍ତୁ ବହୁ ସମୟରେ ବହୁ କ୍ଷେତ୍ରରେ ଜଟିଳତା ସୃଷ୍ଟି ହୁଏ ଓ ସୁସମ୍ପର୍କ ବାଧା ପାଏ । ମନୁଷ୍ୟର ମାନସିକ କାର୍ଯ୍ୟକଳାପ ଓ ବ୍ୟବହାର ଏତେ ଜଟିଳ ଯେ ଏକ ଯାନ୍ତ୍ରିକ ଭିତ୍ତିରେ ସେସବୁକୁ ସଜାଡ଼ି ଦୁଇଟି ବ୍ୟକ୍ତି ବା ଦୁଇଟି ଗୋଷ୍ଠୀ ମଧ୍ୟରେ ବନ୍ଧୁତ୍ୱପୂର୍ଣ୍ଣ ସଂଯୋଗ ସ୍ଥାପିତ କରିବା ସମ୍ଭବ ନୁହେଁ । ଆମର ଦୈନନ୍ଦିନ ଜୀବନଯାତ୍ରାରେ ବହୁ ଘଟଣାର ପ୍ରବାହ ସ୍ୱାଭାବିକ ସମ୍ପର୍କ ପ୍ରତିଷ୍ଠାରେ ବାଧା ସୃଷ୍ଟି କରିଥାଏ । ସବୁଠାରୁ କୌତୂହଳପୂର୍ଣ୍ଣ କଥା ହେଉଛି ଯେ ଅନେକ ସମୟରେ ଅନ୍ୟର ଆମ ପ୍ରତି ବ୍ୟବହାର ଆମକୁ ଯେତେ ଦୁଃଖ ବା ଆନନ୍ଦ ନ ଦିଏ, ସେ ବ୍ୟବହାରର ଉଦ୍ଦେଶ୍ୟ ସମ୍ପର୍କରେ ଆମେ ଯାହା ଭାବୁ—ତାହା ଆମକୁ ଅଧିକ ଦୁଃଖ ବା

ଆନନ୍ଦ ଦିଏ । ଅନ୍ୟର ବ୍ୟବହାରର କାରଣ ଭାବି ଆମର ସମ୍ପର୍କ ଖୁବ୍ ଭଲ ହୋଇ-ପାରେ କିମ୍ବା ଖରାପ ମଧ୍ୟ ହୋଇପାରେ ।

ଅନ୍ୟ ଲୋକଟି ଆମକୁ ଏକ ନିର୍ଦ୍ଦିଷ୍ଟ ବ୍ୟବହାର ଦେଖାଇଲା ପରେ ପରେ ଆମେ ଉଦ୍ଦେଶ୍ୟ ସମ୍ପର୍କରେ ଚିନ୍ତା କରିବା ଆରମ୍ଭ କରିଦେଉ । ସେ ଲୋକଟି ଅନ୍ୟମାନଙ୍କୁ ବ୍ୟବହାର ଦେଖାଇଥିଲେ ସୁଦ୍ଧା ଆମେ ସେ ବ୍ୟବହାରର କାରଣ ସମ୍ପର୍କରେ ଚିନ୍ତା କରିବା ଆରମ୍ଭ କରିଦେଉ । ଅନେକ ଜାଣିଥିବେ ଯେ ରାସ୍ତା ମଝିରେ ଖରାପ ହୋଇ ଯାଇଥିବା ଗୋଟିଏ କାର୍‌କୁ ମାଲିକ (ଭଦ୍ରମହିଳା) ସଜାଡ଼ିବାକୁ ଚେଷ୍ଟା କରୁଥିଲେ ଏବଂ ପାଖରୁ ଆଉ ଜଣେ ଭଦ୍ରବ୍ୟକ୍ତି ଆସି ଭଦ୍ରମହିଳାଙ୍କୁ ସାହାଯ୍ୟ କରୁଥିବାର ଦେଖିଲେ ଦେଖଣାହାରୀଙ୍କ ମନରେ କେତେ ପ୍ରକାର ପ୍ରକଳ୍ପମାନ କାମ କରେ । କିଏ ଭାବେ ଯେ ଗାଡ଼ିର ମାଲିକ ଜଣେ ମହିଳା ହୋଇଥିବାରୁ ପାଖ ଲୋକ ଜଣେ କାମ କରୁଛନ୍ତି । ଆଉ କେହି ଭାବନ୍ତି ଯେ ଗାଡ଼ିର ମାଲିକ ଧନୀ, ତେଣୁ ଭବିଷ୍ୟତରେ ଲାଭ ରଖି ଲୋକଟି କାମ କରୁଛି । ଅନ୍ୟ କେହି ଭାବନ୍ତି ଭଦ୍ରମହିଳାଙ୍କ ଗାଡ଼ିରେ କାମ କଲେ ଅନେକ ଲୋକ ତାଙ୍କୁ ଦେଖିବେ—ଏହା ଭାବି ଲୋକଜଣକ କାମ କରୁଛି । ବାସ୍ତବରେ ଘଟଣା ଭିନ୍ନ ହୋଇ-ପାରେ । ଅସୁବିଧାରେ ପଡ଼ିଥିବା ଜଣେ ବ୍ୟକ୍ତିକୁ ଅନ୍ୟ ବ୍ୟକ୍ତି ଜଣକ ସାହାଯ୍ୟ କରିବା ଉଚିତ ଭାବି ଲୋକଜଣକ କାର୍ଯ୍ୟ କରିପାରେ । ପ୍ରକୃତ କାରଣ ଯାହାହେଉନା କାହିଁକି, ବିଭିନ୍ନ ବ୍ୟକ୍ତି ବ୍ୟବହାରରେ ବିଭିନ୍ନ ଅନ୍ତର୍ନିହିତ କାରଣ ଚିନ୍ତା କରନ୍ତି । ଜୀବନର ବହୁ କ୍ଷେତ୍ରରେ ଅନ୍ୟର ବ୍ୟବହାରର କାରଣ ସମ୍ପର୍କରେ ଆମର ଚିନ୍ତା ଆମର ସାମାଜିକ ଜୀବନକୁ ପ୍ରଭାବିତ କରେ । ଏପରି ବ୍ୟବହାରଗତ କାରଣ ଚିନ୍ତା କଲାବେଳେ କି କି ମାନସିକ ପାତରଅନ୍ତର କାମ କରେ, ସେଗୁଡ଼ିକ ଜାଣିଲେ ସମନ୍ୱିତ ସାମାଜିକ ଜୀବନ ଗଢ଼ିବାରେ ବେଶ ସହାୟକ ହୁଏ ।

ସବୁ ଅବସ୍ଥାରେ ଯେ ଆମେ ଅନ୍ୟର ବ୍ୟବହାରର କାରଣ ସମ୍ପର୍କରେ ବେଶି ଚିନ୍ତା କରୁ, ତା' ନୁହେଁ । କେତେକ କ୍ଷେତ୍ରରେ ଏପରି ଚିନ୍ତାର ପରିସର ଖୁବ୍ ସୀମିତ । ଅନ୍ୟର ବ୍ୟବହାର ଖୁବ ସାଧାରଣ ଓ ସାମାଜିକ ପରମ୍ପରାସୂଚକ ହୋଇଥିଲେ ଆମର ଅଧିକ ଚିନ୍ତା କରିବାର ଅବକାଶ ନ ଥାଏ । ଜଣେ ବ୍ୟକ୍ତି ନିଜ ଝିଅର ବିବାହ ଉତ୍ସବରେ ଆମକୁ ନିମନ୍ତ୍ରଣ କରିଥିଲେ ସେ ବିଷୟରେ କାରଣର ଅନୁଶୀଳନ ଆମେ ସାଧାରଣତଃ କରି ନ ଥାଉ । ମନେ ମନେ ଧରି ନେଉ ଯେ ବ୍ୟକ୍ତି ଜଣକ ପାଞ୍ଚଶହ ଲୋକଙ୍କୁ ନିମନ୍ତ୍ରଣ କରିଛି ଏବଂ ସେ କ୍ଷେତ୍ରରେ ଆମ ପରି ଜଣେ ବି ଜଣଙ୍କୁ ନିମନ୍ତ୍ରଣ କରିଛି; ଆଉ ସେ କ୍ଷେତ୍ରରେ ଆମ ପରି ଜଣେ ଦୁଇଜଣଙ୍କୁ ଡାକିବାଟା ଆମକୁ ଶ୍ରଦ୍ଧା କରିବାର ନିର୍ଦ୍ଦିଷ୍ଟ ଲକ୍ଷଣ ନୁହେଁ । କିନ୍ତୁ ବ୍ୟକ୍ତିଜଣକ ଯଦି ଆମକୁ ଏକ ବଡ଼ ହୋଟେଲକୁ ନିମନ୍ତ୍ରଣ କରନ୍ତି, ତେବେ ତାଙ୍କର ଏପରି ବ୍ୟବହାର ମୂଳରେ କି ଉଦ୍ଦେଶ୍ୟ ଥାଇପାରେ—ତାହା ଚିନ୍ତା କରିବାକୁ ଆମେ ଆରମ୍ଭ କରୁ ।

ଅନ୍ୟ ବ୍ୟବହାରର ଉଦ୍ଦେଶ୍ୟ ବିଚାର କଲାବେଳେ ଆମେ ସାଧାରଣତଃ ଦୁଇ ପ୍ରକାରର ଉଦ୍ଦେଶ୍ୟ କଥା ଭାବୁ । ପ୍ରଥମଟି ହେଉଛି ବାହ୍ୟିକ ବା ପାରିପାର୍ଶ୍ୱିକ ଉଦ୍ଦେଶ୍ୟ । ଦ୍ୱିତୀୟଟି ହେଉଛି ଅନ୍ତର୍ନିହିତ ବା ବ୍ୟକ୍ତି ସମ୍ପୃକ୍ତ ଉଦ୍ଦେଶ୍ୟ । ବାହ୍ୟିକ ବା ପାରିପାର୍ଶ୍ୱିକ ଉଦ୍ଦେଶ୍ୟ ସ୍ପଷ୍ଟ ଜଣା ପଡ଼ୁଥିଲେ ଆମେ ଅନ୍ତର୍ନିହିତ ଉଦ୍ଦେଶ୍ୟ ସମ୍ପର୍କରେ ପ୍ରାୟ ଚିନ୍ତା କରି ନ ଥାଉ । ଜଣେ ଚିହ୍ନା ବ୍ୟକ୍ତିଙ୍କ ଘରେ ପହଞ୍ଚିଲା ପରେ ବ୍ୟକ୍ତି ଜଣକ ହସି ହସି ଅଭିବାଦନ ଜଣାଇଲେ । ଆମେ ତାଙ୍କ ବ୍ୟବହାରର କାରଣ ସମ୍ପର୍କରେ କିଛି ଚିନ୍ତା କରି ନ ଥିଲୁ । ଏହାର ବାହ୍ୟିକ କାରଣ ରହିଛି । ପରିସ୍ଥିତି ହେଉଛି ଅଭିବାଦନ ଜଣାଇବାର ଅବସ୍ଥା । ସୁତରାଂ ଆମେ ତାକୁ ସାଧାରଣ ବୋଲି ଧରିନେଉ । ମାତ୍ର ଆମକୁ ଦେଖି ବ୍ୟକ୍ତି ଜଣକ ମୁଖରେ ବିରକ୍ତତା ଫୁଟିଲେ ଆମେ କଳ୍ପନା କଳ୍ପନା ଆରମ୍ଭ କରୁ । ମୋଟ ଉପରେ ବାହ୍ୟିକ କାରଣ ଯେତେ ଅସ୍ପଷ୍ଟ ହେବ, ଅନ୍ତର୍ନିହିତ କାରଣ ଜାଣିବାକୁ ଆମର ମନ ସେତେ ବେଶି ତତ୍ପର ହେବ ।

ମନୋବୈଜ୍ଞାନିକ ଗବେଷଣାରୁ ଜଣାଯାଏ ଯେ ଆମେ ଅନ୍ୟ ବ୍ୟକ୍ତିର ବ୍ୟବହାର ଉଦ୍ଦେଶ୍ୟ ଭାବିଲା ବେଳେ ଅନ୍ତର୍ନିହିତ କାରଣ ଉପରେ ଅଧିକ ଗୁରୁତ୍ୱ ଦେଉ, ବାହ୍ୟିକ କାରଣ ଉପରେ କମ ଜୋର ଦେଉ । ବିଶେଷତଃ ବ୍ୟବହାର ଯଦି ଆମର ପସନ୍ଦ-ଯୋଗ୍ୟ ହୋଇ ନ ଥାଏ, ତେବେ ଅନ୍ତର୍ନିହିତ ଉଦ୍ଦେଶ୍ୟ ଉପରେ ଖୁବ୍ ପ୍ରାଧାନ୍ୟ ଦେଉ । କୌଣସି ଚିହ୍ନା ଲୋକ ଆମକୁ ବାଟରେ ଦେଖି ସହାସ୍ୟ ବଦନରେ ଅଭିନନ୍ଦନ ନ ଜଣାଇଲେ ଆମେ ଧରିନେଉ ଯେ ଲୋକଟି ବ୍ୟବହାର ଜାଣିନି, ଅଶିକ୍ଷିତ ଓ ଅମାର୍ଜିତ । ବେଳେବେଳେ ଭାବୁ ଯେ ଲୋକଟିର ନିଜସ୍ୱ କିଛି ନାହିଁ । ସେ ଅନ୍ୟଠାରୁ ଆମ ବିରୁଦ୍ଧରେ ଶୁଣି 'ଆମକୁ' ଅସମ୍ମାନ କରୁଛି । ଏହିପରି ଅନେକ କିଛି ଉଦ୍ଦେଶ୍ୟ ଭାବିପାରୁ; ଯେଉଁଥିରେ ବ୍ୟକ୍ତିର ବ୍ୟକ୍ତିତ୍ୱ, ମନୋଭାବ, ଚରିତ୍ର ଇତ୍ୟାଦି ଅନ୍ତର୍ନିହିତ ଦିଗ ଜଡ଼ିତ । ବାହ୍ୟିକ ଉଦ୍ଦେଶ୍ୟରେ କଥା ଆମ ମନକୁ ବେଶି ଆସେ ନାହିଁ । ଯେପରି ଉକ୍ତ ବ୍ୟକ୍ତିର ପରିବାରରେ ଯେ କିଛି ଅଘଟଣ ଘଟି ତା'ର ମାନସିକ ପ୍ରସନ୍ନତା ହଜିଛି, ସେ ଚିନ୍ତା ବେଶି ଆସେ ନାହିଁ । ଅନ୍ତର୍ନିହିତ ଉଦ୍ଦେଶ୍ୟ ଉପରେ ଅତି ବେଶି ଗୁରୁତ୍ୱ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସମ୍ପର୍କକୁ ତିକ୍ତ କରେ ।

ଅନ୍ୟ ବ୍ୟକ୍ତିର ବ୍ୟବହାରଟି ପସନ୍ଦଯୋଗ୍ୟ ହୋଇଥିଲେ ଆମ ମନରେ ଅନ୍ୟ ପ୍ରକାର ପାତର ଅନ୍ତର କାମ କରେ । ଏ କ୍ଷେତ୍ରରେ ଆମେ ବାହ୍ୟିକ ଉଦ୍ଦେଶ୍ୟ ଉପରେ ଗୁରୁତ୍ୱ ଦେଉ । ଅନ୍ୟ ବ୍ୟକ୍ତିଟି ଭଦ୍ରୋଚିତ ବ୍ୟବହାର କଲେ ଆମେ ତାହା ମାର୍ଜିତ ରୁଚିର ପରିପ୍ରକାଶ ନ ଭାବି ଆମେ ଉପରିସ୍ଥ କର୍ମଚାରୀ ହେତୁ ସେ ଏପରି ବ୍ୟବହାର କରୁଛି ବୋଲି ଧରିନେଉ ।

ଏଭଳି ଉଦ୍ଦେଶ୍ୟ ଆରୋପ କେବଳ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସୀମିତ ନୁହେଁ; ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ପରିଦୃଷ୍ଟ ହୁଏ । ଅନ୍ୟ ଗୋଷ୍ଠୀ ସହ ଆମର ଗୋଷ୍ଠୀର ସମ୍ପର୍କ ଭଲ

ଥିଲେ ଅନ୍ୟ ଗୋଷ୍ଠୀର ଆଚରଣ ପଛରେ ଖରାପ ଉଦ୍ଦେଶ୍ୟ ଅଛି ବୋଲି ବିଚାର କରୁ । ଅନ୍ୟ ସମ୍ପ୍ରଦାୟର ଲୋକମାନେ ଏକ ନିର୍ଦ୍ଦିଷ୍ଟ ଆଚରଣ ଦେଖାଇଥିଲେ ଆମେ ଉଦ୍ଦେଶ୍ୟ ଆରୋପ କରି ଭାବି ନେଉ ଯେ ସେମାନଙ୍କର ପ୍ରକୃତ ଖରାପ । ପରିସ୍ଥିତି ଚାପରେ ଯେ ସେମାନେ ଏମିତି କରିପାରନ୍ତି, ଯେ ଚିନ୍ତା ମନକୁ ବେଶୀ ଆସେ ନାହିଁ । ସେହିପରି ଅନ୍ୟ ଗୋଷ୍ଠୀ ବା ସମ୍ପ୍ରଦାୟର ଲୋକେ ଭଲ ଆଚରଣ ଦେଖାଇଲେ ଏହାର ଅନ୍ତରାଳରେ ଅବସ୍ଥାର ଚାପ ବାହ୍ୟିକ କାରଣ ଅଛି ବୋଲି ସାଧାରଣତଃ ଧରିନେଉ । ସେମାନେ ଆମକୁ ଡରି ଏପରି ଭଲ ବ୍ୟବହାର କରୁଛନ୍ତି ବୋଲି ବିଚାର କରିପାରୁ । ମୋଟ ଉପରେ ଅନ୍ୟର ଖରାପ ବ୍ୟବହାର କ୍ଷେତ୍ରରେ ଅନ୍ତର୍ନିହିତ ଉଦ୍ଦେଶ୍ୟର ଆରୋପ ଓ ଅନ୍ୟର ଭଲ ଆଚରଣ ସ୍ଥଳରେ ବାହ୍ୟିକ ଅବସ୍ଥାର ଆରୋପ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଜୀବନ ନିର୍ବାହରେ ପ୍ରଭାବ ପକାଏ । ଅନ୍ୟ ଭାଷାରେ କହିଲେ ଅନ୍ୟ ବ୍ୟକ୍ତି ବା ଗୋଷ୍ଠୀର ବ୍ୟବହାର ବେଳେ ଆମେ ଅନ୍ତର୍ନିହିତ ଓ ବାହ୍ୟିକ ଉଭୟ ଉଦ୍ଦେଶ୍ୟ କଥା ଭଲ ଭାବରେ ବିଚାର କଲେ ବୁଝାମଣାର ସମ୍ଭାବନା ନିଶ୍ଚିତ ବୃଦ୍ଧି ପାଇବ ।

ଅନ୍ୟ ସହିତ ସମ୍ପର୍କ ରକ୍ଷା କ୍ଷେତ୍ରରେ ଆମର ଆତ୍ମକେନ୍ଦ୍ରିକ ମନୋବୃତ୍ତି ଖୁବ୍ ପ୍ରଭାବ ପକାଏ । ଅନେକ ସମୟରେ ଆମେ ମନକୁ କେନ୍ଦ୍ରବିନ୍ଦୁରେ ରଖି ଅନେକ କଥା ବିଚାର କରି ନେଉ । ଏପରି ବିଚାର ବେଳେ ଧରିନେଉ ଯେ ଆମର ଚିନ୍ତାଧାରା ହେଉଛି ପ୍ରକୃତ ନିରପେକ୍ଷ ସତ୍ୟନିଷ୍ଠ ଭାବନା । ଅନ୍ୟମାନେ ସେଇ ଧାରାରେ ଭାବୁଛନ୍ତି । ଯଦି ଅନ୍ୟମାନେ ସେହି ଚିନ୍ତାଧାରାରେ ବିଚାର କରୁ ନାହାନ୍ତି, ତେବେ ସେମାନେ ନିଶ୍ଚୟ ଭୁଲ କରୁଛନ୍ତି । ବିଶେଷତଃ ଯେଉଁ ବିଷୟରେ ଆମେ ଅଙ୍ଗୀକାରବଦ୍ଧ, ସେ ବିଷୟରେ ଆମର ଆତ୍ମକେନ୍ଦ୍ରିକ ଚିନ୍ତା ଖୁବ୍ ଶକ୍ତ । ସାମ୍ୟବାଦରେ ଅଙ୍ଗୀକାରବଦ୍ଧ ବ୍ୟକ୍ତି ଚିନ୍ତା କରିପାରେ ନାହିଁ ଯେ, ଅନ୍ୟମାନଙ୍କର ଚିନ୍ତାଧାରା ଭିନ୍ନ ହୋଇପାରେ । ଏପରି ମନୋବୃତ୍ତି ଥିଲେ ଅନ୍ୟର ବ୍ୟବହାରରେ ଉଦ୍ଦେଶ୍ୟ ନିଜ ଅନୁସାରେ ସ୍ଥିର ହୁଏ ।

ଏତଦ୍‌ବ୍ୟତୀତ ଅନ୍ୟର ବ୍ୟବହାର କ୍ଷେତ୍ରରେ ଉଦ୍ଦେଶ୍ୟ ଆରୋପକୁ ବହୁଭାବରେ ଅନ୍ୟ ଗୋଟିଏ ମନୋବୃତ୍ତି ପ୍ରଭାବ ପକାଏ । ମନୋବିଜ୍ଞାନୀମାନେ ଲକ୍ଷ୍ୟ କରିଛନ୍ତି ଯେ ଗୋଟିଏ ଭଲ ଖବର ଅପେକ୍ଷା ଖରାପ ଖବର ଆମ ଉପରେ ବେଶି ପ୍ରଭାବ ପକାଏ । ଗୋଟିଏ ଭଲ ଖବର ପାଇ ବ୍ୟକ୍ତି ବ୍ୟବହାର ଉଦ୍ଦେଶ୍ୟ ବିଷୟରେ ଭଲ ଧାରଣା ଗଢ଼ି ତୋଳିବା ଅପେକ୍ଷା ଖରାପ ଖବର ପାଇ ତାଙ୍କ ବ୍ୟବହାର ଉଦ୍ଦେଶ୍ୟ ସମ୍ପର୍କରେ ଖୁବ୍ ଖରାପ ଧାରଣା ଜନ୍ମେ । ମନେ କରାଯାଉ ଆପଣଙ୍କ ଗ୍ରାମର ଦାଶ ବାବୁଙ୍କ ବିଷୟରେ ଆପଣଙ୍କର ଖୁବ୍ ଭଲ ଧାରଣା ଅଛି । ଆପଣ ଜାଣନ୍ତି ଯେ ଦାଶ ବାବୁ ଜଣେ ସହୃଦୟ ବ୍ୟକ୍ତି । ସେ ଜଣେ ଭଲ ସ୍ୱେଚ୍ଛାସେବୀ । ବହୁ ସାମାଜିକ କାମରେ ସହଯୋଗ କରିଛନ୍ତି । କିନ୍ତୁ ଦିନେ ଆପଣ ଖବର ପାଇଲେ ଯେ ଅର୍ଥସିଦ୍ଧ ଟଙ୍କା ତୋଷରଫ କରିବା ଅଭିଯୋଗରେ ତାଙ୍କୁ କାର୍ଯ୍ୟରୁ ଅନ୍ତର କରାଯାଇଛି । ଏ ଖବରଟି ପାଇ ଦାଶ ବାବୁଙ୍କ କାର୍ଯ୍ୟ

ସମ୍ପର୍କରେ ଆପଣଙ୍କର ଖରାପ ଧାରଣା ହେବାର ସମ୍ଭାବନା ବେଶି । ଫଳରେ ଭଲ ଗୁଣଗୁଡ଼ିକ ବାଦ ପଡ଼ିବାର ସମ୍ଭାବନା ଅଧିକ । ତାଙ୍କର ଯେ ଉଦ୍ଦେଶ୍ୟ ଖରାପ, ଏ ଧାରଣା ଆମ ମନକୁ ଆସିବ । ବହୁ କ୍ଷେତ୍ରରେ ଦେଖାଯାଇଛି ଯେ, ଅଳ୍ପ କେତେକ ଅବଗୁଣ ବହୁ ସୁଗୁଣର ପ୍ରଭାବକୁ ନଷ୍ଟ କରି ଆମ ମନରେ ଉକ୍ତ ବ୍ୟକ୍ତି ସମ୍ପର୍କରେ ଖରାପ ଧାରଣା ଦିଏ ।

ବିଭିନ୍ନ ସାକ୍ଷାତକାର ସମୟରେ କୌଣସି ପଦବୀ ପାଇଁ ବ୍ୟକ୍ତି ମନୋନୟନ କରୁଥିବା ବିଚାରକମାନେ ବ୍ୟକ୍ତିମାନଙ୍କର ସୁଗୁଣ ଦେଖି ସେମାନଙ୍କୁ ମନୋନୀତ କରିବା ପାଇଁ ଯେତେ ଉତ୍ସୁକ ହୁଅନ୍ତି, ସେ ବ୍ୟକ୍ତିମାନଙ୍କର ଅବଗୁଣ ଦେଖି ସେମାନଙ୍କୁ ସେମାନଙ୍କର ମନୋନୟନ ତାଲିକାର ବହିର୍ଭୁକ୍ତ କରିବା ପାଇଁ ଅଧିକ ଆଗ୍ରହୀ ।

ଗୋଟିଏ ଶିଳ୍ପାନୁଷ୍ଠାନରେ ଅଫିସର କେତେକ ନିମ୍ନସ୍ଥ କର୍ମଚାରୀ ମନୋନୟନ କରି ସାରିବା ପରେ ସେମାନଙ୍କୁ ଏ ବିଷୟରେ ପଚରାଗଲା । ସେମାନଙ୍କ ମଧ୍ୟରୁ ଅଧିକାଂଶ ସ୍ୱୀକାର କଲେ ଯେ, ସେମାନେ ପ୍ରାର୍ଥୀମାନଙ୍କର ଖରାପ ଦିଗ ଦେଖି ସେମାନଙ୍କୁ କାଟିବାକୁ ଅଧିକ ଚେଷ୍ଟା କରିଛନ୍ତି । ଏହାର କାରଣ ସମ୍ପର୍କରେ ପଚାରିବାରୁ ଅଫିସରମାନେ ଉତ୍ତର ଦେଲେ ଯେ, ଅତୀତରେ ଭଲ ପ୍ରାର୍ଥୀମାନଙ୍କୁ ମନୋନୟନ ନ କରି ସେମାନେ ଉଚ୍ଚ କର୍ତ୍ତୃପକ୍ଷଙ୍କ ଠାରୁ ଯେତେ ତିରସ୍କାର ନ ପାଇଛନ୍ତି, ଖରାପ ପ୍ରାର୍ଥୀମାନଙ୍କୁ ମନୋ-ନୟନ କରି ତାଠାରୁ ବେଶି ଅଧିକ ତିରସ୍କାର ପାଇଛନ୍ତି ।

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ଯେ ମଣିଷର ମନ ଏକ ନିରପେକ୍ଷ-ଭାବରେ ସବୁବେଳେ କାର୍ଯ୍ୟ କରେନାହିଁ । ବହୁ କ୍ଷେତ୍ରରେ ପକ୍ଷପାତିତ୍ୱ ଦେଖାଯାଏ । ଏହି ପକ୍ଷପାତୀ ଦିଗଗୁଡ଼ିକ ବୁଝିଲେ କେବଳ ଅନ୍ୟ ବ୍ୟବହାରର ଉଦ୍ଦେଶ୍ୟ ଠିକ୍‌ଭାବେ ମୂଲ୍ୟାୟନ କରିବା ସମ୍ଭବ ହୁଏନାହିଁ । ଏକ ସମନ୍ୱିତ ସାମାଜିକ ଜୀବନ ଓ ଏକ ପାର-ସ୍ପରିକ ସଦ୍‌ଭାବ ବିକାଶର ପଥ ସୁଗମ ହୁଏ ।

## ରାସ୍ତାପାର୍ଶ୍ୱରେ ହିଂସା

ଅନେକ ହୁଏତ ଅନୁଭବ କରୁଥିବେ ଯେ ଦୈନନ୍ଦିନ ସମ୍ବାଦପତ୍ର ପଢ଼ିବାର ଅଭ୍ୟାସ ଆଉ ବେଶି ସୁଖକର ଅନୁଭୂତିର ସାମଗ୍ରୀ ହୋଇ ରହି ନାହିଁ । ପୃଷ୍ଠା ଓଲ-

ଟାଇବା ମାନେ ପାଶବିକ ଅତ୍ୟାଚାର, ଗଣଧର୍ଷଣ, ସ୍ତ୍ରୀଙ୍କ ପ୍ରତି ଅଶ୍ଳୀଳ ଇଙ୍ଗିତ, ଟଙ୍କା ଅଳଙ୍କାର ଛଡ଼ାଇନେବା ଏବଂ ଏହିପରି ଅନେକ କିଛି ବର୍ଣ୍ଣନା ସକାଳର ଶାନ୍ତ ମଧୁର ପରିବେଶକୁ ନଷ୍ଟ କରି ଦେଉଛି । ସମ୍ବାଦପତ୍ର ପାଠ ପରେ ଆମର ମନ କେତେ ଯେ ପାଦ ଅଧିକା ଯିବାର ମନୋଭାବ ପରିବର୍ତ୍ତେ ମନର ସୁକୁମାର ପ୍ରବୃତ୍ତି ବାଧାପ୍ରାପ୍ତ ହେଉଛି । ଏହାର ଅର୍ଥ ନୁହେଁ ଯେ ସମ୍ବାଦପତ୍ର ଗୁଡ଼ିକ ଏଭଳି ଅପ୍ରୀତିକର ଘଟଣାକୁ ଲୁଚାଇ ରଖି ଏକ ଛଦ୍ମ ଜଗତର ଚିତ୍ର ଦେବେ । ଦିନକୁ ଦିନ ହିଂସା ଯେ ବୃଦ୍ଧି ପାଉଛି ଏବଂ ସାମୂହିକ ଚେଷ୍ଟା ଫଳରେ ହିଁ ଏଗୁଡ଼ିକର ବିଲୋପ କରାଯାଇ ପାରିବ—ଏଥିରେ କାହାର ମତଦ୍ୱୈଧ ନାହିଁ ।

କେଉଁ କାରଣରୁ ଏପରି ହିଂସାକାଣ୍ଡ ବୃଦ୍ଧି ପାଉଛି, ତା'ର ଉତ୍ସ ନିର୍ଦ୍ଦେଶ କରିବା ଅତିବେଶି କଷ୍ଟ ନୁହେଁ । କଷ୍ଟସାଧ୍ୟ ହେଉଛି ତା'ର ନିରାକରଣ ଦିଗରେ ପନ୍ଥା ଦେଖାଇବା । ଆମର ଦୈନନ୍ଦିନ ଜୀବନରେ ବ୍ୟର୍ଥତା ଏହାର ଏକ ମୁଖ୍ୟ କାରଣ । ଖାଦ୍ୟ, ବସ୍ତ୍ର ଓ ବାସଗୃହ ପରି ମୌଳିକ ଆବଶ୍ୟକତା ମେଣ୍ଟାଇବା ଅଧିକାଂଶଙ୍କ ପକ୍ଷେ ସମ୍ଭବ ହେଉନାହିଁ । ତା'ଛଡ଼ା ଦିନକୁ ଦିନ ଆମର ଆକାଂକ୍ଷାର ସ୍ତର ମଧ୍ୟ ବୃଦ୍ଧି ପାଉଛି । ତା' ସାଙ୍ଗକୁ ମଦ୍ୟ ଓ ଅଖାଦ୍ୟ,ନିଶା ଦ୍ରବ୍ୟର ସେବନ ଆମର ଆତ୍ମନିୟନ୍ତ୍ରଣକୁ ଯଥେଷ୍ଟ ବ୍ୟାହତ କରୁଛି । ବ୍ୟବହାର ବିଜ୍ଞାନରେ ଏକ ମୌଳିକ ନୀତି ହେଉଛି ଯେ, ବ୍ୟର୍ଥତାରୁ ହିଂସାର (ଏଗ୍ରେସନ) ସୃଷ୍ଟି । ଏ ନୀତିଟି ବିଶେଷ ଭାବରେ ସ୍ୱୀକୃତ । ଏ ନୀତି ସମ୍ପର୍କରେ ସବୁଠାରୁ କୌତୂହଳପୂର୍ଣ୍ଣ କଥା ହେଉଛି ଯେ, ଏପରି ସ୍ଥଳରେ ବ୍ୟର୍ଥ ବ୍ୟକ୍ତିର ହିଂସା ବ୍ୟର୍ଥତାର କାରଣ ବା ଉତ୍ସ ସହିତ ସମ୍ପୃକ୍ତ ଲୋକମାନଙ୍କ ପ୍ରତି ପ୍ରେରିତ ନ ହୋଇ ଅସଂପୃକ୍ତ ଲୋକମାନଙ୍କ ପ୍ରତି ନିକ୍ଷେପିତ ହୋଇପାରେ । ବିଶେଷ କରି ଯେଉଁ ବ୍ୟକ୍ତି ବା ଲୋକମାନେ ବଳପ୍ରୟୋଗ ସହିତ ମୁକାବିଲା କରିବା ପାଇଁ ଅସମର୍ଥ ସେମାନେ ଏପରି ହିଂସାର ଶରବ୍ୟ ହୋଇଥାନ୍ତି । ବେଳେବେଳେ ଶାସନ ଗାଦୀରେ ଥିବା ବ୍ୟକ୍ତିବିଶେଷ ଅନ୍ୟମାନଙ୍କ ବ୍ୟର୍ଥତାର କାରଣ ହେଲେ ମଧ୍ୟ ବ୍ୟର୍ଥବ୍ୟକ୍ତିର ଶରବ୍ୟ ହୁଅନ୍ତି ଶିକ୍ଷକ ଗୋଷ୍ଠୀ । କାରଣ ପୋଲିସ ଓ ଅନ୍ୟାନ୍ୟ ପ୍ରତିରକ୍ଷା ବ୍ୟବସ୍ଥାର ସ୍ୱହିତାଙ୍କ ସୁବିଧା କରିବାର ସୁଯୋଗରୁ ଶିକ୍ଷକମାନେ ବଞ୍ଚିତ । ସେହିପରି ଏପରି ବ୍ୟର୍ଥ ବ୍ୟକ୍ତିର ହିଂସା ଅପେକ୍ଷାକୃତ ଅସହାୟ ସ୍କୁଲ ଛାତ୍ରୀ ପ୍ରତି ହେବା ଅସମ୍ଭବ ନୁହେଁ ।

ହିଂସାର ଅନ୍ୟ ଏକ ମୁଖ୍ୟଦିଗ ହେଉଛି ଏହାର ଉଦ୍ଦେଶ୍ୟ । ଟଙ୍କା ଛଡ଼ାଇନେବା ଓ କେତେକ କ୍ଷେତ୍ରରେ ପାଶବିକ କାର୍ଯ୍ୟକଳାପ ଉଦ୍ଦେଶ୍ୟପୂର୍ଣ୍ଣ । ଅଳ୍ପ ପରିଶ୍ରମରେ ଅର୍ଥ-ଲାଭ ଓ ପାଶବିକ ପ୍ରବୃତ୍ତି ଚରିତାର୍ଥର ଉଦ୍ଦେଶ୍ୟ ନେଇ ବ୍ୟକ୍ତି ସେପରି କରିଥାଏ । କିନ୍ତୁ ଏପରି ସ୍ପଷ୍ଟ ଓ ପରିଚିତ ଉଦ୍ଦେଶ୍ୟ ନ ଥାଇ ମଧ୍ୟ କେତେକ ବ୍ୟକ୍ତି ହିଂସାରେ ଲିପ୍ତ । ସେକ୍‌ସପିଅରଙ୍କ ସିମ୍ବେଲିନ ନାଟକରେ "ଇଆଗୋ" ଖଳଚରିତ୍ର ସହିତ ପରିଚିତ ବ୍ୟକ୍ତିମାନେ ଏପରି ଉଦ୍ଦେଶ୍ୟବିହୀନ ହିଂସା ଠିକ୍ ଭାବେ ବୁଝିପାରିବେ । ସିମ୍ବେଲିନର

ନାଟକ ପୋସଥୁମସ ପଦ୍ଧତ ସାକ୍ଷାତ ହେଲା ବେଳେ ଇଆକମୋ ପୋସ୍ଥୁମସର ସ୍ତ୍ରୀ 'ଇମୋ-ଜେନ'ଙ୍କୁ ଦେଖିବାର ସୁଯୋଗ ପାଇନାହିଁ । ତେଣୁ ଇମୋଜେନର ସୌନ୍ଦର୍ଯ୍ୟରେ ପ୍ରଲୋଭିତ ହେବାର ପ୍ରଶ୍ନ ଉଠୁନ । ପୋସ୍ଥୁମସ ପ୍ରତି ଇଆକମୋର କୌଣସି ବ୍ୟକ୍ତିଗତ ଅସୂୟାର ଅବକାଶ ଆସିନାହିଁ । ଇମୋଜେନ୍ ପ୍ରତିହିଂସା କରିବାର କୌଣସି ପରିସ୍ଥିତି ସୃଷ୍ଟି ହୋଇନାହିଁ । ତଥାପି ଇମୋଜେନକୁ ପ୍ରଲୋଭିତ କରି ତାକୁ ଦୁଷ୍ଟଚରିତ୍ରା ବୋଲି ପ୍ରମାଣ କରିଦେବାର ସାମର୍ଥ୍ୟ ତାର ଅଛି ବୋଲି ଇଆକମୋ ବାହ୍ୱାସ୍ଫୋଟ ମାରିଛି । ପୋସ୍ଥୁମସ ଏହି ଆହ୍ୱାନକୁ ଗ୍ରହଣ କରି ନେଇଛି । ସେହିଠାରୁ ନାଟକର ଗତି ଦ୍ରୁତ ହୋଇଛି । ଏଠାରେ ଲକ୍ଷ୍ୟ କରିବାର କଥା ଯେ ଇଆକମୋ ଗୋଟିଏ ଉଦ୍ଦେଶ୍ୟ ବିହୀନ ଉଦ୍ଦେଶ୍ୟାନ୍ୱେଷୀ ଚରିତ୍ର । ବ୍ୟକ୍ତିଗତ ଉଦ୍ଦେଶ୍ୟ ନ ଥାଇ ମଧ୍ୟ ଅନ୍ୟର ଦୃଷ୍ଟି ଆକର୍ଷଣ କରିବା ପାଇଁ ସେ ହିଂସାର ଆଶ୍ରୟ ନେବାକୁ ଆଗଭର । ଏବେ ଆମ ସମାଜରେ ଏ ଶ୍ରେଣୀର ବ୍ୟକ୍ତିଙ୍କର ଅଭାବ ନାହିଁ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି ଜଣେ ସାଧାରଣ ନାଗରିକ ହିସାବରେ ଏହାର କି ପ୍ରତିରୋଧ କରାଯାଇ ପାରେ ? ଜଣେ ନାଗରିକର ସମ୍ବଳ ନାହିଁ ଯେ, ସେ ଏପରି ବିକୃତ ଲୋକର ବ୍ୟର୍ଥତା ଦୂର କରି ତାକୁ ସ୍ୱଚ୍ଛଳ ଅବସ୍ଥା ପ୍ରଦାନ କରି ପାରିବ । ତାର ମଧ୍ୟ ଶକ୍ତି ନାହିଁ ଯେ ପ୍ରତିରୋଧ ବ୍ୟବସ୍ଥାର ଉନ୍ନତି ଘଟାଇ ସେସବୁ ଅସାମାଜିକ କାର୍ଯ୍ୟକଳାପକୁ ବନ୍ଦ କରିଦେଇ ପାରିବ । ସାମୂହିକ ଭାବରେ ଯେଉଁ କାର୍ଯ୍ୟକ୍ରମ ଗୃହୀତ ହେବ, ତାକୁ ସେ ପୂର୍ଣ୍ଣମାତ୍ରାରେ ସମର୍ଥନ ଓ ସହଯୋଗ କରିବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ତା'ର ବ୍ୟକ୍ତିଗତ ଭୂମିକାର ଏକ ବିଶିଷ୍ଟ ଦିଗ ରହିଛି, ଯାହା ଉପରେ ଏଯାବତ୍ ଆଲୋକପାତ କରାଯାଇ ନାହିଁ । ବ୍ୟବହାର ଗଠନର ଏକ ମୌଳିକ ଦିଗ ହେଉଛି ଯେ ଏହାର ପୁର-ସ୍କାର ପ୍ରାପ୍ତିର ଦିଗ । ଗୁପ୍ତା.ପାର୍ଶ୍ୱରେ ହିଂସାକାଣ୍ଡ ଘଟାଉଥିବା ବ୍ୟକ୍ତିମାନଙ୍କର କାର୍ଯ୍ୟ-କଳାପକୁ "ଅସାମାଜିକ" କହି ଆମେ ଆପାତତଃ ନିନ୍ଦା କରୁଛୁ, ଏହା ସତ; ମାତ୍ର ସେମାନେ ଅନ୍ୟ ପ୍ରକାରେ ପୁରସ୍କୃତ ହେଉଛନ୍ତି । ସେମାନଙ୍କ ନାମ ପ୍ରକାଶ ପାଉଥିଲେ ବେଳେ ବେଳେ ଜଣାଶୁଣା ହେବାର ଆଶା ଓ ଅନ୍ୟମାନେ ସେମାନଙ୍କୁ ଆଲୋଚନା କରୁଥିବାର ପ୍ରତ୍ୟାଶା ଇତ୍ୟାଦି ସେମାନଙ୍କୁ ପ୍ରୋତ୍ସାହିତ କରୁଛି । ମୋଟ ଉପରେ ଅନ୍ୟ-ମାନଙ୍କର ଆକର୍ଷଣୀୟ ହେବାର ଆଶା ଏମାନଙ୍କର କମ ନୁହେଁ । ବ୍ୟବହାର ବିଜ୍ଞାନର ଏକ ବିଶିଷ୍ଟ ତତ୍ତ୍ୱ ହେଉଛି ଯେ କୌଣସି ବ୍ୟବହାରକୁ ନିରୁତ୍ସାହିତ କରିବାକୁ ହେଲେ ନିନ୍ଦା ବା ତିରସ୍କାର ଓ ଅବଜ୍ଞା ପ୍ରଦର୍ଶନ ଯଥେଷ୍ଟ କାମ କରେ । ପୁଣି ଅବଜ୍ଞା ପ୍ରଦର୍ଶନ ବହୁ କ୍ଷେତ୍ରରେ ନିନ୍ଦାଠାରୁ ଅଧିକ ପ୍ରଭାବଶାଳୀ । ଆମେ ଯାହା ନିନ୍ଦା ବା ତିରସ୍କାର ଭାବ ବ୍ୟବହାର କରୁ ତାହା ଅନେକ ସମୟରେ ସେମାନଙ୍କ ମନରେ ପୁରସ୍କାର ଭଳି କାମ କରିବାର ସମ୍ଭାବନା ଥିବାରୁ ବ୍ୟକ୍ତିଗତ ବା ସାମୂହିକ ଅବଜ୍ଞା ପ୍ରଦର୍ଶନ ସବୁଠୁଁ ବେଶି କାମ କରେ । ଶିକ୍ଷାସ୍ୱତନରେ, ଶିଳ୍ପାନୁଷ୍ଠାନରେ ହେଉ ବା ବସ୍ତିରେ

ହେତୁ: ପରିଗ୍ମଲନା ଦାୟିତ୍ୱରେ ଥିବା ଯେଉଁ ବ୍ୟକ୍ତିମାନେ ଅସାମାଜିକ ବ୍ୟକ୍ତିମାନଙ୍କ ହାତରେ ହାତ ପକାଇ ସେମାନଙ୍କୁ ନିପୀଡ଼ନ କରିବାର ବାହାସ୍ଫୋଟ ମାରୁଛନ୍ତି, ସେମାନେ ଏକ ବିଗ୍ରାଟ ଭୁଲ କରୁଛନ୍ତି । ଏପରି ବିଜ୍ଞାପନ ଦେଇ ଅସାମାଜିକ ବ୍ୟବହାରକୁ ସାମାଜିକ ବ୍ୟବହାରରେ ପରିଣତ କରିବା ଦୃଷ୍ଟାନ୍ତ କାଁ ଭାଁ ଗଳ୍ପ ଉପନ୍ୟାସରେ ଥାଇପାରେ, କିନ୍ତୁ ବାସ୍ତବ ରାଜ୍ୟରେ ନାହିଁ ।

ବ୍ୟକ୍ତିଗତ ଭୂମିକାର ଆଉ ଏକ କ୍ଷେତ୍ର ରହିଛି । ଆମେ ବ୍ୟକ୍ତିଗତ ଭାବରେ ଓ ସାମୂହିକ ଭାବରେ ହିଂସାପନ୍ନ ଓ ଅସାମାଜିକ ବ୍ୟକ୍ତିର ନିନ୍ଦା କରି ଆସିଛୁ । କିନ୍ତୁ ତାର ବିରୋଧାତ୍ମକ ବଳସୃଷ୍ଟି ଦିଗରେ କ'ଣ କରିଛୁ ? ଭଦ୍ର, ବିନୀତ ଓ ଅହିଂସାପନ୍ନ ବ୍ୟକ୍ତିଙ୍କୁ କି ପୁରସ୍କାର ଦେଇଛୁ ? ଶିକ୍ଷାୟତନରେ ହିଂସା କାର୍ଯ୍ୟ ବୃଦ୍ଧି ପାଉଥିବାର ଚିତ୍କାର କରି ଯେଉଁ ପରିଗ୍ମଲନା ସମ୍ପୃକ୍ତ ବ୍ୟକ୍ତିମାନେ ସ୍ୱର ଉତ୍ତୋଳନ କରୁଛନ୍ତି, ସେମାନେ ପ୍ରଥମେ ନିଜକୁ ପଚାରିବା ଉଚିତ ଯେ, ଅସାମାଜିକ ଛାତ୍ରମାନଙ୍କ ନାମ-ଗ୍ରାମ ଇତ୍ୟାଦିର ସଂଖ୍ୟା ତୁଳନାରେ ମେଧାବୀ ସଂଗ୍ରାମଶୀଳ ଦୈନନ୍ଦିନ ଜୀବନରେ ପ୍ରପୀଡ଼ିତ କେତେ ଜଣ ଛାତ୍ର-ମାନଙ୍କ ନାମ-ଗ୍ରାମର ହିସାବ ସେମାନେ ରଖିଛନ୍ତି ? ସରକାରୀ ଅଥବା ବେସରକାରୀ ଅଫିସରେ ଭଦ୍ର-ବିନୀତ ଭାବରେ ଅନୁରୋଧ କରୁଥିବା ବ୍ୟକ୍ତି ସାହାଯ୍ୟ ଲୋଡ଼ିଲେ କେତେ ତତ୍ପରତା ଆମେ ପ୍ରକାଶ କରୁ ? କଥାରେ ଭଦ୍ର, ବିନୀତ ବ୍ୟକ୍ତିକୁ ପ୍ରଶଂସା କରିବାର ଅଭାବ ନାହିଁ; କିନ୍ତୁ ପ୍ରକୃତ ଦୃଶ୍ୟମାନ ପୁରସ୍କାର ବଣ୍ଟନ ବେଳେ ହିଂସ୍ର ବ୍ୟକ୍ତି ସୁଯୋଗ ଲାଭ କରେ । ଏ ସାମାଜିକ ପରିବେଶର ପରିବର୍ତ୍ତନ ନ ହେଲା ପର୍ଯ୍ୟନ୍ତ ରାସ୍ତାଘାଟର ହିଂସା ହ୍ରାସ ପାଇବାର ପ୍ରଶ୍ନ ନାହିଁ । ମନନଶୀଳତା ସହିତ ରାସ୍ତାଘାଟର ହିଂସାକୁ ବିରୋଧ କରୁଥିବା ବ୍ୟକ୍ତି ଆଗରେ ଦୁଇଟି ପରିପୂରକ ମାର୍ଗ ଉନ୍ମୁକ୍ତ—ହିଂସାକାରୀ ବ୍ୟକ୍ତି ପ୍ରତି ଅବଜ୍ଞା ପ୍ରଦର୍ଶନ ଓ ଅହିଂସ ବ୍ୟକ୍ତିକୁ ଯଥାସମ୍ଭବ ସାହଚର୍ଯ୍ୟ ଦାନ । ଏ ଦୁଇଟି କେବଳ ବ୍ୟକ୍ତିଗତ କର୍ତ୍ତବ୍ୟର ଧାରା ନୁହେଁ, ସାମାଜିକ ପରିବର୍ତ୍ତନ ପାଇଁ ସାମୂହିକ କାର୍ଯ୍ୟର ଅଗ୍ରଦୂତ ।

## ଉପରୁ ଯେତେବେଳେ ଆଦେଶ ଆସେ

ସ୍ନେହ, ସୌହାର୍ଦ୍ଦ୍ୟ ଓ ସହାନୁଭୂତି ମନୁଷ୍ୟତାର ବୈଶିଷ୍ଟ୍ୟ । ବହୁ ବର୍ଷ ପୂର୍ବେ ମନୁଷ୍ୟ ବନ୍ୟଜୀବନ ଯାପନ କରୁଥିଲା ସତ୍ୟ, ମାତ୍ର ଗୋଷ୍ଠୀଗତ ଜୀବନକୁ ଉନ୍ନତ,

ସଂଯତ ଓ ସୁଷମସ୍ତ କରିବାର ଉଦ୍ୟମ ମଧ୍ୟରେ ଏପରି କେତେକ ବିଶିଷ୍ଟ ଗୁଣର ବିକାଶ ଘଟିଛି । ଆଜିର ସଭ୍ୟତାରେ ମନୁଷ୍ୟ ପ୍ରତି ସହୃଦୟତା ଦେଖାଇବା ଏକ ସାଧାରଣ କଥା । କିନ୍ତୁ ତଥାପି ସମସ୍ତ ସମୟରେ ମନୁଷ୍ୟ ଏହି ସଂଯମକୁ ଡିଙ୍ଗିଦେଇ ହିଂସ୍ର ହୋଇଉଠେ । ଅନ୍ୟକୁ କଷ୍ଟ ଦେଇ ଅନ୍ୟକୁ ଅତ୍ୟାଚାର କରିବାରେ ତା'ର କୁଣ୍ଠା ନ ଥାଏ । ମଣିଷ ମନର ହିଂସ୍ରତାକୁ ବୁଝିବାକୁ ଚେଷ୍ଟା କରି ମନରେ ବହୁ ପ୍ରଶ୍ନ, ବହୁ ଜିଜ୍ଞାସା ସୃଷ୍ଟି ହୁଏ ।

ମାନବିକ ଭାବରେ ମନୁଷ୍ୟ ମନରେ ଏପରି ଏକ ଆନ୍ଦୋଳନ ବିଶ୍ୱ-ଯୁଦ୍ଧ ପରେ ପରେ ସୃଷ୍ଟି ହୋଇଥିଲା । ବିଶେଷତଃ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ବେଳେ ଇହୁଦୀମାନଙ୍କ ଉପରେ ନାଜୀ ଅତ୍ୟାଚାରର ନୃଶଂସ କାହାଣୀ ସମଗ୍ର ମନୁଷ୍ୟ ମନରେ ରେଖାପାତ କରିଥିଲା । ପ୍ରାୟ ଷାଠିଏ ଲକ୍ଷ ଇହୁଦୀ ହିଟଲରଙ୍କ ଅକଥନୀୟ ଘୃଣାହିଂସାର ଶିକାର ହୋଇଥିଲେ । ପୁଣି ଏହି ଇହୁଦୀମାନଙ୍କୁ ବିଭିନ୍ନ ନାରକୀୟ ଉପାୟରେ ହତ୍ୟା କରାଯାଇଥିଲା । ଗ୍ୟାସ କୋଠରୀ ମଧ୍ୟରେ, ଚଳନ୍ତା ରେଳ ମଧ୍ୟରେ ଓ ଜଳନ୍ତା ଶିବିର ମଧ୍ୟରେ ଏମାନଙ୍କୁ ଗଣ-ହତ୍ୟା କରାଯାଇଥିଲା । ନାଜୀ ସାମରିକ ଅଫିସରମାନେ ଗଣହତ୍ୟା କରିବାର ଅଭିନବ କୌଶଳମାନ ବ୍ୟବହାର କରି ନିଜର ବୁଦ୍ଧିମତ୍ତା ଦର୍ଶାଇବାକୁ ଆଗେଇ ଆସୁଥିଲେ । ଏହି ନାରକୀୟତାର ଏକ ବିଶିଷ୍ଟ ଅଂଶ ଥିଲା ଇହୁଦୀମାନଙ୍କ ଉପରେ ନାଜୀମାନଙ୍କର ତଥାକଥିତ ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା । ମନୁଷ୍ୟ ଶରୀର କେତେ ପରିମାଣରେ ତାପ ସହ୍ୟ କରିପାରେ, ତା' ସ୍ଥିର କରିବାକୁ ଯାଇ ସେମାନେ ଇହୁଦୀମାନଙ୍କ ଉପରେ ଅଧିକରୁ ଅଧିକ ତାପ ପ୍ରୟୋଗ କରୁଥିଲେ । ମନୁଷ୍ୟ ଶରୀର କେତେ ପରିମାଣରେ ଶୀତଳତା ନେଇପାରେ, ତାହା ନିର୍ଣ୍ଣୟ କରିବାକୁ ଯାଇ ନାଜୀ ପରୀକ୍ଷକମାନେ ଇହୁଦୀମାନଙ୍କୁ ବରଫ କୋଠରୀରେ ରଖୁଥିଲେ । କହିବା ଅନାବଶ୍ୟକ ଯେ, ଏ କ୍ଷେତ୍ରରେ ଅସଂଖ୍ୟ ଇହୁଦୀ କଷ୍ଟ ପାଇ ମୃତ୍ୟୁବରଣ କରୁଥିଲେ । ସବୁଠାରୁ ପରିତାପର ବିଷୟ ଯେ, କେତେକ ଦୁଶ୍ଚରିତ୍ର ତଥାକଥିତ ଡାକ୍ତର ଓ ବୈଜ୍ଞାନିକ ଏପରି ନାଜୀ ପରୀକ୍ଷା ନିରୀକ୍ଷା କରୁଥିଲେ ।

ହିଟଲରଙ୍କ ପତନ ପରେ ପରେ ନାଜୀ ପରୀକ୍ଷା ସମ୍ପର୍କରେ ପ୍ରଶ୍ନ ଉଠିଲା । ଜ୍ଞାନୀ, ଶିକ୍ଷିତ ଓ ବୁଦ୍ଧିମାନ ଲୋକମାନେ କିପରି ଏ ନାଜୀ ପରୀକ୍ଷକ ଭାବରେ କାର୍ଯ୍ୟ କରୁଥିଲେ ତା'ର ସମାଧାନ ପାଇଁ କୌତୂହଳ ସୃଷ୍ଟି ହେଲା । ଡାକ୍ତର ଓ ବୈଜ୍ଞାନିକ-ମାନେ କିପରି ହିଟଲରଙ୍କ ଅମାନୁଷିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରୁଥିଲେ ତାହାର ଅନୁଶୀଳନ ପାଇଁ ଉତ୍ସାହ ଦେଖାଦେଲା । ବିଶେଷକରି ସମାଜ ବିଜ୍ଞାନୀମାନେ ଏ ପ୍ରଶ୍ନର ସମାଧାନ ପାଇଁ ଆଗ୍ରହୀ ହୋଇ ଉଠିଲେ । ଏ ଆଗ୍ରହ ଫଳରେ ପଚିଶ ଓ ଷାଠିଏ ମସିହାରେ ଅନେକଗୁଡ଼ିଏ ସାମାଜିକ ଗବେଷଣା ଜନ୍ମ ନେଲା । ସେହି ସମୟରେ ଏକ ପ୍ରଖ୍ୟାତ ଗବେଷକ ହେଉଛନ୍ତି ଷ୍ଟାନ୍ଲି ମିଲ୍ଗ୍ରାମ୍ । ବହୁ ପରୀକ୍ଷା-ନିରୀକ୍ଷା କରି

ମିଲ୍‌ଗ୍ରାମ୍‌ ଦର୍ଶାଇଥିଲେ ଯେ, ଉପରୁ କୌଣସି ଆଦେଶ ଆସିଲେ ମନୁଷ୍ୟ ଅଧିକାଂଶ ସମୟରେ ତା'ର ଯୁକ୍ତିଯୁକ୍ତତା ନ ଦେଖି ତାକୁ ବିଚାରହୀନ-ଭାବରେ ଗ୍ରହଣ କରନ୍ତି । ବିଶେଷକରି ନିର୍ଦ୍ଦେଶରେ ଯଦି ଥାଏ ତା'ର ନିମ୍ନସ୍ଥ ବ୍ୟକ୍ତିକୁ ଶାସ୍ତି ଦେବାକୁ, ତେବେ ସେ ବିଚାରହୀନଭାବେ ନିମ୍ନସ୍ଥ ଲୋକକୁ ଶାସ୍ତି ଦେଇପାରେ । ମୋଟ ଉପରେ କର୍ତ୍ତୃପକ୍ଷଙ୍କ ପ୍ରତି ଆଜ୍ଞାଧୀନତା ଦର୍ଶାଇବା ମନୁଷ୍ୟର ଏକ ମନସ୍ତାତ୍ତ୍ୱିକ ଦୁର୍ବଳତା । ଏ ଦୁର୍ବଳତାର ଯେ ସମସ୍ତେ ଶରବ୍ୟ ହେବେ – ତା ନୁହେଁ, ତଥାପି ବହୁ କ୍ଷେତ୍ରରେ ମଣିଷ ନିଜର ଯେଉଁ ବିଚାର, ନିଜର ବୁଦ୍ଧି ଧାରା ପ୍ରୟୋଗ କରେ, ଉପରୁ ଆଦେଶ ଆସିଲେ ସେ ନିଜର ବିଚାର ସେପରି ପ୍ରୟୋଗ କରି ନ ଥାଏ । ଏହାକୁ ଦର୍ଶାଇବାକୁ ଯାଇ ମିଲ୍‌ଗ୍ରାମ୍‌ ଅନେକ ଗୁଡ଼ିଏ ପରୀକ୍ଷା କରିଥିଲେ । ସେଥିରୁ ଗୋଟିଏ ପରୀକ୍ଷାର ବର୍ଣ୍ଣନା କରାଯାଉ । ମନୁଷ୍ୟ ଚରିତ୍ରର ଏ ଦିଗଟିକୁ ସ୍ପଷ୍ଟ କରାଯାଇପାରେ ।

ମିଲ୍‌ଗ୍ରାମ୍‌ଙ୍କ ପରୀକ୍ଷାରେ ତିନି ଶ୍ରେଣୀର ଲୋକ ଭାଗ ନେଲେ । ପ୍ରଥମ ଶ୍ରେଣୀଟି ହେଉଛନ୍ତି ମିଲ୍‌ଗ୍ରାମ୍‌ଙ୍କ ସହକର୍ମୀ ଗବେଷକବୃନ୍ଦ । ଏମାନେ ମିଲ୍‌ଗ୍ରାମ୍‌ଙ୍କ ପୂର୍ବ-ପରିକଳ୍ପିତ ଯୋଜନା ଅନୁଯାୟୀ ଅନ୍ୟ ଦୁଇ ଶ୍ରେଣୀର ଲୋକଙ୍କର ଯୋଗାଡ଼ କଲେ । ଅନ୍ୟ ଦୁଇ ଶ୍ରେଣୀର ଲୋକଙ୍କ ଦୃଷ୍ଟିରେ ଏ ଗବେଷକମାନେ ଖୁବ୍‌ ମାନ୍ୟଗଣ୍ୟ ବୈଜ୍ଞାନିକ ବ୍ୟକ୍ତି ବିଶେଷ । ଅନ୍ୟ ଶ୍ରେଣୀର ଲୋକମାନେ ସାଧାରଣ ଲୋକ । ଏମାନଙ୍କୁ ଅନୁରୋଧ କରାଗଲା—ଗୋଟିଏ ମନୋବୈଜ୍ଞାନିକ ପରୀକ୍ଷାରେ ଭାଗନେବା ପାଇଁ । ଗବେଷକ ଏମାନଙ୍କୁ କହିଲେ ଯେ, ଏମାନେ ଉକ୍ତ ପରୀକ୍ଷାରେ ଶିକ୍ଷକର ଭୂମିକା ଗ୍ରହଣ କରିବେ । ଶିକ୍ଷକଙ୍କ କାମ ହେବ ଅନ୍ୟ କେତେକଙ୍କୁ ଏକ ନିର୍ଦ୍ଦିଷ୍ଟ ଶିକ୍ଷା ଦେବା । ଶିକ୍ଷା କରୁଥିବା ଲୋକମାନଙ୍କୁ ଭୁଲ ବିଶେଷରେ ଶାସ୍ତି ଦେଇ ଶିକ୍ଷାକାର୍ଯ୍ୟ ଚଲାଇବା ଏମାନଙ୍କର କାମ ହେବ ବୋଲି ଜଣାଇ ଦିଆଗଲା । ଶିକ୍ଷକ ଗବେଷକଙ୍କ ନିର୍ଦ୍ଦେଶରେ ପରୀକ୍ଷାଗାରକୁ ଆସି ଯେଉଁମାନଙ୍କୁ ଶିକ୍ଷା ଦେବାକୁ ହେବ ସେ ଲୋକମାନଙ୍କୁ ଦେଖିଲେ । ଶିକ୍ଷା କରିବାକୁ ଆସିଥିବା ଲୋକମାନେ ଶିକ୍ଷକମାନଙ୍କର ସମବୟସୀ ହେଲେ ମଧ୍ୟ ଏମାନଙ୍କୁ ବର୍ତ୍ତମାନ ଛାତ୍ର କୁହାଯାଇପାରେ । ଶିକ୍ଷକଙ୍କ ଦୃଷ୍ଟିରେ ଏମାନେ ଛାତ୍ର । ଛାତ୍ରମାନଙ୍କୁ ଭୁଲ ବିଶେଷରେ ଶାସ୍ତି ଦେଇ ପଢ଼ାଇବାକୁ ହେବ ବୋଲି ଶିକ୍ଷକଙ୍କୁ କୁହାଗଲା । ଛାତ୍ର ଭୂମିକାରେ ଯେଉଁ ଲୋକମାନେ ଗବେଷଣାଗାରରେ ଉପସ୍ଥିତ ଥିଲେ, ସେମାନେ ଶିକ୍ଷକଙ୍କ ଦୃଷ୍ଟିରେ ଛାତ୍ର ଥିଲେ ମଧ୍ୟ ବାସ୍ତବରେ ସେମାନଙ୍କୁ ପୂର୍ବରୁ ଏକ ଅଭିନୟ ଶିକ୍ଷା ଦିଆ ଯାଇଥିଲା । ଏହି ଛାତ୍ରମାନେ ପ୍ରକୃତରେ ଗବେଷକଙ୍କର ଜଣାଶୁଣା ଲୋକ । ସେମାନେ ଗବେଷଣାରେ ସାହାଯ୍ୟ କରିବା ପାଇଁ ଆସିଥିଲେ । ଗବେଷଣାଗାରରେ କ'ଣ କରିବାକୁ ହେବ ସେ କଥା ଗବେଷକ ଏମାନଙ୍କୁ ଭଲଭାବରେ ପୂର୍ବରୁ କହିଥିଲେ । ଏମାନେ ଯେ ଗବେଷକଙ୍କର ନିଜ ଲୋକ ଏବଂ ଛାତ୍ରର ଅଭିନୟ କରୁଛନ୍ତି, ଏ କଥା ଶିକ୍ଷକଙ୍କୁ ଆଦୌ ଜଣା ନ ଥିଲା ।

ଶିକ୍ଷା କାର୍ଯ୍ୟ ପାଇଁ ଗୋଟିଏ ମଞ୍ଚ ନିର୍ମାଣ କରାଯାଇଥିଲା । ଏହି ମଞ୍ଚର ଉପରେ ବସିଥାନ୍ତି ଗବେଷକ । ତାଙ୍କର କାର୍ଯ୍ୟ ହେଲା ପ୍ରଶାସକର କାର୍ଯ୍ୟ । ସେ ଆଦେଶ ଦେବେ କେଉଁଠାରେ କିପରି ଭାବରେ ଶାସ୍ତି ଦେବାକୁ ହେବ । ତା'ର ତଳ ଆଡ଼କୁ ବସିଲେ ଶିକ୍ଷକ ଏବଂ ଆହୁରି ତଳକୁ ଛାତ୍ର । ଛାତ୍ରଙ୍କର କାର୍ଯ୍ୟ ହେଲା କିଛି ଶିକ୍ଷା କରିବା ଏବଂ ତା'ଉପରେ ଶିକ୍ଷକଙ୍କୁ ଉତ୍ତର ଦେବା । ଶିକ୍ଷକଙ୍କର କାର୍ଯ୍ୟ ହେଲା ପାଠ ଉଦାହରଣ କରିବା, ପ୍ରଶ୍ନ ପଚାରିବା, ଠିକ୍‌ଭୁଲ ଜଣାଇବା ମଧ୍ୟ ଶିକ୍ଷକଙ୍କ କାର୍ଯ୍ୟ । ଭୁଲ କଲେ ଶାସ୍ତି ଦେବାପାଇଁ ବନ୍ଦୋବସ୍ତ ହୋଇଥିଲା । ଛାତ୍ରଙ୍କ ସହିତ ଗୋଟିଏ ଯନ୍ତ୍ର ସଂଯୁକ୍ତ କରାଯାଇଥାଏ । ଉକ୍ତ ଯନ୍ତ୍ରଟି ବିଦ୍ୟୁତ୍ ଶକ୍ତି ଚାଳନାର ଯନ୍ତ୍ର ପରି ଦିଶୁଥାଏ । ଏହାର ନିୟନ୍ତ୍ରକଟି ଥାଏ ଶିକ୍ଷକଙ୍କ ହାତରେ । ଶିକ୍ଷକ ଜାଣିଥାନ୍ତି ଯେ ସେ ଇଚ୍ଛାକଲେ ନିୟନ୍ତ୍ରକଟି ବ୍ୟବହାର କରି ଛାତ୍ରଟିକୁ ସକ୍ ଦେଇପାରିବେ ଏବଂ ସକର ପରିମାଣ କମ ବେଶୀ କରି-ପାରିବେ ନିୟନ୍ତ୍ରକର ସାହାଯ୍ୟ ନେଇ । ଯନ୍ତ୍ରରେ ଲାଗିଥିବା ପରିମାପକଟି ଦର୍ଶାଇବ କେତେ ପରିମାଣରେ ସକ୍ ଦିଆଯାଉଛି । ଶିକ୍ଷକ ସ୍ପଷ୍ଟ ଭାବରେ ଏହି ପରିମାପକଟି ଦେଖି ସେ କେତେ ପରିମାଣରେ ସକ୍ ଦେଉଛନ୍ତି ତାହା ଜାଣିପାରିବେ । ଯନ୍ତ୍ରଟି ଦ୍ୱାରା ଦିଆ-ଯାଇପାରୁଥିବ । ସର୍ବାଧିକ ପରିମାଣର ସକ୍‌ରେ ମଧ୍ୟ ଜଣଙ୍କର ମୃତ୍ୟୁ ହେବନାହିଁ ବୋଲି ଶିକ୍ଷକଙ୍କୁ ଜଣାଇ ଦିଆଯାଇଥିଲା ।

ଛାତ୍ରଙ୍କର ଅଭିନୟ ପରି ବର୍ଣ୍ଣିତ ଯନ୍ତ୍ରଟି ମଧ୍ୟ ଛଳନାପୂର୍ଣ୍ଣ ଥିଲା । ଯନ୍ତ୍ରଟିର ଆକୃତି ବିଭିନ୍ନ ତାରର ସଂଯୋଗ, ନିୟନ୍ତ୍ରକର ବ୍ୟବହାର ଓ ସକ ପରିମାପକର ଉପସ୍ଥିତି ବାସ୍ତବତାର ଏକ ଆବହାଓ୍ୱା ସୃଷ୍ଟି କରୁଥିଲେ ମଧ୍ୟ ଯନ୍ତ୍ରଟି ପ୍ରକୃତରେ ଛଳନା ଥିଲା । ଶିକ୍ଷକ ଜାଣିବାରେ ଏହା ପ୍ରକୃତ ଯନ୍ତ୍ର, ସକ୍ ଦେବା ପାଇଁ ଉଦ୍ଦିଷ୍ଟ । ମାତ୍ର ଗବେଷକ ଓ ଛାତ୍ର ଜାଣିଥିଲେ ଯେ ଯନ୍ତ୍ରଟି କେବଳ ଛଳନା, ଦନ୍ଦ୍ୱାନ୍ତ୍ୱିକ ପରୀକ୍ଷା ପାଇଁ ଅଭି-ପ୍ରେତ । ଯନ୍ତ୍ରଟି ଯେ ଛଳନା—ଏ କଥା ଗବେଷକ ଛାତ୍ରମାନଙ୍କୁ ପୂର୍ବରୁ ଜଣାଇ ଦେଇଥିଲେ ।

ପରୀକ୍ଷା ଆରମ୍ଭ ହେଲା । ମଞ୍ଚ ଉପରୁ ଗବେଷକ ଶିକ୍ଷକଙ୍କୁ ନିର୍ଦ୍ଦେଶ ଦେଲେ ଛାତ୍ରଙ୍କର ପଢ଼ାକାର୍ଯ୍ୟ ଆରମ୍ଭ କରିବା ପାଇଁ । ଶିକ୍ଷକ ଛାତ୍ରଙ୍କୁ କହିଲେ ଶିକ୍ଷା ଆରମ୍ଭ ପାଇଁ । କହିବା ଅନାବଶ୍ୟକ ଯେ ଛାତ୍ରଟି ନିର୍ଭୁଲ ଭାବରେ ଆରମ୍ଭରୁ ପଢା ଦେଖାଇବା ଅସମ୍ଭବ । ଛାତ୍ରଟିର ଭୁଲ ହୁଏ । କେତେବେଳେ ଅଳ୍ପ ଧରଣର ଭୁଲ, କେତେବେଳେ ମଧ୍ୟମ ଧରଣର ଭୁଲ । ଭୁଲ ହେଲା ମାତ୍ରେ ଗବେଷକ ଶିକ୍ଷକଙ୍କ ଆଡ଼କୁ ଦୃଷ୍ଟି କହୁଥାନ୍ତି--ଭୁଲ କରୁଛି, ଶାସ୍ତି ଦିଅ । ଶିକ୍ଷକ ସକ୍ ଦେଉଥିବା ଯନ୍ତ୍ରର ନିୟନ୍ତ୍ରକ ବ୍ୟବହାର କରି ସକ୍ ଦିଅନ୍ତି । ପୂର୍ବ ଯୋଜନା ଅନୁଯାୟୀ ଛାତ୍ର ଜଣକ ଦଣ୍ଡିତ ବ୍ୟକ୍ତି ପରି ଅଭିନୟ କରନ୍ତି । 'ଆହାଃ ଓହୋଃ'ପ୍ରଭୃତି ଚିତ୍କାର କରି ନିଜ କଷ୍ଟର

ସୂଚନା ଦିଅନ୍ତି । ପ୍ରକୃତରେ ସକ୍ ନ ଖାଉଥିଲେ ମଧ୍ୟ ଛାତ୍ର ଜଣଙ୍କର ଅଭିନୀତ ଭାବ-ଭଙ୍ଗୀରୁ ଜଣାପଡ଼େ, ସତେ ଯେପରି ସେ ସକ୍ ଖାଉଛନ୍ତି ।

ଶିକ୍ଷକ ଜାଣିଥିଲେ ଯେ ସକ୍‌ରୁ ସେ ବଢ଼ାଇ ପାରିବେ । ଅବଶ୍ୟ ଏହା ଏତେ ବେଶି ନୁହେଁ ଯେ ଜଣେ ଛାତ୍ରର ଜୀବନ ବିପଦାପନ୍ନ ହେବ । ତଥାପି ସକର ପରିମାଣ ବଢ଼ାଇ ଛାତ୍ରକୁ ଅଧିକ ଦଣ୍ଡ ଓ ଅଧିକ କଷ୍ଟ ଦିଆଯାଇପାରେ ବୋଲି ଶିକ୍ଷକ ଜାଣିଥିଲେ । ତେଣୁ ଛାତ୍ରର ଅଧିକ ଭୁଲ୍ ହେଲେ ସେ ବେଶି ସକ୍ ଦେଉଥିଲେ । ସକ୍‌ର ପରିମାଣ ବଢ଼ିବା ସଙ୍ଗେ ସଙ୍ଗେ ଛାତ୍ରଟିର ଆକୁଳ ଚିତ୍କାରର ପରିମାଣ ମଧ୍ୟ ବଢ଼ୁଥିଲା । ଗବେଷକ-ଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା ତାଙ୍କର ନିର୍ଦ୍ଦେଶରେ କେତେ ଜଣ ଶିକ୍ଷକ କେତେବେଶି ସକ୍ ଦେଇପାରୁଛନ୍ତି, ତାହା ନିର୍ଣ୍ଣୟ କରିବା । ତେଣୁ ଗବେଷକ ନିଜେ ଶିକ୍ଷକମାନଙ୍କୁ ଆଦେଶ ଦେଉଥିଲେ ଅଧିକରୁ ଅଧିକ ସକ୍ ଦେବାପାଇଁ । କୌଣସି ଶିକ୍ଷକ ଛାତ୍ରର ଚିତ୍କାରରେ ଶିଥିଳ ହୋଇଆସିଲେ, ଗବେଷକ ପାଟି କରି କହନ୍ତି—'ଆହୁରି ଦିଅ, ଆହୁରି ବେଶି ଦିଅ, ତା'ର ଶାସ୍ତି ଆହୁରି ଅଧିକା ହେବା ଉଚିତ ।' ଏହିପରି ଉତ୍ତେଜନାପୂର୍ଣ୍ଣ ଭାଷାରେ ସେ ଶିକ୍ଷକଙ୍କୁ ଆଦେଶ ଦିଅନ୍ତି ।

ସକ୍‌ର ପରିମାଣ ଖୁବ୍ ବେଶି ହେଲେ ଛାତ୍ରଟି "ମରିଗଲି" "ମରିଗଲି" ବୋଲି ଚିତ୍କାର କରେ । ଏ ସମୟରେ ମଧ୍ୟ ଗବେଷକ ଶିକ୍ଷକଙ୍କୁ ନିର୍ଦ୍ଦେଶ ଦିଅନ୍ତି ଆହୁରି ଅଧିକ ସକ୍ ଦେବାପାଇଁ । ଏହି ପରିସ୍ଥିତିରେ ଶିକ୍ଷକମାନଙ୍କର ବ୍ୟବହାର ଲକ୍ଷ୍ୟ କରିବାର କଥା । ଦେଖାଗଲା ଯେ ଛାତ୍ର "ମରିଗଲି" "ମରିଗଲି" ବୋଲି ଚିତ୍କାର କରିବା ପରେ ପରେ ପ୍ରାୟ ଶତକଡ଼ା ୪୦ ଭାଗ ଶିକ୍ଷକ ସକ୍ ଦେବାରୁ ନିବୃତ୍ତ ହେଲେ । ସେମାନେ ଆଉ ଅଧିକ ସକ୍ ଦେଇ ପରୀକ୍ଷାରେ ଅଂଶ ଗ୍ରହଣ କରିପାରିବେ ନାହିଁ ବୋଲି ବିନୀତ ଭାବରେ ଜଣାଇଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ପ୍ରାୟ ଶତକଡ଼ା ୬୦ ଭାଗ ଶିକ୍ଷକ ଛାତ୍ରର "ମରିଗଲି" "ମରିଗଲି" ଚିତ୍କାର ଶୁଣିବା ପରେ ମଧ୍ୟ ଗବେଷକଙ୍କ ଆଦେଶ ପାଇ ଆହୁରି ବେଶି ସକ୍ ଦେଲେ ।

ମିଲ୍‌ଗ୍ରାମଙ୍କ ଏହି ପରୀକ୍ଷାଟି ସ୍ପଷ୍ଟ ଭାବେ ପ୍ରମାଣ କଲା ଯେ ମନୁଷ୍ୟ ଅନ୍ୟର ଆଜ୍ଞାଧୀନ ହୋଇ ଅନେକ ସମୟରେ ନିଜର ବିଚାର ବର୍ଜନ କରିଥାଏ । ବର୍ଣ୍ଣିତ ପରୀକ୍ଷାରେ ଶିକ୍ଷକର କାର୍ଯ୍ୟ କରୁଥିବା ସାଧାରଣ ଲୋକେ କେବେହେଲେ ଏତେ ବେଶି କଷ୍ଟ ଛାତ୍ରମାନଙ୍କୁ (ସେମାନଙ୍କର ଅଧସ୍ତନ କର୍ମଚାରୀଙ୍କୁ) ଦେଇ ପାରିବେ ନାହିଁ । ମାତ୍ର ଉପରୁ ଆଦେଶ ଆସିଲେ ଲୋକେ ଏପରି କରି ପାରନ୍ତି ବୋଲି ପରୀକ୍ଷାଟି ସୂଚନା ଦେଲା । କର୍ତ୍ତୃପକ୍ଷଙ୍କ ଠାରୁ ଯେତେବେଳେ କଡ଼ା ନିର୍ଦ୍ଦେଶ ଆସେ, ତାକୁ ଅଧସ୍ତନ କର୍ମ-ଚାରୀ ଉପରେ ପ୍ରାବ୍ୟୟ କରିବାରେ କମ୍ ପରିମାଣରେ କୁଣ୍ଠା ଥାଏ । ଏହି ମନସ୍ତାତ୍ତ୍ୱିକ ତତ୍ତ୍ୱଟି ବୁଝିଲାବେଳେ ଅନ୍ୟ ଦୁଇଟି କଥା ମନେ ରଖିବାକୁ ହେବ । ପ୍ରଥମତଃ, ଶାସ୍ତି ଦେଉଥିବା ବ୍ୟକ୍ତିର ଯେ ଶାସ୍ତି ଦେବାକୁ ପୂରାପୂରି ଅନିଚ୍ଛା ଥାଏ ଏବଂ ସେ କେବଳ

କର୍ତ୍ତୃପକ୍ଷଙ୍କ ଆଦେଶରେ ଶାସ୍ତି ଦିଏ, ସେକଥା ନୁହେଁ । ହୁଏତ ସାମାନ୍ୟ ଇଚ୍ଛା ଥାଇପାରେ, କିନ୍ତୁ ଉପରୁ ନିର୍ଦ୍ଦେଶ ଆସିଲେ ସେ ବିସ୍ତୃତଭାବେ ଭାବରେ ଅଧିକରୁ ଅଧିକ ହିଂସ୍ରତା ଦେଖାଏ । ଦ୍ୱିତୀୟତଃ, ଆଦେଶ ଆସୁଥିବା ଉତ୍ସଟି ଆଦେଶପାଳନକାରୀ ବ୍ୟକ୍ତି ପକ୍ଷରେ ଖୁବ୍ ବେଶି ସମ୍ମାନାସ୍ପଦ ହୋଇଥିଲେ ଏପରି ଆଜ୍ଞାଧୀନତା ଅଧିକ ଦେଖା-ଯାଏ । ହିଟଲର୍ଙ୍କ ପ୍ରଚିପତ୍ତି ଫଳରେ ବହୁଲୋକ ତାଙ୍କ ଆଜ୍ଞାଧୀନତାର ଶରବ୍ୟ ହୋଇଥିଲେ ।

ଆଲୋଚିତ ମନସ୍ତାତ୍ତ୍ୱିକ ପର୍ଯ୍ୟାଲୋଚନା ଅନୁସାରେ ଏକ ଚେତାବନୀ ରହିଛି । ମନୁଷ୍ୟ ନିଜକୁ ବନ୍ୟତା ଓ ହିଂସ୍ରତାରୁ ମୁକ୍ତ କରିବାକୁ ହେଲେ ନିଜର ବିସ୍ତୃରଧାରାର ପ୍ରୟୋଗ ସବୁ ସମୟରେ କରିବା ଉଚିତ୍ । ଉପରୁ ଆଦେଶ ଆସିବା ସ୍ଥଳରେ ମଧ୍ୟ ସେ ଦାୟିତ୍ୱହୀନ ଓ ବିସ୍ତୃରହୀନ ଭାବରେ କାର୍ଯ୍ୟ ନ କରି ନିଜର ଚିନ୍ତାଶକ୍ତି ପ୍ରୟୋଗ କଲେ ସାମୂହିକ କଲ୍ୟାଣ ସାଧିତ ହେବ ।

## ଆପଣ ନିଜକୁ ଅସହାୟ ମନେକରନ୍ତି କାହିଁକି ?

ଦୈନନ୍ଦିନ ଜୀବନରେ ବିଫଳତାର ଅନୁଭୂତି ଏକ ସାଧାରଣ ଘଟଣା । ଅନେକ ସମୟରେ ଆପଣ ଅନୁଭବ କରିଥିବେ ଯେ, ସିନେମା ଦେଖିବାକୁ ଇଚ୍ଛା କରି ଟିକେଟ ପାଇଁ ଲାଇନ୍‌ରେ ଠିଆ ହୋଇ ଟିକେଟ ପାଇପାରୁ ନାହାନ୍ତି । ବ୍ୟାଙ୍କ୍‌କୁ ଯାଇ ନିଜର ପାଶ୍‌ବୁକଟି ଠିକ୍‌ଠାକ୍ କରିବାକୁ ଚେଷ୍ଟାକରି ସମ୍ପୃକ୍ତ କର୍ମଚାରୀଙ୍କୁ ଅପେକ୍ଷା କରି ଫେରୁଛନ୍ତି; ପୁଣି ଆଉ କେତେବେଳେ ନିଜର ଫାଇଲଟି ଉପରିସ୍ଥ ଅଫିସରଙ୍କ ପାଖକୁ ପଠାଇବାରେ ସଫଳ ହୋଇପାରୁ ନାହାନ୍ତି । ଏହିପରି ବହୁକ୍ଷେତ୍ରରେ ବିଫଳତାର ଶରବ୍ୟ ହେଲା ପରେ "ଆଜି କାଲି ପରିସ୍ଥିତି ଖୁବ ଜଟିଳ ଓ କଷ୍ଟକର"—ଏହା କହି ନିଜକୁ ସାନ୍ତ୍ୱନା ଦେଇଥାନ୍ତି । ଆଜିକାଲି ପରିସ୍ଥିତି ଜଟିଳ ଓ କଷ୍ଟକର ହେଉଛି, ଏ କଥାଟି ଯେପରି ସତ କେତେକ ଲୋକ ପରିସ୍ଥିତିକୁ ମାନିନେଇ ନିଜର ଶିଥିଳତା ପ୍ରକାଶ କରିବାର ଘଟଣା ମଧ୍ୟ ସେପରି ସତ ।

ବାସ୍ତବରେ ଆମେ ଦେଖୁ ଯେ ସମାଜରେ କେତେକ ଲୋକ ଅଛନ୍ତି, ଯେଉଁମାନେ ପରିସ୍ଥିତିର ଦାସତ୍ୱକୁ ସହଜରେ ମାନିନିଅନ୍ତି ନାହିଁ । ପରିସ୍ଥିତିର ମୁକାବିଲା କରି, ନିଜର ଶକ୍ତି ସାମର୍ଥ୍ୟ ପ୍ରୟୋଗ କରି ଏବଂ ଦୀର୍ଘ ସମୟ ଧରି ଉଦ୍ୟମ କରି ଏପରି ବ୍ୟକ୍ତିମାନେ ନିଜର ଅସୁବିଧା ଦୂର କରନ୍ତି । ସେମାନେ କର୍ମଠ, ପରିଶ୍ରମୀ ଏବଂ ଅଧ୍ୟବସାୟୀ ।

ସେମାନେ ସଫଳତାର ସ୍ୱାଦ ପାଆନ୍ତି । ପକ୍ଷାନ୍ତରେ ଅନ୍ୟ କେତେକ ବ୍ୟକ୍ତି ଅଛନ୍ତି, ଯେଉଁମାନେ ନିଷ୍କ୍ରିୟ, ଉଦ୍ୟମବିହୀନ, ପରନିର୍ଭରଶୀଳ ଓ ଆଳସ୍ୟପରାୟଣ । ଏମାନଙ୍କର ଶିଥିଳତା ଏତେ ବେଶି ଯେ ପରିସ୍ଥିତି ଟିକିଏ କଷ୍ଟକର ହେଲା ମାତ୍ରେ ଏମାନେ ସବୁ ଉଦ୍ୟମ ଛାଡ଼ି ଦେଇ ନିଷ୍କ୍ରିୟ ହୋଇ ବସିରହନ୍ତି । ଦୁର୍ଭାଗ୍ୟର ବିଷୟ ଯେ ଏପରି ନିଷ୍କ୍ରିୟ ଓ ଆଳସ୍ୟପରାୟଣ ଲୋକଙ୍କ ସଂଖ୍ୟା ଆମ ଦେଶରେ ଅଧିକ । ଫଳରେ ଆମର ଜାତୀୟ ଜୀବନ ଘୋର ସଙ୍କଟର ସମ୍ମୁଖୀନ । ବ୍ୟକ୍ତିଗତ ବିକାଶ ଓ ଜାତୀୟ ପ୍ରଗତି ପାଇଁ ସକ୍ରିୟ ଉଦ୍ୟମ ଯେ ଆବଶ୍ୟକ ଏଥିରେ ଦ୍ୱିମତ ନାହିଁ । ସୁତରାଂ କେଉଁ କାରଣରୁ ଏପରି ନିଷ୍କ୍ରିୟ ମନୋଭାବ ସୃଷ୍ଟି ହୁଏ ଏବଂ ଏହା କିପରି ଦୂର କରାଯାଇପାରିବ, ତା'ର ଆଲୋଚନା ବେଶ୍ ମୂଲ୍ୟବାନ ।

ମାନସିକ ନିଷ୍କ୍ରିୟତାର ଅନୁଶୀଳନ ପାଇଁ ମନୋବିଜ୍ଞାନୀମାନେ ବହୁ ଗବେଷଣା କରିଛନ୍ତି । ପ୍ରଥମେ ଜୀବଜନ୍ତୁମାନଙ୍କ ଉପରେ ଗବେଷଣା ଏ କ୍ଷେତ୍ରରେ ନୂତନ ଦିଗର ସନ୍ଧାନ ଦେଲା । ମନୋବିଜ୍ଞାନୀମାନେ ବହୁ ପୂର୍ବରୁ ଦର୍ଶାଇଥିଲେ ଯେ ମନୁଷ୍ୟ ହେଉ ବା ଜୀବଜନ୍ତୁ, ଯୁଅନ୍ତୁ କୌଣସି ବ୍ୟବହାରକୁ ଗଠନ କରିବାକୁ ହେଲେ ପୁରସ୍କାର ବା ପ୍ରୋତ୍ସାହନ ନିତାନ୍ତ ଦରକାର । ସରଳ ଭାଷାରେ କହିଲେ ବୁଝାଯିବ ଯେ କୌଣସି ବ୍ୟବହାର ପରେ ଯଦି ପୁରସ୍କାର ଦିଆଯାଏ ଏବଂ ପୁରସ୍କାର ଦେବାର ଘଟଣାଟିକୁ ପୁନରାବୃତ୍ତି କରାଯାଏ, ତେବେ ସମ୍ପୃକ୍ତ ବ୍ୟବହାରଟି ଗଠିତ ଓ ଦୃଢ଼ୀଭୂତ ହୁଏ । ଗୋଟିଏ ମୂଷା ନିଜର ନାକକୁ ଟିକିଏ ଘଷି ଦେଲା ପରେ ଆମେ ଯଦି ମୂଷାଟିକୁ କିଛି ଖାଦ୍ୟପଦାର୍ଥ ଯୋଗାଇ ଦେଉ ଏବଂ ପ୍ରତି ନାକଘଷାର ପରେ ପରେ ଏହି ଖାଦ୍ୟ ଯୋଗାଇବାର ଘଟଣାଟିର ଆୟୋଜନ କରାଯାଏ; ତେବେ ମୂଷାର ନାକଘଷିବା ବ୍ୟବହାର ସଂଖ୍ୟା ବଢ଼ିଯିବ ଏବଂ ଏହା ଏକ ଦୃଢ଼ ବ୍ୟବହାର ହୋଇ ରୂପ ନେବ । ସେହିପରି ଗୋଟିଏ ବିରାଡ଼ି ଏକ ଭାରଦଣ୍ଡ ଉପରେ ଚାପଦେଲା ମାତ୍ରେ ଯଦି ଖାଦ୍ୟ ଯୋଗାଇ ଦିଆଯାଏ ଏବଂ ଏପରି ଖାଦ୍ୟ ଯୋଗାଣ ବ୍ୟବସ୍ଥାଟି ବିରାଡ଼ିର ଚାପପ୍ରଦାନ ସହିତ ଜଡ଼ିତ କରିଦିଆଯାଏ, ତେବେ ବିରାଡ଼ିଟି ଭାରଦଣ୍ଡ ଉପରେ ଅଧିକରୁ ଅଧିକ ଚାପ ପ୍ରଦାନ କରିବ । ମନୁଷ୍ୟ କ୍ଷେତ୍ରରେ ମଧ୍ୟ ଏହାର କାର୍ଯ୍ୟକାରିତା ରହିଛି । ପିଲାଟି ଘରେ ପାଠପଢ଼ାରେ ବସିଲେ ଆମେ ତାକୁ ଆମର ସ୍ନେହ ଦେଖାଉ । ପିଲାଟି କଥା ମାନିଲେ ତାର ମନମୁତାବକ କିଛି ଜିନିଷ କିଣିଦେଇ ତାକୁ ଆନନ୍ଦ ଦେଉ ଏବଂ ଏହିପରି ବହୁ କ୍ଷେତ୍ରରେ ପିଲା ଓ ବୟସ୍କ ବ୍ୟକ୍ତିମାନଙ୍କ ବାଞ୍ଛିତ ବ୍ୟବହାର ପରେ ପରେ ଆମେ ପ୍ରଶଂସା ବା ପୁରସ୍କାର ଦେଇଥାଉ । ଏ କ୍ଷେତ୍ରରେ ଉଦ୍ଦେଶ୍ୟ ଥାଏ ସମ୍ପୃକ୍ତ ବ୍ୟବହାରଟିର ମାତ୍ରା ବଢ଼ାଇ ତାକୁ ଦୃଢ଼ କରିବା ପାଇଁ ।

ବ୍ୟବହାର ଗଠନ କହିଲେ କେବଳ ବାଞ୍ଛନୀୟ ବ୍ୟବହାରର ଦୃଢ଼ୀକରଣ ବୁଝାଏ ନାହିଁ; ଅବାଞ୍ଛିତ ଓ ଯନ୍ତ୍ରଣାଦାୟକ ବ୍ୟବହାରର ବର୍ଜନ ମଧ୍ୟ ବୁଝାଏ । ଏ କ୍ଷେତ୍ରରେ ମଧ୍ୟ ଉପରୋକ୍ତ ନୀତିଟି କାର୍ଯ୍ୟ କରେ । ଗୋଟିଏ ଉଦାହରଣ ନେଇ ଏହାକୁ

ପ୍ରଚଳିତ କରାଯାଇପାରେ । ମନୋବିଜ୍ଞାନୀ ଗୋଟିଏ ଯନ୍ତ୍ରର ମଧ୍ୟଭାଗରେ ଗୋଟିଏ ଛୋଟ ବାଡ଼ ଦିଆଯାଇଛି ଏବଂ ଉକ୍ତ ବାଡ଼ଟିକୁ ଗୋଟିଏ ମୂଷା ଖୁବ ସହଜରେ ଡେଇଁ ପାରିବ । ଏହି ବାଡ଼ ଦ୍ୱାରା ଯନ୍ତ୍ରଟି ଦୁଇ ଭାଗରେ ବିଭକ୍ତ ହୋଇଛି । ଗୋଟିଏ ଭାଗରେ ମୂଷାଟିକୁ ଛାଡ଼ିଦେଇ ଉକ୍ତ ଭାଗରେ କ୍ଷୀଣ ବିଦ୍ୟୁତ୍ ସ୍ରୋତ ଚାଳନ କରାଯାଇପାରେ । ଦେଖାଯିବ ଯେ ଏ କ୍ଷୀଣ ବିଦ୍ୟୁତ୍ ମୂଷାଟିକୁ କିଛି କଷ୍ଟ ଦେଉଛି ଏବଂ ମୂଷାଟି ଇତସ୍ତତଃ ହୋଇ ଏପଟ ସେପଟ ଦୌଡ଼ାଦୌଡ଼ି କରୁକରୁ କୌଣସି ଏକଥର ଦୈବାତ୍ ଯନ୍ତ୍ରର ଅପର-ଭାଗକୁ ଚାଲି ଆସିପାରେ । ବାଡ଼ଟି ଡେଇଁ ଯନ୍ତ୍ରର ଅପର ଭାଗକୁ ଆସିଲେ ବର୍ତ୍ତମାନ ସେ ବିପଦମୁକ୍ତ । ଅପର ଭାଗରେ ବିଦ୍ୟୁତ୍ ଚାଳିତ ହେଉନାହିଁ । ପୁନଶ୍ଚ ମୂଷାଟିକୁ ନେଇ ବିଦ୍ୟୁତ୍ ପ୍ରବାହିତ ଭାଗରେ ଛାଡ଼ିଲେ ସେ ପୁଣି ବିଦ୍ୟୁତ୍ କଷ୍ଟରୁ ରକ୍ଷା ପାଇବାକୁ ଚେଷ୍ଟା କରିବ ଏବଂ ଅନ୍ୟ ଭାଗକୁ ଆସି ନିରାପଦ ହେବ । ଏହିପରି କେତେଥର ବିଦ୍ୟୁତ୍ କଷ୍ଟ ଓ ଅପର ଭାଗରେ ନିରାପଦତାର ଅନୁଭୂତି ପରେ ମୂଷାଟି ଯନ୍ତ୍ରର ନିରାପଦ ଭାଗରେ ରହିବାକୁ ପସନ୍ଦ କରିବ । ଆମେ ହାତରେ ମୂଷାଟିକୁ ନେଇ ବିଦ୍ୟୁତ୍ ପ୍ରବାହିତ ଭାଗରେ ଛାଡ଼ିବା ମାତ୍ରେ ସେ ସଙ୍ଗେ ସଙ୍ଗେ ବାଡ଼ ଡେଇଁ ଅନ୍ୟ ଭାଗକୁ ଚାଲିଆସିବ ।

ମନୁଷ୍ୟମାନେ ମଧ୍ୟ ଏପରି ଭାବରେ ବିପଦସଙ୍କୁଳ, ଯନ୍ତ୍ରଣାଦାୟକ ପରିସ୍ଥିତିରୁ ରକ୍ଷାପାଇବା ପାଇଁ ଚେଷ୍ଟା କରନ୍ତି । କେତେକ ଅନୁଭୂତିର ପୁନରାବୃତ୍ତି ସେମାନଙ୍କୁ ନିରାପଦ ଓ ଯନ୍ତ୍ରଣାଶୂନ୍ୟ କ୍ଷେତ୍ରର ସନ୍ଧାନ ଦେଲା ପରେ ସେମାନେ ଏପରି ନିରାପଦ ମାର୍ଗ ଅଧିକ ପସନ୍ଦ କରନ୍ତି । ପୁରସ୍କାର ପ୍ରାପ୍ତି ପାଇଁ ଗୋଟିଏ ବ୍ୟବହାରକୁ ଦୃଢ଼ୀଭୂତ କରିବାର ପ୍ରଶ୍ନ ହେଉ ବା ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ଏକ କୌଶଳ ଶିକ୍ଷା କରିବାର ପ୍ରଶ୍ନ ହେଉ, ଦୁଇଟିଯାକ କ୍ଷେତ୍ରରେ ଏକ ବୈଶିଷ୍ଟ୍ୟ ରହିଛି । ତାହା ହେଉଛି ବ୍ୟବହାରଟି ସହିତ ପରିବେଷ୍ଟନୀର ଫଳାଫଳ । ଅର୍ଥାତ୍ ଗୋଟିଏ ବ୍ୟବହାର ଦର୍ଶାଇଲା ମାତ୍ରେ ଯଦି ପୁରସ୍କାର ମିଳେ ବା ଯନ୍ତ୍ରଣା ଦୂର ହୁଏ, ତେବେ ଉକ୍ତ ବ୍ୟବହାରଟି ସୁଗଠିତ ହେବ । ପୁରସ୍କାର ଯୋଗାଣ କିମ୍ବା ଯନ୍ତ୍ରଣା ଦୂରୀକରଣକୁ ବ୍ୟବହାର ପ୍ରଦର୍ଶନର ପରବର୍ତ୍ତୀ ଅବସ୍ଥାର ଆୟୋଜନ କରି ବ୍ୟବହାର ଗଠନ କରିବା ସମ୍ପର୍କରେ ମନୋବିଜ୍ଞାନୀମାନେ ଏକମତ । ଏହା ଏକ ବହୁଦିନର ସ୍ୱୀକୃତ ନୀତି ।

## ଅସହାୟ ହେବା ପାଇଁ ଶିକ୍ଷା

କିନ୍ତୁ ଅଳ୍ପକିଛି ବର୍ଷ ପୂର୍ବରୁ ମନୋବିଜ୍ଞାନୀମାନଙ୍କ ମଧ୍ୟରେ ଆଉ ଏକ କୌତୂହଳ ଦେଖାଦେଇଛି । ପ୍ରଶ୍ନ ଉଠୁଛି ଯେ, ଯଦି ବ୍ୟବହାର ଓ ପୁରସ୍କାର ଯୋଗାଣ ମଧ୍ୟରେ କୌଣସି ସମ୍ପର୍କ ରଖାଯାଇ ନ ଥାଏ, ତେବେ ବ୍ୟବହାର ଉପରେ ତାର ଫଳାଫଳ କ'ଣ ହେବ? ଉପର ବର୍ଣ୍ଣିତ ପରୀକ୍ଷା ଭଳି ମୂଷାମାନଙ୍କ ଉପରେ ଗବେଷଣାରୁ ଏହାର ଉତ୍ତର ଖୋଜାଗଲା । ମୂଷାଟିକୁ ଗୋଟିଏ ଯନ୍ତ୍ର ମଧ୍ୟରେ ଛାଡ଼ିଦେଇ ଯନ୍ତ୍ରରେ

କ୍ଷୀଣ ବିଦ୍ୟୁତ୍ ସ୍ରୋତ ପ୍ରବାହିତ କରାଗଲା । ମୂଷାଟି ଯନ୍ତ୍ରଣା ପାଇ ଇତସ୍ତତଃ ଚେଷ୍ଟା କଲା ଏବଂ ଦୌଡ଼ାଦୌଡ଼ି କଲା । ମାତ୍ର ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ କୌଣସି ବ୍ୟବସ୍ଥା ନ ଥିଲା । ଏହିପରି କେତେ ଥର ମୂଷାଟିକୁ ବିଦ୍ୟୁତ୍ ଦିଆଗଲା ଓ ମୁକ୍ତିର କୌଣସି ଉପାୟ ରଖାଗଲା ନାହିଁ । ଦେଖାଗଲା ଯେ ଅନେକ ଥର ବିଦ୍ୟୁତ୍ କଷ୍ଟ ପାଇବାପରେ ମୂଷାଟିର ଦୌଡ଼ାଦୌଡ଼ି କମିଗଲା । ବିଦ୍ୟୁତ୍ ସ୍ରୋତ ଆରମ୍ଭ ହେଲାମାତ୍ରେ ମୂଷାଟି କ୍ଷୀଣ କଣ୍ଠରେ ଯନ୍ତ୍ରଣାକାତର ସ୍ୱର କରୁଥାଏ, କିନ୍ତୁ ଇତସ୍ତତଃ କ୍ରିୟାକଳାପର ପରିମାଣ କମିଯାଏ । ଏପରି କିଛିଦିନ ପରେ ଯେତେବେଳେ ଉକ୍ତ ଯନ୍ତ୍ରରେ ଗୋଟିଏ କୁଦ ନିର୍ମାଣ କରାଯାଇ ଉକ୍ତ କୁଦଟିକୁ ବିଦ୍ୟୁତ୍ ମୁକ୍ତ କରାଯାଏ, ତଥାପି ମଧ୍ୟ ମୂଷାଟି ଉକ୍ତ କୁଦରେ ଆଶ୍ରୟ ନେଇ ନିଜକୁ ବିପଦମୁକ୍ତ କରିବାର କୌଶଳ ଶିକ୍ଷା କରିପାରିଲା ନାହିଁ । ବିଦ୍ୟୁତ୍ ସ୍ରୋତ ବେଳେ ନିଜର ଅସହାୟତା ପ୍ରକାଶ କରିବା ଏକ ସହଜ ସ୍ୱଭାବ ବ୍ୟବହାରରେ ପରିଣତ ହେଲା । ଏଠାରେ ଲକ୍ଷ୍ୟ କରିବାର କଥା, ଏହି ଉଦାହରଣଟିରେ ମୂଷାର ବ୍ୟବହାର ଓ ଯନ୍ତ୍ରଣାରୁ ଉଦ୍ଧାର ମଧ୍ୟରେ କୌଣସି ସମ୍ପର୍କ ରକ୍ଷା କରା ନ ଯିବାରୁ ତାହାର ଫଳ ହେଲା ଶିକ୍ଷାକୃତ ଅସହାୟତା ।

ଚିନ୍ତା କଲେ ଜଣାଯିବ ଯେ ମନୁଷ୍ୟ କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ । ଗୋଟିଏ ଛାତ୍ର ଯଦି ଦେଖେ ଯେ ସେ ଯେତେ ଭଲ କରି ପଢ଼ିଲେ ଏବଂ ଲେଖିଲେ ମଧ୍ୟ ଦ୍ୱିତୀୟ-ଶ୍ରେଣୀର ମାର୍କ ପାଇପାରୁ ନାହିଁ; କେତେକ ପରୀକ୍ଷାରେ ଏ ଅନୁଭୂତିର ପୁନରାବୃତ୍ତି ହେବା ପରେ ଛାତ୍ର ନିଜକୁ ଅସହାୟ ମନେ କରି ଉନ୍ନତ କରିବାର ଉଦ୍ୟମରୁ ଦୂରେଇ ଯିବ । ପରେ ପରିବେଶର ଉନ୍ନତି ଘଟି ମାର୍କ ବୃଦ୍ଧିର ସମ୍ଭାବନା ଥିଲେ ମଧ୍ୟ ଛାତ୍ର ଜଣକ ବିଶେଷ ଉଦ୍ୟମ କରିବାକୁ ଆଗଭର ହେବନାହିଁ । ସେହିପରି ଜଣେ ବ୍ୟକ୍ତି ଯଦି ଦେଖେ ଯେ ତାହାର ସବୁପ୍ରକାର ଉଦ୍ୟମ ସତ୍ତ୍ୱେ ତା ଭାଗ୍ୟରେ କୌଣସି ପରିବର୍ତ୍ତନ ଘଟୁ ନାହିଁ, ତେବେ ସେ ପରବର୍ତ୍ତୀ କାଳରେ ଉଦ୍ୟମବିହୀନ ହୋଇ କାଳଯାପନ କରିବ ।

ସ୍ଥୂଳତଃ ବାହାର ପରିବେଶ ନିୟନ୍ତ୍ରଣଶୀଳ ନୁହେଁ—ଏ ଅନୁଭୂତି ପରେ ମନୁଷ୍ୟର ଉଦ୍ୟମ କମିଯାଏ ଓ ଶିଥିଳତା ପ୍ରକାଶ ପାଏ । ପରବର୍ତ୍ତୀ ସମୟରେ ପରି-ବେଶର ଉନ୍ନତି ଘଟିଲେ ମଧ୍ୟ ଶିଥିଳତା ଦୂର ହୁଏନାହିଁ । ମନୁଷ୍ୟକୁ କେତେକ କୃତ୍ରିମ ପରିବେଶ ମଧ୍ୟରେ ରଖାଯାଇ ଏବଂ ଉକ୍ତ ପରିବେଶରୁ ମୁକ୍ତ କୌଶଳର ସୁଯୋଗ କାଢ଼ି ନିଆଯାଇ ବହୁ ପରୀକ୍ଷା କରାଯାଇଛି । ଦେଖାଯାଇଛି ପରିବେଶଟି କେତେଦୂର ନିୟନ୍ତ୍ରଣ-ଶୀଳ ତାହାର ଅନୁଭୂତି ଉପରେ ବ୍ୟକ୍ତିର ଉଦ୍ୟମଶୀଳତା ନିର୍ଭର କରୁଛି । ବେଶି କେତେକ କ୍ଷେତ୍ରରେ ବ୍ୟକ୍ତିର ନିଜ ଅନୁଭୂତି ନ ଥିଲେ ମଧ୍ୟ ଅନ୍ୟମାନଙ୍କ ଅସହାୟ ହେବାର ଦେଖି ଦେଖି ସେ ନିଜକୁ ଅସହାୟ ମନେ କରେ ।

କେବଳ ବ୍ୟକ୍ତିଗତ ସ୍ତରରେ ନୁହେଁ, ସାମୂହିକ ଜୀବନରେ ମଧ୍ୟ ଏଭଳି ମନୋଭାବ ପ୍ରକାଶ ପାଏ । ଭାରତୀୟମାନଙ୍କର ନିଷ୍କ୍ରିୟତା ଓ ଅସହାୟ ମନୋଭାବକୁ ଏ ପରିପ୍ରେକ୍ଷୀରେ ବିଶ୍ଳେଷଣ କରାଯାଇପାରେ । ଆମେ ଜାଣୁ ଯେ ଭାରତୀୟମାନେ ଅତୀତରେ ବହୁ ଦୁର୍ବିପାକର ସମ୍ମୁଖୀନ ହୋଇଛନ୍ତି । ଭାରତୀୟମାନେ ନିୟମିତ ଭାବରେ ବହୁ ପ୍ରାକୃତିକ ବିପର୍ଯ୍ୟୟର ଶିକାର ହୋଇଛନ୍ତି । ଅତୀତରେ ଏ ସମସ୍ତ ଦୁର୍ବିପାକ କବଳରୁ ରକ୍ଷା ପାଇବାର ଉପାୟ ସୀମିତ ଥିଲା । ବାରମ୍ବାର ଦୁର୍ଯୋଗର ସମ୍ମୁଖୀନ ହେବା ଫଳରେ ଏବଂ ପରିବେଶ ଉପରେ ନିୟନ୍ତ୍ରଣ ଜାରି କରିବାର ସୁଯୋଗ ନ ପାଇ ଏକ ପ୍ରକାର ଶିଥିଳତା ଜନ୍ମ ନେଇଛି । ଆଜି ସେ ସମସ୍ତ ଦୁର୍ବିପାକରୁ ରକ୍ଷାପାଇବାର ଉପାୟ ସତ୍ତ୍ୱେ ସମସ୍ତ ଜଡ଼ତା ଓ ନିଷ୍କ୍ରିୟତା ଦୂର ହୋଇନାହିଁ । ଆହୁରି ଗଭୀର ଭାବରେ ଅନୁଧ୍ୟାନ କଲେ ଦେଖାଯିବ ଯେ ଭାରତର ପୂର୍ବାଞ୍ଚଳ ବେଶୀ ପରିମାଣରେ ପ୍ରାକୃତିକ ଦୁର୍ବିପାକର ଶିକାର । ଏ ଅଞ୍ଚଳରେ ନିଷ୍କ୍ରିୟତା ମଧ୍ୟ ସମାନୁପାତୀ ।

## ଅସହାୟତ୍ୱ ପାଇଁ ସାହାଯ୍ୟ

ପାରିପାର୍ଶ୍ୱିକ ଅବସ୍ଥା ଉପରେ ନିୟନ୍ତ୍ରଣ ନ ଥିବା ଫଳରେ ମନୁଷ୍ୟ ମନରେ ଅସହାୟତାର ବୀଜ ବପନ ହୁଏ । ପରବର୍ତ୍ତୀ କାଳରେ ପାରିପାର୍ଶ୍ୱିକ ଅବସ୍ଥାର ଉନ୍ନତି ଘଟିଲେ ମଧ୍ୟ ମନୁଷ୍ୟ ଚେଷ୍ଟାରେ ଆଶାନୁରୂପ ଉନ୍ନତି ଘଟେନାହିଁ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ମନୁଷ୍ୟ ନିଜକୁ ପରିସ୍ଥିତିର ମୁଖ ମୁହଁରେ ଭସାଇଦେଇ ନିଷ୍କ୍ରିୟତା ଅବଲମ୍ବନ କରିବ । ବିଭିନ୍ନ ଉପାୟରେ ମନୁଷ୍ୟ ମନରୁ ଏପରି ଶିଥିଳତା ଦୂର କରି ସକ୍ରିୟତା ଓ ଉଦ୍ୟମଶୀଳତାର ବିକାଶ ଘଟାଇବାକୁ ହେବ । ଏଥିପାଇଁ ବିଭିନ୍ନ ମାର୍ଗର ସାହାଯ୍ୟ ନିଆଯାଇପାରେ ।

ପ୍ରଥମତଃ ବୁଝିବାକୁ ହେବ ଯେ ଅସହାୟତା ଶିକ୍ଷା କରାଯାଇଥାଏ ପରିବେଷ୍ଟନୀରୁ । ସୁତରାଂ ଶିକ୍ଷା ଦ୍ୱାରା କେତେକାଂଶରେ ଅସହାୟ ମନୋଭାବ ଦୂର କରାଯାଇପାରେ । ବାହାରର ପରିବେଶଟି ଯେ ସମ୍ପୂର୍ଣ୍ଣ ନିୟନ୍ତ୍ରଣବହିର୍ଭୂତ ନୁହେଁ ଏବଂ ସେଥିରେ କେତେକ ପରିମାଣରେ ସ୍ଥିରତା ଅଛି ଏ ଧାରଣା ଲୋକମାନଙ୍କ ମନରେ ଦେବାକୁ ପଡ଼ିବ । ଗୋଟିଏ ପର୍ଯ୍ୟବେକ୍ଷଣରୁ ଏହା ଦେଖାଯାଇଛି । ଦୁଇଟି ଚିକିତ୍ସାଳୟମଧ୍ୟରୁ ଗୋଟିଏ ଚିକିତ୍ସାଳୟରେ ଜରାଗ୍ରସ୍ତ ଲୋକମାନଙ୍କୁ କେତେକ ସ୍ୱେଚ୍ଛାସେବୀ ସାକ୍ଷାତ କରି କହିଲେ ଯେ ସ୍ୱେଚ୍ଛାସେବୀମାନେ ଉକ୍ତ ଚିକିତ୍ସାଳୟକୁ ସମସ୍ତ ସମୟରେ ଆସନ୍ତି ଏବଂ ସେବାଶୁଶ୍ରୂଷା କରି ଫେରିଯାଆନ୍ତି । ଏମାନଙ୍କର ଆସିବାରେ କୌଣସି ସ୍ଥିରତା ନ ଥିଲା । ଦ୍ୱିତୀୟ ଚିକିତ୍ସାଳୟରେ ସମାନସଂଖ୍ୟକ ସ୍ୱେଚ୍ଛାସେବୀ ଜରାଗ୍ରସ୍ତ ଲୋକମାନଙ୍କୁ ଭେଟି ସେମାନଙ୍କୁ କହିଲେ ଯେ ସେମାନେ ସେବାକାର୍ଯ୍ୟରେ ସମୟ ଦେବେ । ସ୍ୱେଚ୍ଛାସେବୀମାନେ ଚିକିତ୍ସାଳୟ ଅଞ୍ଚଳରେ ରହନ୍ତି ଏବଂ ଦରକାର ପଡ଼ିଲେ ସେମାନଙ୍କୁ

ଡକାଯାଇପାରେ । ଏଥିପାଇଁ ସେମାନେ ଘର ଠିକଣା ଓ ଫୋନ୍ ନମ୍ବର ଚକିତ୍ସାଳୟରେ ଦେଇ ଯାଇଛନ୍ତି ଏବଂ ରୋଗୀମାନେ ଏଦ୍ୱାରା ସୁଯୋଗ ନେଇ ସ୍ୱେଚ୍ଛାସେବୀମାନଙ୍କୁ ଆବଶ୍ୟକ ସମୟରେ ଡକାଇପାରନ୍ତି ।

ପରବର୍ତ୍ତୀକାଳରେ ଦେଖାଗଲା ଯେ ଦ୍ୱିତୀୟ ଚକିତ୍ସାଳୟର ରୋଗୀମାନଙ୍କର ସୁସ୍ଥତା ବୃଦ୍ଧି ପାଇଛି, ମାନସିକ ପ୍ରସନ୍ନତା ବଢ଼ିଛି ଏବଂ କାର୍ଯ୍ୟଦକ୍ଷତା ମଧ୍ୟ ବଢ଼ିଛି । ଦ୍ୱିତୀୟ ଚକିତ୍ସାଳୟର ରୋଗୀମାନଙ୍କ କ୍ଷେତ୍ରରେ ବିଚାର କରାଯାଇପାରେ ଯେ ସେମାନଙ୍କ ମନରେ ଏକ ନିୟନ୍ତ୍ରଣବୋଧ ଥିଲା । କାରଣ ସେମାନେ ଭାବୁଥିଲେ ଯେ ସେମାନେ ଇଚ୍ଛା କଲା ମାତ୍ରେ ସ୍ୱେଚ୍ଛାସେବୀମାନଙ୍କର ସାହାଯ୍ୟ ନେଇପାରିବେ । ପକ୍ଷାନ୍ତରରେ ପ୍ରଥମ ଚକିତ୍ସାଳୟରେ ଏପରି ସୁବିଧା ନ ଥିଲା କିମ୍ବା ରୋଗୀମାନଙ୍କ ମନରେ ନିୟନ୍ତ୍ରଣବୋଧ ନ ଥିଲା । ସୁତରାଂ ପ୍ରଥମ ଚକିତ୍ସାଳୟର ରୋଗୀମାନଙ୍କ ତୁଳନାରେ ଦ୍ୱିତୀୟ ଚକିତ୍ସାଳୟର ରୋଗୀମାନଙ୍କର ଉନ୍ନତି ଏବଂ ମାନସିକ ପ୍ରସନ୍ନତା ଅଧିକ ହେଉଥିବାର ଦେଖାଗଲା ।

ଦ୍ୱିତୀୟତଃ, ନିୟନ୍ତ୍ରଣବହିର୍ଭୂତ ପରିସ୍ଥିତିର ଶିକାର ହେବା ପୂର୍ବରୁ ମନୁଷ୍ୟ ଯଦି ପରିସ୍ଥିତିକୁ ମୁକାବିଲା କରିବାର କୌଶଳ ଶିକ୍ଷା କରିଥାଏ, ତେବେ ନିୟନ୍ତ୍ରଣବହିର୍ଭୂତ ପରିସ୍ଥିତିର ପ୍ରଭାବ ଏତେ ଖରାପ ହୁଏନାହିଁ । ଅନ୍ୟଭାଷାରେ କହିଲେ ମନୁଷ୍ୟକୁ ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ କେତେକ କୌଶଳ ଶିକ୍ଷା କରିବାକୁ ହେବ । ବହୁକ୍ଷେତ୍ରରେ କାର୍ଯ୍ୟ ସଫଳତା ଲାଭ କରିବାର ଦୃଢ଼ ମନୋବୃତ୍ତି ଏ ଦିଗରେ କାମ କରେ । ମନୁଷ୍ୟକୁ କିଛି ପରିମାଣରେ ସ୍ୱାଧୀନତା, ଆତ୍ମନିର୍ଭରଶୀଳତା ଶିକ୍ଷା ଦେଲେ ମନୁଷ୍ୟ ସହଜରେ ପରିସ୍ଥିତିର ଦାସତ୍ୱ ମାନିନିଏ ନାହିଁ । ବରଂ ସଫଳକାମୀ ଶିଶୁ ଓ ବୟସ୍କମାନେ ଜଟିଳ ପରିସ୍ଥିତିର ସମ୍ମୁଖୀନ ହେଲେ ଅଧିକ ତତ୍ପରତା ଓ ଅଧିକ ଶକ୍ତି ନିୟୋଗ କରି ପରିସ୍ଥିତି ଉପରେ ପ୍ରଭୁତ୍ୱ ବିସ୍ତାର କରିବାକୁ ଲାଗିପଡ଼ନ୍ତି ।

ଶେଷରେ କୁହାଯାଇପାରେ ଯେ ଅସହାୟ ମନୋଭାବ ମନୁଷ୍ୟ ମନରେ ଉପରି ସୃଷ୍ଟି ହୁଏ, ତାହା ବୁଝାଇଦେବା ପରେ କେତେକ ଲୋକ ଅସହାୟ ମନୋଭାବ ଚିର୍ଣ୍ଣି ଦୃଢ଼ ମନୋଭାବ ଗଢ଼ି ତୋଳନ୍ତି । ଆଉ କେତେକ କ୍ଷେତ୍ରରେ ନିୟନ୍ତ୍ରଣବହିର୍ଭୂତ ପରିସ୍ଥିତିର ସମ୍ମୁଖୀନ ହେଲା ବେଳେ ବୁଦ୍ଧିମତ୍ତାର ପ୍ରୟୋଗ କରି ପରିସ୍ଥିତିର କୁପ୍ରଭାବ ଏଡ଼ାଇ ପାରନ୍ତି । ମନୁଷ୍ୟର ପରିବାର, ଶିକ୍ଷାନୁଷ୍ଠାନ, ପ୍ରତିବେଶୀ ଓ ପାରିପାର୍ଶ୍ୱିକ ଅବସ୍ଥା ବଞ୍ଚିବାର ପରି କାମ କରେ । ଏସବୁ ସ୍ଥଳରେ ମଣିଷ ଭଲଗୁଣ ଶିଖିଲା ପରି ଅସହାୟତା ମଧ୍ୟ ଶିକ୍ଷା କରେ । ପ୍ରତି କଥାରେ ବାପ, ମା, ଶିକ୍ଷକ ଓ ସାହି-ପଡ଼ିଶାର ଲୋକଙ୍କ ଉପରେ ନିର୍ଭର କରି ନିଜର ସ୍ୱନିର୍ଭରତା ଓ ଆତ୍ମନିର୍ଭରଶୀଳତା ହରାଇପାରେ । ଅସହାୟମନୋଭାବ ଗଠନରେ ପରିବାର ଓ ଶିକ୍ଷାନୁଷ୍ଠାନର ଭୂମିକା ଅନ୍ୟ ଏକ ସମୟରେ ଆଲୋଚନା କରାଯାଇପାରେ । କିନ୍ତୁ ଅସହାୟ ବ୍ୟବହାର ଯେ ଏକ ଶିକ୍ଷାକୃତ

ବ୍ୟବହାର ଏବଂ ଉନ୍ନତ ଧରଣର ଉପଯୋଗୀ ଶିକ୍ଷାଦ୍ୱାରା ଅସହାୟତା ମନୋଭାବ ଦୂର କରି ମଜିଭୁ ଓ ଆତ୍ମନିର୍ଭରଶୀଳ ବ୍ୟବହାର ଗଠନ କରାଯାଇପାରେ—ଏ ତଥ୍ୟର ଉପଲବ୍ଧି ଆମ ବ୍ୟକ୍ତିଗତ ଓ ଜାତୀୟଜୀବନ ବିକାଶର ଏକ ଉଜ୍ଜ୍ୱଳ ସମ୍ଭାବନାର ସୂଚକ ।

# ଅପେକ୍ଷା କରିବେ କି ନାହିଁ ?

"ବର୍ତ୍ତମାନ ଗୋଟିଏ ଲଜେନ୍ସ ନେବ କି କାଲି ଦୁଇଟି ଲଜେନ୍ସ ନେବ ?" —ଖୁବ୍ ଅଳ୍ପ ବୟସର ପିଲାମାନଙ୍କୁ ଏ ପ୍ରଶ୍ନ ପଚାରିଲେ, ଅଧିକାଂଶ ପିଲା ଏଇକ୍ଷଣି ଗୋଟିଏ ଲଜେନ୍ସ ପାଇବାକୁ ଆଗ୍ରହ ଦେଖାଇବେ । କେବଳ ପିଲାମାନଙ୍କ କ୍ଷେତ୍ରରେ ନୁହେଁ, ଜୀବନର ସବୁ ସ୍ତରରେ ନିକଟ ପ୍ରାପ୍ତିର ଆଶାକୁ ବଳିଦେଇ ଭବିଷ୍ୟତର ମୂଲ୍ୟବାନ ଜିନିଷ ଲାଭ ପ୍ରତି ଆଗ୍ରହ ରଖିବା ଏକ ବିଶିଷ୍ଟ ଧରଣର ଆତ୍ମସଂଯମ ଗୁଣ । ସହଜ ସୁଲଭ ଭଙ୍ଗୀରେ ଏ ଅଭ୍ୟାସ ଗଢ଼ି ଉଠେନାହିଁ । ଦ୍ରୁତ ପ୍ରାପ୍ତିର ଆକର୍ଷଣ ପିଲାମାନଙ୍କ ପାଇଁ ଅଧିକ ହେଲେ ମଧ୍ୟ ବୟସ୍କମାନଙ୍କ ପାଇଁ କମ୍ ନୁହେଁ । ନିକଟରେ ପରିପୂରିତ ହେବାକୁ ଯାଉଥିବା ଆଶା ଆକାଂକ୍ଷା ବଦଳରେ ଦୂରବର୍ତ୍ତୀ ଆଶା ଆକାଂକ୍ଷା ପଛରେ ମନୋନିବେଶ କରିବା କଷ୍ଟସାଧ୍ୟ । ତଥାପି ଉପଯୁକ୍ତ ଶିକ୍ଷା ଏବଂ ମାନସିକ ପରିପକ୍ୱତା ଫଳରେ ଏପରି ଆତ୍ମସଂଯମ ଶକ୍ତିର ବିକାଶ ଘଟେ ।

ଭବିଷ୍ୟତରେ ପର୍ଯ୍ୟାପ୍ତ ଲାଭ ପାଇଁ ବର୍ତ୍ତମାନର ପରିପୂର୍ତ୍ତିରେ ବିଳମ୍ବକରଣ ଏକ ଶିକ୍ଷାକୃତ ବ୍ୟବହାର । ଏ ଦୃଷ୍ଟିରୁ ପିଲାମାନେ କିପରି ଏ ଧରଣର ଆତ୍ମସଂଯମ ଶିକ୍ଷା କରନ୍ତି, କେଉଁ କେଉଁ ସ୍ଥଳରେ ଏପରି ଆତ୍ମସଂଯମ ଅଧିକ ବିକାଶ ଲାଭ କରେ ଏବଂ ଅଭିଭାବକମାନେ ଏ ଦିଗରେ କଣ କରିପାରିବେ—ଏଗୁଡ଼ିକର ଅନୁଶୀଳନ ଖୁବ୍ ଉପାଦେୟ । ଗୋଟିଏ ପିଲା ଅଳ୍ପବୟସରୁ ଏପରି ସଂଯମୀ ହେବା ଶିକ୍ଷା କରିଥିଲେ, କିଶୋର ଜୀବନରେ ଏହାର ଅଧିକ ବିକାଶ ହୋଇ ଜୀବନ ଉନ୍ନତ ଓ ସୁସଂଯତ ହୁଏ ଏବଂ ପରବର୍ତ୍ତୀ କାଳରେ ଜୀବନ ସୁଖମୟ ହୋଇଥାଏ । ଏ ଦୃଷ୍ଟିରୁ ପିଲାମାନଙ୍କୁ ବିସ୍ତରକୁ ନେଇ ଏ ବ୍ୟବହାରର ମନୋବୈଜ୍ଞାନିକ ବିଚାର କରାଯିବା ଆବଶ୍ୟକ । ଦୈନନ୍ଦିନ ଜୀବନରେ ଏହାର ଗୁରୁତ୍ୱ ଖୁବ୍ ବେଶୀ । ପ୍ରତି ବାପ, ମା ଆଶା ପୋଷଣ କରନ୍ତି—ତାଙ୍କର ସନ୍ତାନ ଆଜି ସିନେମା ନ ଯାଇ ପଢ଼ାପଢ଼ି କରୁ,ଫଳରେ ସେ ଆଗାମୀ

ପରୀକ୍ଷାରେ ଭଲ କରିପାରିବ ଏବଂ ପରୀକ୍ଷା ପରେ ସିନେମା ମଧ୍ୟ ଯାଇପାରିବ । ପ୍ରତି ଶିକ୍ଷକ ଆଶା କରନ୍ତି—ତାଙ୍କର ଛାତ୍ର ବର୍ତ୍ତମାନ କଷ୍ଟ ସହି କାମ କରନ୍ତୁ ଏବଂ ଆଗାମୀ ଜୀବନରେ ସ୍ୱଚ୍ଛଳତା ଲାଭ କରନ୍ତୁ । ଉଚିତ ଅନୁଚିତ ଦୃଷ୍ଟିରୁ ଏପରି ସଂଯମପୂର୍ଣ୍ଣ ବ୍ୟବହାର କାମ୍ୟ ହେଲେ ମଧ୍ୟ ସବୁ ପିଲାଙ୍କଠାରେ ଏହା ଦେଖାଯାଏ ନାହିଁ । ବରଂ ଅଧିକାଂଶ ପିଲା ବର୍ତ୍ତମାନର ଆକର୍ଷଣରେ ପ୍ରଲୋଭିତ ହୋଇ ଭବିଷ୍ୟତର ସୁଫଳ ହରାଇବସନ୍ତି ।

## ପ୍ରଥମ ସ୍ତର :ନିଷ୍ପତ୍ତି ଗ୍ରହଣ

ପିଲାମାନଙ୍କୁ ଏପରି ସଂଯମ ଶିକ୍ଷା ଦେବାର ଦୁଇଟି ସ୍ତର ରହିଛି । ପ୍ରଥମେ ପିଲାଟି ଯେପରି ଅପେକ୍ଷା କରିବାକୁ ନିଷ୍ପତ୍ତି ନିଏ—ତାହା ଦେଖିବାକୁ ହେବ । ଅପେକ୍ଷା କରିବାରେ କିଛି ପରିମାଣରେ କଷ୍ଟ ବା ବ୍ୟର୍ଥତା ରହିଛି । ଭବିଷ୍ୟତର ସୁଫଳ ପାଇଁ ପିଲାଟି ଯେପରି ସେ କଷ୍ଟକୁ ସହିନିଏ—ତାହା ଦେଖିବାକୁ ହେବ । ଏ କ୍ଷେତ୍ରରେ ପିଲା-ମାନେ ବର୍ତ୍ତମାନର ଲାଭ ଓ ଭବିଷ୍ୟତର ଲାଭ ମଧ୍ୟରେ ପାର୍ଥକ୍ୟ ବିଚାର କରନ୍ତି । ଏ ଦୁଇଟି ଲାଭ ମଧ୍ୟରେ ପାର୍ଥକ୍ୟ ଯେତେ କମ୍ ହୁଏ, ବର୍ତ୍ତମାନର ଲାଭ ପ୍ରତି ପ୍ରଲୋଭନ ସେତେ ବେଶୀ ହୁଏ । ଅନ୍ୟକ୍ଷେତ୍ରରେ ନିକଟତର ଲାଭଠାରୁ ଦୂରବର୍ତ୍ତୀ ଅଧିକ ଲାଭର ପାର୍ଥକ୍ୟ ଖୁବ୍ ବେଶୀ ହେଲେ ପିଲାମାନଙ୍କର ଦୂରବର୍ତ୍ତୀ ଲାଭ ପାଇଁ ଇଚ୍ଛା ବଢ଼େ । ଏପରି କ୍ଷେତ୍ରରେ ପିତାମାତା ବା ଅଭିଭାବକମାନଙ୍କର କର୍ତ୍ତବ୍ୟ ହେଉଛି ଭବିଷ୍ୟତ ସୁଫଳର ଗୁରୁତ୍ୱକୁ ବିଭିନ୍ନ ଉପାୟରେ ବୃଦ୍ଧି କରିବା । ଉଦାହରଣ ସ୍ୱରୂପ କୁହାଯାଇ-ପାରେ ଯେ, ଗୋଟିଏ ପିଲା ବର୍ତ୍ତମାନର ସିନେମା ଯିବା ଏବଂ ବର୍ତ୍ତମାନ ପଢାପଢ଼ି କରି ପରୀକ୍ଷାରେ ଭଲକରି ପରେ ସିନେମା ଯିବା ମଧ୍ୟରେ ଗୋଟିଏକୁ ଗ୍ରହଣ କରିବା ପାଇଁ ବିଚାର କରୁଥିଲା ବେଳେ, ପିତାମାତା ପରୀକ୍ଷାରେ ଭଲ କରିବାର ଆନୁଷଙ୍ଗିକ ସୁଫଳର ବର୍ଣ୍ଣନା ଦେବା ଉଚିତ । ପରୀକ୍ଷାରେ ଭଲ କରିବା ଦ୍ୱାରା ଶିକ୍ଷକଙ୍କ ସ୍ନେହ, ବନ୍ଧୁମାନଙ୍କ ପ୍ରଶଂସା, ଗୁରୁଜନମାନଙ୍କ ଶ୍ରଦ୍ଧା ଏବଂ ସର୍ବୋପରି ଭବିଷ୍ୟତ ଜୀବନର ଉଜ୍ଜ୍ୱଳ ରୂପରେଖ କିପରି ସମ୍ଭବପର, ତାହା ବୁଝାଇବା ଉଚିତ । ଏତଦ୍‌ବ୍ୟତୀତ, ପରବର୍ତ୍ତୀ ସମୟରେ ସିନେମା ମଧ୍ୟ ଦେଖାଯାଇ ପାରେ—ତାହାର ସୂଚନା ମଧ୍ୟ ଦେବାକୁ ହେବ । ଅନ୍ୟ ଦିଗରେ ବର୍ତ୍ତମାନ ଲାଭର ଗୁରୁତ୍ୱ ହ୍ରାସ ପାଇଁ ମଧ୍ୟ ଉଦ୍ୟମ କରାଯାଇପାରେ । ବର୍ତ୍ତମାନର ସିନେମା ଦେଖା ମନରେ ବିଚଳନ ସୃଷ୍ଟି କରିବ ଏବଂ ବାପ ମା'ଙ୍କ ମନରେ ଦୁଃଖ ଦେବ—ଏପରି କହିବାକୁ ହେବ । ଫଳରେ ବର୍ତ୍ତମାନର ଆକର୍ଷଣ ଓ ଭବିଷ୍ୟତର ସୁଫଳ ମଧ୍ୟରେ ଦୂରତ୍ୱ ବୃଦ୍ଧି ପାଇବାରୁ ପିଲାମାନଙ୍କର ନିଷ୍ପତ୍ତି ଭବିଷ୍ୟତ ଦିଗରେ ଢଳିବାର ସମ୍ଭାବନା ବୃଦ୍ଧି ପାଇବ ।

ଅନେକ ସମୟରେ ଆମେ ହୁଏତ ଏପରି ଉଦ୍ୟମର ଗୁରୁତ୍ୱ ବୁଝି ନ ପାରୁ । ପିଲାଟି ଯେତେବେଳେ ଆଜର ଗୋଟିଏ ଲଜେନ୍ସ ଓ ଆଗାମୀ କାଲିର ଦୁଇଟି

ଲଜେନ୍ସ ମଧ୍ୟରେ ନିଷ୍ପତ୍ତି ନେଉଛୁ, ସେତେବେଳେ ଅବସ୍ଥା ଅତି ସାଧାରଣ । କାଲି ଗୋଟିଏ ଲଜେନ୍ସ ବଦଳରେ କାଲି ସାତୋଟି, ଦଶଟି ବା ପନ୍ଦରଟି ଲଜେନ୍ସ ମିଳିବ ବୋଲି କହି ପିଲା ମତର ପରିବର୍ତ୍ତନ କରାଯାଇପାରେ । ଏତଦ୍‌ବ୍ୟତୀତ ପିଲାଟି ଆଜିର ଗୋଟିଏ ଲଜେନ୍ସ ନେଲେ ମଧ୍ୟ ବିଶେଷ କ୍ଷତି ନାହିଁ । କିନ୍ତୁ ଜୀବନର ଅନେକ ପରିସ୍ଥିତିରେ ଆଗାମୀ କାଲିର ଗୁରୁତ୍ୱ ନ ବୁଝି ପିଲାମାନେ ବହୁ ଜିନିଷ ହରାଇଛନ୍ତି । ଏହା ଦ୍ୱାରା ପିତାମାତାଙ୍କ ଆଶା ବାଧାପ୍ରାପ୍ତ ହୁଏ । ତେଣୁ ପ୍ରତ୍ୟେକ ଦାୟିତ୍ୱସମ୍ପନ୍ନ ବ୍ୟକ୍ତିର କର୍ତ୍ତବ୍ୟ ହେଉଛି ପିଲାଟିର ଆତ୍ମସଂଯମ ଶକ୍ତି ବୃଦ୍ଧି ଦିଗରେ ପଦକ୍ଷେପ ନେବା ।

## ଦ୍ୱିତୀୟସ୍ତର : ନିଷ୍ପତ୍ତି ରକ୍ଷା

ଆଗାମୀ କାଲିର ପୁରସ୍କାର ସପକ୍ଷରେ କେବଳ ନିଷ୍ପତ୍ତି ନେବା ଯଥେଷ୍ଟ ନୁହେଁ । ନିଷ୍ପତ୍ତି ଗ୍ରହଣର ପରବର୍ତ୍ତୀ ସ୍ତରରେ ପିଲାଟି ଯେପରି ନିଜର ନିଷ୍ପତ୍ତି ରକ୍ଷା ଦିଗରେ ଉଦ୍ୟମ କରେ ଏବଂ ଅପେକ୍ଷା କରିବା ସମୟ ମଧ୍ୟରେ କିଛି ଅର୍ଥପୂର୍ଣ୍ଣ ଓ ଆନନ୍ଦଦାୟକ କାର୍ଯ୍ୟରେ ମନୋନିବେଶ କରେ—ତାହା ଖୁବ୍ ପ୍ରୟୋଜନ । ନଚେତ୍ ପ୍ରଥମ ସ୍ତରରେ ନିଷ୍ପତ୍ତି ନେଇଥିଲେ ମଧ୍ୟ ଭବିଷ୍ୟତ ପୁରସ୍କାର ଲାଭ ପୂର୍ବରୁ ପିଲାଟି ମତ ପରିବର୍ତ୍ତନ କରିପାରେ ଏବଂ ଭବିଷ୍ୟତର ସୁଫଳ ହରାଇପାରେ । ପ୍ରଥମେ ପିଲାଟି ଆଜିର ଜିନିଷ ନେବନାହିଁ ବୋଲି କହିସାରିବା ପରେ ପରେ କିଛି ପରିମାଣରେ ବ୍ୟର୍ଥତା ଓ କଷ୍ଟ ଅନୁଭବ କରେ । ତା'ର ସାଙ୍ଗସାଥୀମାନେ ବର୍ତ୍ତମାନ ପ୍ରାପ୍ତିର ଆନନ୍ଦରେ କୋଳାହଳ କରୁଥିଲେ ତା'ର କଷ୍ଟ ଅଧିକ ବଢ଼ିଯାଏ ।

ଏ ପରିପ୍ରେକ୍ଷୀରେ ପିଲାଟି ମତ ବଦଳାଇବାର ଯଥେଷ୍ଟ ସମ୍ଭାବନା ରହିଛି । ଭବିଷ୍ୟତ ପ୍ରତି ପିଲାଟିର ଆଗ୍ରହ ବୃଦ୍ଧି କରିବାକୁ ହେଲେ ମଧ୍ୟବର୍ତ୍ତୀ ସମୟରେ ପିଲାଟି ଯେପରି ଅନ୍ୟ କାମରେ ମନ ଦିଏ, ତାହା ଦେଖିବାକୁ ହେବ । ଅନ୍ୟାନ୍ୟ ପ୍ରିୟ ଜିନିଷର ସୁଯୋଗ ଦେଇ ପିଲାଟିର ବ୍ୟର୍ଥତା କମାଇ ଦିଆଯାଇପାରେ । ପ୍ରଥମେ ବିଶ୍ୱାସ କରାଯାଉଥିଲା ଯେ ବୋଧହୁଏ ଭବିଷ୍ୟତରେ ମିଳିବ ବୋଲି କୁହାଯାଇଥିବା ଜିନିଷଟିକୁ ଦେଖାଇଲେ ସେମାନଙ୍କର ବ୍ୟର୍ଥତା କମିବ । ସେମାନେ ଯେ ଆଗାମୀ ଦିନରେ ସେ ଜିନିଷଟିକୁ ନିଶ୍ଚୟ ପାଇବେ, ଏ ଭରସା ସେମାନଙ୍କର ବଢ଼ିବ । ଉଦାହରଣ ସ୍ୱରୂପ, ପିଲାଟିକୁ ଆଜି ଗୋଟିଏ ରସଗୋଲା ଏବଂ ଆଗାମୀ କାଲି ରସଗୋଲା ସହ ଅନ୍ୟ ସୁସ୍ୱାଦୁ ଖାଦ୍ୟ ମଧ୍ୟରୁ ଗୋଟିକୁ ବାଛିବାର ସୁଯୋଗ ଦିଆଯାଇପାରେ । ଏ କ୍ଷେତ୍ରରେ ଆଗାମୀ କାଲିର ଖାଦ୍ୟ ପ୍ରତି ଆଗ୍ରହ ବୃଦ୍ଧି କରିବାକୁ ଆଗାମୀ କାଲିର ଖାଦ୍ୟବସ୍ତୁ ଗୋଟିଏ ପ୍ଲେଟରେ ଆଣି ତା ସମ୍ମୁଖରେ ରଖାଯାଇପାରେ । ଆଗରୁ ବିଶ୍ୱାସ କରାଯାଉଥିଲା ଯେ ଏପରି କରାଗଲେ ପିଲାଟିର ଆଗ୍ରହ ଆଗାମୀ କାଲିର ଲାଭ ପ୍ରତି ବୃଦ୍ଧି ପାଇବ । ମାତ୍ର ଏହା ସତ୍ୟ ନୁହେଁ ।

ମନୋବିଜ୍ଞାନୀମାନେ ବହୁ ପରୀକ୍ଷା କରି ଦେଖିଛନ୍ତି ଯେ ଆଗାମୀ କାଲିର ଖାଦ୍ୟ (ବା ଅନ୍ୟ ପୁରସ୍କାର) ଆଖି ଆଗରେ ରଖିଥିଲେ ମଧ୍ୟ ପିଲାମାନେ ଆଜିର ଲାଭ ପାଇଁ ତତ୍ପରତା ଦେଖାନ୍ତି । କେତେକ ପିଲା ଆଗାମୀ କାଲିର ସୁସ୍ୱାଦୁ ଖାଦ୍ୟ ପସନ୍ଦ କରିବେ ବୋଲି କହିଦେଇ ସାମନାରେ ଥିବା ଆଗାମୀକାଲି ଖାଦ୍ୟ ଆଡ଼େ ନ ଚାହିଁ, ଗୀତ ଗାଆନ୍ତି, ଖେଳନ୍ତି ବା ସେହିପରି କିଛି କରନ୍ତି । କିନ୍ତୁ କିଛି ସମୟ ପରେ ସେମାନଙ୍କର ସ୍ଥିରତା ଭଗ୍ନ ହୁଏ । ସେମାନେ ଆଜି ରସଗୋଲା ଖାଇବେ ବୋଲି କହନ୍ତି । ଖୁବ୍ ଅଳ୍ପ ପିଲା ଦୀର୍ଘ ସମୟ ଧରି ନିଜର ନିଷ୍ପତ୍ତି ରକ୍ଷା କରି ଆଗାମୀ କାଲିର ପୁରସ୍କାରକୁ ଆଦର କରନ୍ତି ।

## ଆତ୍ମସଂଯମର ପ୍ରସ୍ତୁତି

ମନୋବିଜ୍ଞାନୀମାନଙ୍କର ପରୀକ୍ଷାରୁ ଗୋଟିଏ କୌତୂହଳପୂର୍ଣ୍ଣ ତଥ୍ୟର ସମାଧାନ ମିଳିଛି । ପରୀକ୍ଷା କରାଯାଇ ଦେଖାଯାଇଛି ଯେ ଆଗାମୀ କାଲିର ପ୍ରକୃତ ସୁସ୍ୱାଦୁ ଖାଦ୍ୟ ପିଲାଙ୍କ ସାମନାରେ ନ ରଖି ଉକ୍ତ ଖାଦ୍ୟର ଛବି ରଖିଲେ ପିଲାମାନଙ୍କର ଆତ୍ମସଂଯମ ଶକ୍ତି ବୃଦ୍ଧି ପାଉଛି । ଅନ୍ୟ ଭାଷାରେ କହିଲେ ଛବି ଦେଖି ପିଲାଟି ବର୍ତ୍ତମାନର ଖାଦ୍ୟ ପ୍ରତି ଲାଳାୟିତ ନ ହୋଇ ଭବିଷ୍ୟତର ଖାଦ୍ୟ ଉପରେ ଆସ୍ଥା ରଖୁଛି । ଏହାକୁ ଏକ ବ୍ୟାପକ ଦୃଷ୍ଟିରେ ବିଚାର କଲେ ଶିକ୍ଷା ମିଳୁଛି ଯେ ପିଲାମାନଙ୍କୁ ଭବିଷ୍ୟତର ପୁରସ୍କାର ସମ୍ପର୍କରେ ଏକ ଜ୍ଞାନଗତ (cognitive) ବର୍ଣ୍ଣନା ଦେବା ଖୁବ ଭଲ ।

ମନୋବିଜ୍ଞାନୀମାନଙ୍କ ମତରେ ଭବିଷ୍ୟତରେ ପାଇବାକୁ ଥିବା ଜିନିଷଟି ବିଷୟରେ, ପିଲାଟି କ'ଣ ଚିନ୍ତା କରୁଛି, ତାହା ଖୁବ ତାତ୍ପର୍ଯ୍ୟପୂର୍ଣ୍ଣ । ଭବିଷ୍ୟତରେ ପାଇବାକୁ ଥିବା ଜିନିଷ ବିଷୟରେ ସେ ଯଦି ଅଧିକରୁ ଅଧିକ ଚିନ୍ତା କରେ, ତେବେ ତାହା ତା'ମନରେ ଆନନ୍ଦ ଦିଏ ଏବଂ ବର୍ତ୍ତମାନର ବ୍ୟର୍ଥତାକୁ ସହିନେବା ପାଇଁ ମନୋବଳ ଦିଏ । ଅନ୍ୟାନ୍ୟ ଆନୁସଙ୍ଗିକ ମଜା କଥା ବା ଆନନ୍ଦଦାୟକ ଚିନ୍ତା ଏ ଦିଗରେ ଖୁବ୍ ସାହାଯ୍ୟ କରେ । ଫଳରେ ଆଗାମୀ ଦିନର ସୁଫଳର ବର୍ଣ୍ଣନା ଦେବା ପିତାମାତା ଏବଂ ଅଭିଭାବକମାନଙ୍କର ଏକ ବିଶିଷ୍ଟ ଭୂମିକା । ଭବିଷ୍ୟତରେ ମିଳିବାକୁ ଥିବା ପ୍ରକୃତ ବସ୍ତୁ (ଖାଦ୍ୟ, ଖେଳନା ବା ସେହିପରି କିଛି ସାମଗ୍ରୀ) ଦେଖାଇ ପିଲାର ଧୈର୍ଯ୍ୟ ବୃଦ୍ଧି କରାଯିବାର କୌଣସି ପ୍ରମାଣ ନ ଥିବାରୁ ସେପରି କରିବାର ଆବଶ୍ୟକତା ନାହିଁ ।

ଆଗାମୀ ଦିନର ପୁରସ୍କାର ସମ୍ପର୍କରେ ଧାରଣା ଦେବା ଓ ବର୍ଣ୍ଣନା କରିବା ବ୍ୟତୀତ ଆଉ ଗୋଟିଏ ଅବସ୍ଥା ପିଲାମାନଙ୍କର ଆତ୍ମସଂଯମକୁ ପ୍ରଭାବିତ କରିଥାଏ । ତାହା ହେଉଛି ପିତାମାତା, ଶିକ୍ଷକ, ଅଭିଭାବକ ତଥା ପ୍ରତିବେଶୀମାନଙ୍କର ଏତାଦୃଶ ଆତ୍ମସଂଯମ ଆଚରଣ । ପିଲାମାନେ ନିଜର ପରିପାର୍ଶ୍ୱରେ ଦେଖୁଥିବା ଲୋକମାନଙ୍କର ଦୂରବର୍ତ୍ତୀ ସୁଫଳ ଲାଭରେ ଆଗ୍ରହ ଦେଖିଲେ ଅନୁକରଣପ୍ରିୟ ହୋଇ ଅପେକ୍ଷା କରିବାକୁ ଶିକ୍ଷା

କରନ୍ତି । ସମାଜବିଜ୍ଞାନୀମାନେ କେତେକ ଗୋଷ୍ଠୀର ସନ୍ଧାନ କରିଛନ୍ତି, ଯେଉଁଠାରେ ଭବିଷ୍ୟତର ସୁଫଳ ପାଇଁ ଅପେକ୍ଷା କରିବାର ଆଗ୍ରହ ଖୁବ ବେଶୀ । ସେହିପରି ଗୋଷ୍ଠୀରେ ପିଲାମାନେ ମଧ୍ୟ ଅପେକ୍ଷା କରିବାର ଦେଖାଯାଏ । ଅପର ପକ୍ଷରେ ଅପେକ୍ଷା କରିବାର ଧୈର୍ଯ୍ୟ ନ ଥିବା ଗୋଷ୍ଠୀର ପିଲାମାନେ ବର୍ତ୍ତମାନ-ସର୍ବସ୍ୱ ହେବାର ଦେଖାଯାଏ । ଆଗାମୀ ଦିନର ପରିପ୍ରେକ୍ଷୀରେ ଜୀବନ ଗଢ଼ିବା ସବୁବେଳେ ସବୁଦେଶରେ ଶ୍ରେୟସ୍କର । ସେପରି ସମାଜ ଗଠନ ପାଇଁ ଏକ ସାମୂହିକ ଉଦ୍ୟମ ଆବଶ୍ୟକ । ନିଜେ ସମସ୍ୟୋନ୍ମୁଖୀ ହେବା ଏବଂ ନିଜର ନିର୍ଭରଶୀଳ ସନ୍ତାନସନ୍ତତିଙ୍କୁ ତାହା ଶିକ୍ଷାଦେବା ଏକ ଗମ୍ଭୀର ଦାୟିତ୍ୱ-ବୋଧର ସୂଚକ ।

# କେତେ ଦୂରରେ ଠିଆ ହେବେ ?

ଖୁବ୍ ଅନ୍ତରଙ୍ଗଭାବରେ କଥାବାର୍ତ୍ତା କରିବାକୁ ଆପଣ ଜଣେ ବ୍ୟକ୍ତିଙ୍କ ପାଖକୁ ଲାଗିଆସିଲା ବେଳେ ବ୍ୟକ୍ତି ଜଣଙ୍କ ପଛକୁ ଘୁଞ୍ଚିଗଲେ ଆପଣଙ୍କୁ ନିଶ୍ଚୟ ଖରାପ ଲାଗିବ । ସେହିପରି କୌଣସି ଏକ ସାକ୍ଷାତକାର ବେଳେ ଆପଣ ଆଖିକୁ ଆଖି ମିଳାଇ ଜୋର୍‌ରେ କହିଯାଉଥିବାବେଳେ ଅନ୍ୟ ବ୍ୟକ୍ତିଜଣଙ୍କ ଚାହାଣି ଦୂରେଇ ନେଲା ବେଳେ ଆପଣ ଅପ୍ରତିଭ ହୋଇପାରନ୍ତି । କିନ୍ତୁ ନିଜ ଚତୁପାର୍ଶ୍ୱର ଶୂନ୍ୟସ୍ଥାନକୁ ଭିନ୍ନ ଭାବରେ ଅନୁଭବ କରିବା ଏବଂ ସ୍ୱତନ୍ତ୍ରଭାବରେ ବ୍ୟବହାର କରିବାରେ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଯେ ପାର୍ଥକ୍ୟ ରହିଛି, ଏହା ଏକ ମନସ୍ତାତ୍ତ୍ୱିକ ସତ୍ୟ ।

ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଯୋଗାଯୋଗ,ଭାବର ଆଦାନ ପ୍ରଦାନରେ ଭାଷା ମୁଖ୍ୟଅଂଶ ଗ୍ରହଣ କରୁଥିଲେ ମଧ୍ୟ , ଯୋଗାଯୋଗ କେବଳ ଭାଷା ମଧ୍ୟରେ ସୀମିତ ନୁହେଁ । ମୁଖର ପ୍ରକାଶ ଭଙ୍ଗୀ, ଶରୀରର ଚାଳନ ଓ ଭାବଭଙ୍ଗୀ, ଚକ୍ଷୁର ଚାହାଣି, କଣ୍ଠର ସ୍ୱର ଏବଂ ଚତୁଃପାର୍ଶ୍ୱସ୍ଥ ଶୂନ୍ୟସ୍ଥାନର ବ୍ୟବହାର ଇତ୍ୟାଦି ବହୁ ଭାଷା ବହିର୍ଭୂତ ଉପାଦାନ ଆମର ଯୋଗାଯୋଗକୁ ରୂପ ଦିଏ । ପ୍ରତ୍ୟେକଟି ଉପାଦାନର ଏକ ସ୍ୱାତନ୍ତ୍ର୍ୟ ରହିଛି । ଭାବ ବିଜ୍ଞାନ ଆଦାନପ୍ରଦାନରେ ଏ ଗୁଡ଼ିକର ଭୂମିକା ସମ୍ପର୍କରେ ଗବେଷଣା ମଧ୍ୟ କରାଯାଇଛି । ବିଶେଷ କରି ଖାଲି ଯାଗାର ବ୍ୟବହାର ଓ ଅନୁଭୂତି ମଣିଷ ମନରେ ବେଶ୍ କୌତୂହଳ ସୃଷ୍ଟି କରିଛି । କୌଣସି ଦେଶ ବା ଗୋଷ୍ଠୀର ଭୌଗୋଳିକ ଓ ରାଜନୈତିକ ସୀମାରେଖା ପରି ବ୍ୟକ୍ତି ଯେ ନିଜ ଚତୁଃପାର୍ଶ୍ୱରେ ଏକ ସୀମାରେଖା ନିଜ ମନରେ ଗଠନ କରେ ଏବଂ

ଏହାର ଅଖଣ୍ଡତା ବାଧାପ୍ରାପ୍ତ ହେଲେ ପ୍ରତିକ୍ରିୟା ଦର୍ଶାଏ, ଏହା ବହୁ ଭାବରେ ପ୍ରମାଣିତ ହୋଇ ସାରିଛି ।

ଏକ ଚତୁଃସୀମା ଗଠନର ମନୋଭାବ କେବଳ ମନୁଷ୍ୟ ମଧ୍ୟରେ ସୀମିତ ନୁହେଁ । ବହୁ ବର୍ଷ ପୂର୍ବରୁ ପ୍ରାଣୀ-ଆଚରଣ ବୈଜ୍ଞାନିକମାନେ ଜୀବମାନଙ୍କଠାରେ ଏପରି ବ୍ୟବହାରର ସନ୍ଧାନ ପାଇଛନ୍ତି । ସେମାନେ ଦର୍ଶାଇଛନ୍ତି ଯେ ଅଧିକାଂଶ ପ୍ରାଣୀ ନିଜର ଇନ୍ଦ୍ରିୟାନୁଭୂତ ଉପରେ ନିର୍ଭର କରି ଏକ ବ୍ୟକ୍ତିକୈନ୍ଦ୍ରିକ ପରିସର ଗଠନ କରନ୍ତି । ପ୍ରାଣୀର ଏପରି ନିଜସ୍ୱ ପରିବେଶ ଓ ବାହ୍ୟିକ ପରିବେଶ ମଧ୍ୟରେ ସୀମାରେଖା ଟାଣିବା କଷ୍ଟକର ହେଲେ ମଧ୍ୟ ପ୍ରାଣୀ ଯେ ଏକ ନିଜସ୍ୱ ପରିସର ଗଠନ କରେ ଏବଂ ଏହାର ନିର୍ଦ୍ଦିଷ୍ଟ ବିନିଯୋଗ କରେ,ସେଥିରେ ସନ୍ଦେହ ନାହିଁ । କେତେକ ପ୍ରାଣୀଙ୍କ କ୍ଷେତ୍ରରେ ଏହା ସୁସ୍ପଷ୍ଟ । ନୋବେଲ୍‌ ପୁରସ୍କାର ପ୍ରାପ୍ତ ବିଶିଷ୍ଟ ଆଚରଣ-ବିଜ୍ଞାନୀ ଟିନ୍‌ବର୍‌ଜେନ୍‌, ଷ୍ଟିକଲ୍‌ବ୍ୟାକ ମତ୍ସ୍ୟର ଏପରି ବ୍ୟବହାର ଅନୁଶୀଳନ କରିଛନ୍ତି । ଷ୍ଟିକ୍‌ଲବ୍ୟାକ ସ୍ୱଚ୍ଛପେୟ ଜଳାଶୟରେ ପରିଦୃଷ୍ଟ ଏକ କ୍ଷୁଦ୍ର ମାଛ । ଏହାର ପ୍ରଜନନ କ୍ରିୟା କେତୋଟି ସ୍ତର ବିଶିଷ୍ଟ । ପ୍ରଥମେ ପ୍ରଜନନକ୍ଷମ ହେଲେ ପୁରୁଷ ମତ୍ସ୍ୟ ତାର ଚତୁଃସୀମା ପ୍ରତିଷ୍ଠାକରେ । ଏହି ନିର୍ଦ୍ଦିଷ୍ଟ ଚତୁଃସୀମା ପ୍ରତିଷ୍ଠା ହେଲା ପରେ ଅନ୍ୟ କୌଣସି ପ୍ରଜନନକ୍ଷମ ପୁରୁଷ ମତ୍ସ୍ୟ ଏହା ମଧ୍ୟକୁ ପ୍ରବେଶ କଲେ ତାକୁ ଆକ୍ରମଣ କରେ ଓ ଲଢାଇ କରିବାରେ ଲାଗିଯାଏ । ଏହା ଖୁବ୍‌ ଅଳ୍ପ ସମୟ ମଧ୍ୟରେ ହୋଇଥାଏ । କିନ୍ତୁ ଏହି ସୀମା ମଧ୍ୟରେ କୌଣସି ସ୍ତ୍ରୀ ମତ୍ସ୍ୟ ପ୍ରବେଶ କଲେ ତାକୁ ସ୍ୱାଗତ କରେ । ଏପରିକି ଅନ୍ୟ ସ୍ତ୍ରୀ ମତ୍ସ୍ୟମାନଙ୍କୁ ପ୍ରଲୋଭନ ଦେଖାଇ ଏହା ମଧ୍ୟକୁ ଆଣିବାକୁ ଉଦ୍ୟମ କରେ । ସେହିପରି ବହୁ ପକ୍ଷୀମାନଙ୍କୁ ପୋଷା ମନାଇବା କ୍ଷେତ୍ରରେ ବାହ୍ୟ ପରିସର ଗଠନର ଭୂମିକା ଲକ୍ଷ୍ୟ କରାଯାଇଛି । ପୂର୍ଣ୍ଣପୂର୍ଣ୍ଣ ପୋଷା ମାନିବା ପୂର୍ବରୁ ପରିସର ମଧ୍ୟକୁ କେହି ପ୍ରବେଶ କଲେ ପକ୍ଷୀଟି ଯେପରି ଭୟାତୁର ପ୍ରତିକ୍ରିୟା ଦେଖାଏ ଏବଂ ଉଡ଼ିଯିବାକୁ ଚେଷ୍ଟାକରେ, ତାହା ସୀମା ପ୍ରତିଷ୍ଠା ମନୋଭାବର ସୂଚକ ।

ପ୍ରଖ୍ୟାତ ନରବିଜ୍ଞାନୀ ଏଡ଼ଓ୍ୱାର୍ଡ଼ ହଲ୍‌ ପ୍ରଥମେ ମଣିଷର ଭୌଗୋଳିକ ସୀମାପ୍ରତିଷ୍ଠା ମନୋଭାବ ସମ୍ପର୍କରେ ବିଧିବଦ୍ଧ ଗବେଷଣା ଆରମ୍ଭ କରିଛନ୍ତି । ହଲ୍‌ଙ୍କର ଏକ ବ୍ୟକ୍ତିଗତ ଅନୁଭୂତିରୁ ଏ ଆଗ୍ରହର ଆରମ୍ଭ । ବିଦେଶକୁ ବିଭିନ୍ନ ସେବାକାର୍ଯ୍ୟରେ ଆମେରିକାରୁ ଯାଉଥିବା ଲୋକମାନଙ୍କୁ ତାଲିମ ଦେବା କାର୍ଯ୍ୟରେ ହଲ୍‌ ଜଡ଼ିତ ଥିଲେ । ସେ ଦେଖିଲେ ଯେ ବିଦେଶରୁ ଫେରିବାପରେ ବହୁ ଅମେରିକାବାସୀ ସେମାନଙ୍କ ଅଭିଜ୍ଞତା ବର୍ଣ୍ଣନା କଲା ବେଳେ ଖାଲିଜାଗାର ବ୍ୟବହାର ନେଇ ସେମାନଙ୍କ ଅସୁବିଧା ବର୍ଣ୍ଣନା କରୁଛନ୍ତି । ଆମେରିକାର ଲୋକମାନେ ହଲ୍‌ଙ୍କୁ କହିଲେ ବାହାରର ଲୋକେ ଅତି ପାଖକୁ ଲାଗିଆସି କଥାବାର୍ତ୍ତା ଆରମ୍ଭ କରିଦିଅନ୍ତି । ଆମେରିକାରୁ ଯାଇଥିବା ଲୋକେ ଯେତେବେଳେ ସେମାନଙ୍କୁ ଭଲ ଲାଗିଲା ଭଳି ସ୍ଥାନକୁ ଦୂରେଇ ଯାଆନ୍ତି, ସେତେବେଳେ ଲୋକେ

ଆମେରିକାବାସୀଙ୍କୁ କମ୍ପୃହ, ଆଗ୍ରହ ଶୂନ୍ୟ ଓ ଅନୁଶକତା ହିନ ଲୋକ ବୋଲି ବିଚାର କରନ୍ତି । ପରେ ପରେ ହଲ୍‌ଙ୍କର ବିଜ୍ଞାନସମ୍ମତ ଗବେଷଣା ଓ ଅନ୍ୟମାନଙ୍କର ପର୍ଯ୍ୟବେକ୍ଷଣ ଦୁଇଟି ତଥ୍ୟର ସନ୍ଧାନ ଦେଲା ।

## ଗୋଷ୍ଠୀଗତ ପାର୍ଥକ୍ୟ

ସମାଜ ଓ ସଂସ୍କୃତି ଭେଦରେ ବ୍ୟକ୍ତିଗତ ସୀମାପ୍ରତିଷ୍ଠାରେ ଭିନ୍ନତା ରହିଛି । ବିଭିନ୍ନ ଗୋଷ୍ଠୀର ଲୋକ ଭିନ୍ନ ଭିନ୍ନ ଉପାୟରେ ବ୍ୟକ୍ତିଗତ ସୀମା ପ୍ରତିଷ୍ଠା କରନ୍ତି ଓ ତାର ଅକ୍ଷୁଣ୍ଣତା ରକ୍ଷା କରନ୍ତି । ପ୍ରତିବେଶୀମାନଙ୍କ ସହିତ ମିଳିମିଶି ଚଳୁଥିବା ଆମେରିକାବାସୀମାନେ ଯେତେବେଳେ ଲଣ୍ଡନ ଯାଇ ଦେଖିଲେ ଯେ ସେମାନଙ୍କୁ ଗେଟ୍‌ରୁ ଘରର ଦ୍ୱାର, ଘରର ଦ୍ୱାର ଡେଇଁ କୋଠରୀର ଦ୍ୱାର ଦେଇ ଲୋକଙ୍କୁ ଦେଖାକରିବାକୁ ହେଉଛି, ତାହା ସେମାନଙ୍କୁ ଭଲ ଲାଗିଲା ନାହିଁ । ଲାଟିନ୍ ଆମେରିକାରେ ସହରର ଉପକଣ୍ଠରେ ବାସ କରୁଥିବା ଲୋକେ ଘର ଚାରିପାଖରେ ଆଦୌ ପାଚେରି କରନ୍ତି ନାହିଁ । କୌଣସି ଘର ଚାରି ପାଖରେ ପାଚେରି ଦେଖିଲେ ସେ ଘରର ଲୋକେ ଅନ୍ୟମାନଙ୍କୁ ତଡ଼ିଦେଉଛନ୍ତି ବୋଲି ସେମାନଙ୍କୁ ଲାଗେ ।

ସେହିପରି ଲକ୍ଷ୍ୟ କରାଯାଇଛି ଯେ ଇଟାଲୀର ଲୋକମାନେ ଖୁବ୍ ପାଖାପାଖି ଠିଆହୋଇ କଥାବାର୍ତ୍ତା କରନ୍ତି । କଥାବାର୍ତ୍ତା କଲାବେଳେ ପାଖାପାଖି ଠିଆ ନ ହେଲେ ତାହା ବନ୍ଧୁତ୍ୱ ବିରୋଧୀ ବୋଲି ବିଚାର କରନ୍ତି । ଏପରିକି ଖୁସିଆଳାପ ଓ କଥାବାର୍ତ୍ତା କରିବା ସମୟରେ ପରସ୍ପରକୁ ସ୍ପର୍ଶ କରିବା ଏ ଯୋଗାଯୋଗର ଏକ ମୁଖ୍ୟ ଅଙ୍ଗ । ଅନ୍ୟ ପକ୍ଷରେ ଏପରି ସ୍ପର୍ଶମୁଖୀ ବ୍ୟକ୍ତିଗତ ସୀମାକୁ ଆମେରିକାର ଲୋକେ ଅଯଥା ହସ୍ତକ୍ଷେପ ବୋଲି ଭାବିପାରନ୍ତି । ମଧ୍ୟପ୍ରାଚ୍ୟ ଓ ଭାରତୀୟ ଉପମହାଦେଶର ଲୋକେ କଥାବାର୍ତ୍ତା କଲାବେଳେ ଖୁବ୍ କମ୍ ଭୌଗୋଳିକ ଦୂରତ୍ୱ ରକ୍ଷାକରନ୍ତି ।

ଏ ଦୃଷ୍ଟିରୁ ବିଚାରକଲେ "ଲୋକ ଗହଳି" ଅର୍ଥ ଯେ ସମାଜ ଭେଦରେ ବିଭିନ୍ନ, ଏହା ସତ୍ୟ । ଗୋଟିଏ ଦେଶର ଲୋକଙ୍କୁ ଯାହା "ଲୋକ ଗହଳି" ମନେହୁଏ, ଅନ୍ୟ ଦେଶର ଲୋକଙ୍କୁ ତାହା ଗହଳି ବୋଲି ମନେ ନ ହୋଇ ପାରେ । ଶିଳ୍ପାୟନ ଜୀବନର ବିକାଶ ସତ୍ତ୍ୱେ ଭାରତରେ ଯୌଥ ପରିବାରର ପ୍ରଚଳନ ଯେତେ ମାତ୍ରାରେ ରହିଛି, ସେହିପରି ପରିବେଶରେ ଜନ୍ମିତ ଓ ବର୍ଦ୍ଧିତ ବ୍ୟକ୍ତି ସାଧାରଣତଃ ନିଜ ଚତୁଃପାର୍ଶ୍ୱରେ କମ୍ ଯାଗା ଥିଲେ ମଧ୍ୟ ଅତିଷ୍ଠ ଅନୁଭବ କରିବ ନାହିଁ । କିନ୍ତୁ ଜଣେ ଆମେରିକାବାସୀ ତାର ଚତୁଃପାର୍ଶ୍ୱରେ ସୀମା ଖୁବ ସଙ୍କୁଚିତ ହେଲେ ସେ ଅତିଷ୍ଠ ବୋଧ କରିବ ଏବଂ ତାର ଚିନ୍ତା ଓ ଉଦ୍‌ବେଗ ବୃଦ୍ଧି ପାଇବ । ବ୍ୟକ୍ତିଗତ ସୀମାର ଅଧିକ ସଙ୍କୋଚନ ଫଳରେ ମାନସିକ ରୋଗ ବୃଦ୍ଧି ପାଇବାର ବହୁ ଉଦାହରଣ ରହିଛି ।

ଗୋଷ୍ଠୀଗତ ପାର୍ଥକ୍ୟ ବ୍ୟତୀତ ଅବସ୍ଥାଗତ ଭିନ୍ନତା ମଧ୍ୟ ଲକ୍ଷ୍ୟ କରାଯାଇଛି । ଗୋଟିଏ ନିର୍ଦ୍ଦିଷ୍ଟ ବ୍ୟକ୍ତି ଭିନ୍ନ ଭିନ୍ନ ଅବସ୍ଥାରେ ପୃଥକ୍ ପୃଥକ୍ ସୀମା ସ୍ଥାପନ କରିଥାଏ ।

ଜଣେ ବ୍ୟକ୍ତି ସାକ୍ଷାତକାର ବେଳେ ଯେଉଁ ସୀମା ପସନ୍ଦ କରେ, ତାର ନିଜର ଅନ୍ତରଙ୍ଗ ବନ୍ଧୁ ସହିତ କଥାବାର୍ତ୍ତା ବେଳର ସୀମା ପ୍ରତିଷ୍ଠା ଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

**ଅବସ୍ଥାଗତ ପାର୍ଥକ୍ୟ**

ପରିସ୍ଥିତି ଉପରେ ନିର୍ଭର କରି ମଣିଷ ଅନ୍ୟ ସହିତ କମ ବା ବେଶୀ ଦୂରତ୍ୱ ରକ୍ଷା କରୁଥିଲେ ହେଁ କେତୋଟି ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଇଛି । ମଣିଷର ଦୂରତ୍ୱ—ରକ୍ଷାକୁ ଚାରି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ ।

ପ୍ରଥମଟି ହେଉଛି ଅନ୍ତରଙ୍ଗ ଦୂରତ୍ୱ । ସାଧାରଣତଃ ନିଜର ଅତି ପ୍ରିୟ ବ୍ୟକ୍ତି ସହିତ କଥାବାର୍ତ୍ତା କଲାବେଳେ ଯେଉଁ ସାମାନ୍ୟତମ ଦୂରତ୍ୱ ରକ୍ଷା କରାଯାଏ, ତାହାକୁ ଅନ୍ତରଙ୍ଗ ଦୂରତ୍ୱ କୁହାଯାଇପାରେ । ଏ ଦୂରତ୍ୱ ଏତେ କମ୍ ଯେ ସାଧାରଣତଃ ଗୋଟିଏ ବ୍ୟକ୍ତିର ମୁଣ୍ଡ, ଗଣ୍ଡି ଓ ଜଙ୍ଘ ଅନ୍ୟ ବ୍ୟକ୍ତିର ସଂସ୍ପର୍ଶକୁ ସହଜରେ ଅଣାଯାଇ-ପାରେ । ହାତ ଦୁଇଟି ଅନ୍ୟର ହାତ ଦୁଇଟିକୁ ସହଜରେ ଛୁଇଁପାରେ ଏବଂ ବ୍ୟକ୍ତିର କହୁଣିଟି ଅନ୍ୟ ବ୍ୟକ୍ତିକୁ ସ୍ପର୍ଶ ମଧ୍ୟ କରିପାରେ । ପ୍ରିୟ ବ୍ୟକ୍ତି ଓ ଅନ୍ତରଙ୍ଗପୂର୍ଣ୍ଣ କଥା-ବାର୍ତ୍ତାବେଳେ ଅତି ଅଳ୍ପ ଦୂରତ୍ୱ ରକ୍ଷା କରାଯାଇ ଯୋଗାଯୋଗ କରାଯାଇଥାଏ ।

ଦ୍ୱିତୀୟ ପ୍ରକାର ଦୂରତ୍ୱ ହେଉଛି ବ୍ୟକ୍ତିଗତ ଦୂରତ୍ୱ । ଅନ୍ତରଙ୍ଗ ଦୂରତ୍ୱ ଭଳି ଏହା ଏତେ କମ୍ ଦୂରତ୍ୱ ନୁହେଁ । ଜଣେ ଜଣାଶୁଣା ଲୋକ ସହିତ କଥାବାର୍ତ୍ତା କଲା-ବେଳେ ବ୍ୟକ୍ତିଗତ ଦୂରତ୍ୱ ରକ୍ଷା କରାଯାଏ । ଏ ଦୂରତ୍ୱ ସାଧାରଣତଃ ସ୍ପର୍ଶ କରିବାର ସୀମାରୁ ଠିକ୍ ବାହାରେ । ତେବେ ପରିଚୟର ମାତ୍ରା କମ୍ ହୋଇଥିଲେ ଏ ଦୂରତ୍ୱ ସାମାନ୍ୟ ବୃଦ୍ଧି ପାଏ । ପୂର୍ବପୂରି ଅପରିଚିତ ଲୋକ ସହିତ କଥାବାର୍ତ୍ତା କଲାବେଳେ ବ୍ୟକ୍ତିଗତ ଦୂରତ୍ୱ ଅଧିକ ହୁଏ । ରାସ୍ତାରେ ଚାଲିଯାଉଥିବାବେଳେ କୌଣସି ଅପରିଚିତ ଲୋକ ରାସ୍ତା ପଚାରିଲେ କିମ୍ବା କାହାର ଘରର ଠିକଣା ପଚାରିଲାବେଳେ ଆମେ ଯେଉଁ ଦୂରତ୍ୱ ରକ୍ଷା କରୁ, ତାହା ବ୍ୟକ୍ତିଗତ ଦୂରତ୍ୱ ।

ଶୂନ୍ୟ ଜାଗାରେ ତୃତୀୟ ପ୍ରକାର ବ୍ୟବହାରଟି ହେଉଛି ସାମାଜିକ ପରାମର୍ଶ-ମୂଖୀ ଦୂରତ୍ୱ । ନିଜେ ସାକ୍ଷାତକାର ନେଉଥିବା ବା ଦେଉଥିବା ସମୟରେ ଏ ପ୍ରକାର ଦୂରତ୍ୱ ରକ୍ଷା କରାଯାଏ । ସେହିପରି ଅନ୍ୟମାନଙ୍କୁ ଆନୁଷ୍ଠାନିକ ପରାମର୍ଶ ଦେଲା ବେଳେ ଏ ପ୍ରକାର ଦୂରତ୍ୱ ରକ୍ଷା କରାଯାଏ । ଶିକ୍ଷକ ଛାତ୍ରମାନଙ୍କୁ, ଡାକ୍ତର ରୋଗୀକୁ, ଶିଳ୍ପାନୁଷ୍ଠାନର ପଦାଧିକାରୀ ଶ୍ରମିକମାନଙ୍କୁ କିଛି ବୁଝାଇବା ବେଳେ ମଝିରେ କିଛି ପରିମାଣରେ ଶୂନ୍ୟସ୍ଥାନ ରହେ । ଏ ଶୂନ୍ୟସ୍ଥାନର ପରିମାଣ ଏତିକି ଯେ ଜଣେ ଚେଷ୍ଟାକଲେ ଅନ୍ୟକୁ ଛୁଇଁ ପାରିବ, କିନ୍ତୁ କଥାବାର୍ତ୍ତା କରୁଥିବା ସମୟରେ ସ୍ପର୍ଶକ୍ଷମ ଦୂରତାରୁ ଟିକେ ବେଶି । ବିଭିନ୍ନ ଆନୁଷ୍ଠାନିକ ଆଲୋଚନା କ୍ଷେତ୍ରରେ ଶୂନ୍ୟ ଯାଗାର ଏପରି ବ୍ୟବହାର କରାଯାଇଥାଏ ।

ଚତୁର୍ଥ ପ୍ରକାର ଦୂରତ୍ୱଟିକୁ ଜନସାଧାରଣମୁଖୀ ଦୂରତ୍ୱ କୁହାଯାଇପାରେ । ବହୁ ଲୋକ ଏକତ୍ର ଠିଆ ହୋଇ ବା ବସିରହି ଅନ୍ୟକୌଣସି ବ୍ୟକ୍ତିର ଭାଷଣ ଶୁଣୁଥିବାବେଳେ ପରସ୍ପର ମଧ୍ୟରେ କିଛି ଦୂରତ୍ୱ ରକ୍ଷାକରାଯାଏ । ମୁଣ୍ଡ, ହାତ ବା ଶରୀରର ଅନ୍ୟ ଅଙ୍ଗ-ପ୍ରତ୍ୟଙ୍ଗ ଆକସ୍ମିକଭାବେ ଯେପରି ଅନ୍ୟର ଶରୀରରେ ନ ବାଜେ, ସେଥିପ୍ରତି ଲକ୍ଷ୍ୟ ରଖାଯାଏ । ଏ କ୍ଷେତ୍ରରେ ଅବଶ୍ୟ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଭିନ୍ନତାର ପରିମାଣ ବେଶି । କେତେକ ଲୋକ ସର୍ବସାଧାରଣ ସ୍ଥାନରେ ଖୁବ୍ ବେଶୀ ଜାଗା ଦରକାର କରିବା ସ୍ଥଳେ ଅନ୍ୟ କେତେକ ଲୋକେ କେବଳ ଅନ୍ୟ ଶରୀରରେ ଯେପରି ନ ଲାଗନ୍ତି, ସେତିକି ପରିମାଣରେ ଶୂନ୍ୟସ୍ଥାନ ଦରକାର କରନ୍ତି ।

ସ୍ଥୂଳତଃ ପରିସ୍ଥିତି ଭେଦରେ ମଣିଷ କମ୍ ବା ବେଶି ଶୂନ୍ୟସ୍ଥାନ ଉପଯୋଗ କରି ନିଜର ଚତୁଃପାର୍ଶ୍ୱରେ ଏକ ବ୍ୟକ୍ତିସୀମା ପ୍ରତିଷ୍ଠା କରେ । କେତେକ ସ୍ଥଳରେ ବ୍ୟକ୍ତି ଏପରି ସୀମା ପ୍ରତିଷ୍ଠା କରେ, ଯାହା ଅନ୍ୟ ସହିତ ଭାବ ଆଦାନ ପ୍ରଦାନର ଅନୁକୂଳ । ଅନ୍ୟ କେତେକ କ୍ଷେତ୍ରରେ ବ୍ୟକ୍ତିର ସୀମା ପ୍ରତିଷ୍ଠା ତାର ଏକାକୀତ୍ୱକୁ ସାହାଯ୍ୟ କରେ । ଗୋଟିଏ ସମାଜ ବା ଗୋଷ୍ଠୀରେ ଯୋଗାଯୋଗର ଅନୁକୂଳ ବୋଲି ବିଚାର କରାଯାଉ-ଥିବା ଶୂନ୍ୟସ୍ଥାନ ଅନ୍ୟ ସମାଜରେ ନିର୍ଜ୍ଜନତାମୁଖୀ ବୋଲି ବିବେଚିତ ହୋଇପାରେ । ସେହିପରି ଗୋଟିଏ ବ୍ୟକ୍ତି ପକ୍ଷରେ ସାମାଜିକ ମିଳନମୁଖୀ ଜାଗା ଅନ୍ୟ ବ୍ୟକ୍ତି ଦୃଷ୍ଟିରେ ଏକାକୀତ୍ୱର ସୂଚକ ହୋଇପାରେ । କିନ୍ତୁ ପ୍ରତି ମନୁଷ୍ୟ ଓ ପ୍ରତିଗୋଷ୍ଠୀ ଯେ ବାହ୍ୟ ସ୍ଥାନକୁ ଏକ ସ୍ୱତନ୍ତ୍ରଭାବରେ ବିନିଯୋଗ କରନ୍ତି, ଏହା ବହୁଭାବରେ ପ୍ରମାଣିତ ହୋଇସାରିଛି ।

## ନୂତନତ୍ୱ ସନ୍ଧାନରେ ମଣିଷର ମନ

ନୂତନତା ପ୍ରାପ୍ତି ପାଇଁ ମଣିଷର ମନ ସବୁବେଳେ ବ୍ୟାକୁଳ । ନୂଆ ଅନୁଭୂତି, ନୂଆ ଅଭିଜ୍ଞତା ମଣିଷ ମନରେ ମାଦକତା ସୃଷ୍ଟି କରେ । ଗତାନୁଗତିକ, ଚିର ପରିଚିତ ଓ ଅପରିବର୍ତ୍ତିତ ପରିବେଶରୁ ନିଜକୁ ମୁକ୍ତ କରିବାକୁ ମନ ଉଦ୍ୟମ କରେ । ଅବଶ୍ୟ ଭବିଷ୍ୟତରେ ମଙ୍ଗଳ ଓ ସାମାଜିକ ଜୀବନର ଶୃଙ୍ଖଳାକୁ ଧ୍ୟାନ ଦେବାକୁ କେବଳ ମନୁଷ୍ୟର ମନ କେତେକ ବନ୍ଧନକୁ ମାନିନିଏ । ତେବେ ନୂତନତ୍ୱର ସନ୍ଧାନ ମଣିଷ ମନ ଏକ ସହଜ ସ୍ୱାଭାବିକ ଭଙ୍ଗୀ । ମଣିଷର ଅନୁଭୂତି ରାଜ୍ୟକୁ ନୂତନତାକୁ

ବାଦ ଦେଲେ ଫଳାଫଳ କ'ଣ ହେବ, ତାହା ଏକ ମନସ୍ତାତ୍ତ୍ୱିକ ପ୍ରଶ୍ନ । ବିଶେଷ କରି କୃତ୍ରିମ ଉପାୟରେ ମନୁଷ୍ୟକୁ ଏକ ଏକସ୍ୱରା ପରିବର୍ତ୍ତନ ରହିତ ପରିବେଶରେ ରଖିଲେ ଫଳ କଣ ହେବ ସେ ସମ୍ପର୍କରେ ଯଥେଷ୍ଟ ଗବେଷଣା କରାଯାଇଛି । ଏ ସମସ୍ତ ଗବେଷଣାର ଫଳାଫଳ ଯଥେଷ୍ଟ କୌତୂହଳପ୍ରଦ ।

ଫଳାଫଳଗୁଡ଼ିକ ଆଲୋଚନା ପୂର୍ବରୁ ମଣିଷର ମନ ଯେ ଅପରିବର୍ତ୍ତନୀୟ ପରିବେଶରୁ ନିଜକୁ ମୁକ୍ତ କରିବାକୁ ଚାହେଁ, ସେ ବିଷୟରେ ସାମାନ୍ୟ ସୂଚନା ଦିଆଯାଇପାରେ । ବିଶେଷତଃ ମନୁଷ୍ୟର ବିଭିନ୍ନ ଇନ୍ଦ୍ରିୟାନୁଭୂତ ଅଭିଜ୍ଞତା କ୍ଷେତ୍ରରେ ଏହା ମଧ୍ୟ ପ୍ରଯୁଜ୍ୟ । ଗୋଟିଏ ପରୀକ୍ଷାଗାରରେ ଗୋଟିଏ ଗୋଲାକୃତି ମଡ଼େଲ ତିଆରି କରାଗଲା । ମଡ଼େଲଟି ଏପରି ନିର୍ମିତ ହୋଇଥିଲା ଯେ ମଡ଼େଲଟିର ଭିତର ଜାଗା ଶୂନ୍ୟସ୍ଥାନ ଓ ଗୋଲାକୃତି । ମଡ଼େଲଟିର ଭିତରକୁ ଚାହିଁବା ପାଇଁ କେବଳ ଦୁଇଟି କ୍ଷୁଦ୍ର ଛିଦ୍ର । ସେହି ଛିଦ୍ର ଦୁଇଟିରେ ଆଖି ଦୁଇଟିକୁ ରଖି ମଡ଼େଲର ଭିତର ଅଂଶକୁ ପ୍ରତ୍ୟକ୍ଷ କରାଯାଇପାରେ । ମଡ଼େଲର ଭିତର ଅଂଶକୁ ଏକ ନିର୍ଦ୍ଦିଷ୍ଟ ରଙ୍ଗର ଉଜ୍ଜ୍ୱଳ ଆଲୋକରେ ଆଲୋକିତ କରାଯାଇ ଲୋକଙ୍କୁ ମଡ଼େଲଟିର ଭିତର ଅଂଶକୁ ଚାହିଁବାକୁ କୁହାଗଲା । ମଡ଼େଲଟି ଉପରକୁ ଆଖି ନ ହଟାଇ ଦୀର୍ଘ ସମୟ ଧରି ଏକ ଲୟରେ ଭିତର ଅଂଶକୁ ଚାହିଁ ରହିବାକୁ ନିର୍ଦ୍ଦେଶ ଦିଆଗଲା । ମଝିରେ ମଝିରେ ସେମାନେ ଭିତର ପଟରେ କି ରଙ୍ଗର ଆଲୋକ ଦେଖୁଛନ୍ତି, ତାହା ପଚରାଗଲା । ଆଶ୍ଚର୍ଯ୍ୟର କଥା ଯେ ମଡ଼େଲ ଭିତରେ କେବଳ ମାତ୍ର ଗୋଟିଏ ରଙ୍ଗର ଆଲୋକ ବିଚ୍ଛୁରିତ ହୋଇଥିଲେ ହେଁ, ଦେଖୁଥିବା ବ୍ୟକ୍ତି ଜଣକ 'ବିଭିନ୍ନ ରଙ୍ଗର ଆଲୋକ ଦେଖୁଛି' ବୋଲି ଜଣାଉଥିଲା । ଏହିପରି ପରୀକ୍ଷାରୁ ପ୍ରମାଣ ମିଳିଲା ଯେ ମନୁଷ୍ୟର ଇନ୍ଦ୍ରିୟ ମଧ୍ୟ ଅନୁଭୂତିର ପରିବର୍ତ୍ତନ ଚାହେଁ । ଯଦି କୃତ୍ରିମ ଉପାୟରେ ପରିବର୍ତ୍ତନକୁ ବାଦ୍ ଦିଆଯାଏ, ତେବେ ମଣିଷର ମନ ନିଜ କୌଶଳରେ ବିଚଳତା ସୃଷ୍ଟି କରି ଅନୁଭୂତିର ପରିବର୍ତ୍ତନ ଆଣିଥାଏ ।

ସେହିପରି ଆଉ ଗୋଟିଏ ଉଦାହରଣ ଦିଆ ଯାଇପାରେ । ଏ ଉଦାହରଣଟିରେ ମଧ୍ୟ ଦର୍ଶନେନ୍ଦ୍ରିୟର କାର୍ଯ୍ୟକଳାପ ସୂଚିତ । କେତେକ ହୁଏତ ଜାଣିଥିବେ ଯେ ଆଜିକାଲି ଚଷମା ପରିବର୍ତ୍ତେ ସ୍ପର୍ଶ ଯବକାଚ (Contact Lens)ର ବ୍ୟବହାର ହେଲାଣି । ଏହା ଚଷମାର କାମ ଦିଏ, କିନ୍ତୁ ଏ ଦୁଇଟି ଆଖି ଉପରେ ଚାପି ହୋଇ ଲାଗି ରହେ । ତାହାକୁ ଦେଖିଲେ ଜଣେ ବ୍ୟକ୍ତି ସ୍ପର୍ଶ ଯବକାଚ ବ୍ୟବହାର କରିଛି ବୋଲି ଜାଣିବା କଷ୍ଟକର । ଜଣେ ଗବେଷକ ଖୁବ୍ ସୂକ୍ଷ୍ମ ଉପାୟରେ ଗୋଟିଏ ଯବକାଚର ଏକ ପାର୍ଶ୍ୱରେ ଗୋଟିଏ ସୂକ୍ଷ୍ମାତିସୂକ୍ଷ୍ମ ଭୂମ୍ବଟିଏ ତାହାର ପଟକୁ ରଖି ଏହି ଭୂମ୍ବ ଉପରେ ଗୋଟିଏ କ୍ଷୁଦ୍ର ଛବିଟିଏ ରଖିଦେଲେ । ଯବକାଚ ଉପରେ ଭୂମ୍ବ ଓ ଛବିଟି ଏପରି କୌଶଳରେ ରଖା-ଯାଇଥିଲା ଯେ,ଯେପରି ଭାବରେ ଛବିଟି ଚକ୍ଷୁର(retina)ର ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ରତିଫଳିତ ହେବ । ଆମେ ଜାଣୁ ଯେ ପ୍ରତି ମୁହୂର୍ତ୍ତରେ ଆମର ଚକ୍ଷୁ ବିଭିନ୍ନ ଦିଗରେ ଗତି କରୁଛି ।

ମାଣ୍ଡ ପରଦାଟିଏ ଏବଂ ତା ସହିତ ସଲଗ୍ନ ଲୁଷ୍ଟିଟି ଚକ୍ଷୁ ସହିତ ସମ୍ପୂର୍ଣ୍ଣ ଭାବରେ ଜଡିତ ଥିବାରୁ ଚକ୍ଷୁର ଗତି ସହିତ ଉପରେ ଥିବା ଛବିଟି ମଧ୍ୟ ଅନୁରୂପ ଗତି କରିବ । ଫଳରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଛବିଟି ପ୍ରତିଫଳିତ ହେବା ସମ୍ଭବପର । ଯାହାହେଉ, ଏପରି ଆୟୋଜନ କରାଯାଇ ସମ୍ପୃକ୍ତ ବ୍ୟକ୍ତି ଜଣକୁ ପଚରାଗଲା ଯେ, ସେ କି ଛବି ଦେଖୁଛନ୍ତି ? ଆଶ୍ଚର୍ଯ୍ୟର କଥା ଯେ ଛବିଟି ଅପରିବର୍ତ୍ତିତ ଥିଲେ ମଧ୍ୟ ବ୍ୟକ୍ତିଜଣକ ସମୟାନୁକ୍ରମେ ଭିନ୍ନ ଭିନ୍ନ ଛବି ଦେଖୁଛନ୍ତି ବୋଲି ଜଣାଇଲେ । ଦୃଷ୍ଟାନ୍ତ ସ୍ୱରୂପ ମଣିଷ ମୁହଁର ଗୋଟିଏ ଛବି ରଖାଯାଇ ଦେଖାଗଲା ଯେ ବ୍ୟକ୍ତି ଜଣଙ୍କ ପ୍ରଥମେ ଯେ ଗୋଟିଏ ମୁହଁର ଛବି ଦେଖୁଛନ୍ତି ବୋଲି ଜଣାଇଲେ । କିନ୍ତୁ କିଛି ସମୟ ପରେ ସେ ଜଣାଇଲେ ଯେ ଛବିରେ କାନ ନ ଥିବା ମୁହଁଟିଏ ଦେଖୁଛନ୍ତି । ପରେ କାନ ଦୁଇଟି ଅଦୃଶ୍ୟ ହୋଇଗଲା ଏବଂ ପରେ ପରେ ଧୀରେ ଧୀରେ ମୁହଁର ଅନ୍ୟ ଅଂଶ ସବୁ ଅଦୃଶ୍ୟ ହୋଇଗଲା । କିଛି ସମୟ ପରେ ଲୋକଟି ଜଣାଇଲେ ଯେ ସେ କୌଣସି ଛବି ଦେଖିପାରୁ ନାହାନ୍ତି । ପୁଣି ଧୀରେ ଧୀରେ ଛବିର ବିଭିନ୍ନ ଅଂଶ ଦୃଶ୍ୟ ହେବାକୁ ଲାଗିଲା ଏବଂ ପରେ ପୂରା ମୁହଁଟିର ଛବି ଦେଖାଗଲା ।

ଉପରୋକ୍ତ ପରୀକ୍ଷାରେ ଲକ୍ଷ୍ୟ କରିବାର କଥା ଯେ ବାସ୍ତବ କ୍ଷେତ୍ରରେ ମୁହଁର ଛବିଟି ସେପରି ଅତୁଟ ଥିଲା,କିନ୍ତୁ ଅନୁଭୂତିର ପରିବର୍ତ୍ତନ ଘଟୁଥିଲା । ମଣିଷର ଦର୍ଶନେନ୍ଦ୍ରିୟ ଏବଂ ମସ୍ତିଷ୍କର କାର୍ଯ୍ୟକଳାପ ଏପରି ନିୟନ୍ତ୍ରିତ ଯେ ତାହା କିଛି ପରିମାଣରେ ବୈଷମ୍ୟ ଚାହେଁ । ଜୋର୍ ଜବରଦସ୍ତ ଏକ ପ୍ରକାର ପରିବେଶ ବାନ୍ଧି ରଖିଲେ ମସ୍ତିଷ୍କ ନିଜ କୌଶଳରେ ବିଭିନ୍ନତା ସୃଷ୍ଟି କରି ନୂତନତାର ସ୍ୱାଦ ଅନୁଭବ କରେ । ଏ ବୈଶିଷ୍ଟ୍ୟ ପ୍ରତି ମନୁଷ୍ୟ କ୍ଷେତ୍ରରେ ଏବଂ ଇନ୍ଦ୍ରିୟ ସମ୍ପର୍କରେ ପରିଦୃଷ୍ଟ ହୁଏ ।

କେବଳ ଦର୍ଶନେନ୍ଦ୍ରିୟ ନୁହେଁ, ଅନ୍ୟାନ୍ୟ ଇନ୍ଦ୍ରିୟାନୁଭୂତି କ୍ଷେତ୍ରରେ ମଧ୍ୟ ଏହା ଲକ୍ଷ୍ୟ କରାଯାଇଛି । ନବଜନ୍ମିତ ଶିମ୍ପାଞ୍ଜି ଛୁଆମାନଙ୍କର ଜନ୍ମ ପରେ ପରେ ସେମାନଙ୍କର ହାତ ଦୁଇଟିକୁ ସ୍ପର୍ଶ ଅନୁଭୂତି ରହିତ କରାଗଲା । ଉକ୍ତ ପର୍ଯ୍ୟବେକ୍ଷଣ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରତି ହାତକୁ ଗୋଟିଏ ଗୋଟିଏ କାର୍ଡବୋର୍ଡ ନଳୀ ଭିତରେ ପୂରାଇ ଦିଆଗଲା । ଫଳରେ ହାତ ଦୁଇଟିକୁ ଶରୀରର ଅନ୍ୟ ଅଂଶ ସ୍ପର୍ଶ କରିପାରିବ ନାହିଁ । ସେହିପରି ହାତ ଦୁଇଟି ଦ୍ୱାରା ଅନ୍ୟ କୌଣସି ଜିନିଷକୁ ସ୍ପର୍ଶ କଲେ ସ୍ପର୍ଶେନ୍ଦ୍ରିୟର ଅନୁଭୂତି ମିଳିବ-ନାହିଁ । ଶିମ୍ପାଞ୍ଜିଟିକୁ ଗୋଟିଏ ଚେୟାର ଉପରେ ବସାଇ ଦିଆ ଯାଇଥାଏ ଓ ତା ସମ୍ମୁଖରେ ଗୋଟିଏ ଟେବୁଲ ଉପରେ କ୍ଷୀର ବୋତଲଟି ଥାଏ । କ୍ଷୀର ବୋତଲଟି ଏପରି ରଖାଯାଇଥାଏ ଯେ ଶିମ୍ପାଞ୍ଜିଟି ଖାଇବା ସମୟରେ ନିଜର ମୁହଁକୁ ବୋତଲ ପାଖକୁ ନେଇ କ୍ଷୀର ଖାଇପାରିବ । କାର୍ଡବୋର୍ଡ ଘେରା ହାତ ଦୁଇଟି ଟେବୁଲ ତଳେ ଥାଏ । ତେଣୁ କାର୍ଡବୋର୍ଡ ଘେରା ହାତ ଦୁଇଟିକୁ ଦେଖିବାର ସୁଯୋଗରୁ ମଧ୍ୟ ଶିମ୍ପାଞ୍ଜିଟି ବଞ୍ଚିତ ।

ଏହିପରି ଖାଞ୍ଚାରେ ପନ୍ଦରଦିନ ରଖିବା ପରେ ବଣମଣିଷଟିକୁ ମୁକ୍ତ ଦିଆଗଲା । ତାର ହାତ ଦୁଇଟିରୁ କାର୍ଡବୋର୍ଡ ନଳୀ କାଢ଼ି ନିଆଗଲା । ଦେଖାଗଲା ଯେ ହାତକୁ ନେଇ ବଣମଣିଷର ବିଚିତ୍ର ବ୍ୟବହାର ଦେଖାଯାଉଛି । ବଣମଣିଷର କିଛି ଦୂରରେ କ୍ଷୀର ବୋତଲଟି ରଖିଲେ ସେ ବୋତଲ ଦିଗରେ ଆଗେଇଯାଉଛି । ମାତ୍ର ହାତ ଦୁଇଟି ନିଜ ନଜରକୁ ଆସିଯିବା ମାତ୍ରେ ସେ ଅଟକି ଯାଇ ହାତ ଦୁଇଟିକୁ ଅପଲକ ନୟନରେ ଚାହିଁ ରହୁଛି ଏବଂ ହାତ ଦୁଇଟିକୁ ଚାଟିବାକୁ ଆରମ୍ଭ କରୁଛି । ବହୁତ ସମୟ ଧରି ହାତ ଦୁଇଟିକୁ ଚାହିଁରହୁଛି । ସେହିପରି ବିଭିନ୍ନ କାମ ମଝିରେ ମଝିରେ ସେ କାମ ବନ୍ଦକରି ନିଜ ହାତ-ଦେଖା କାମରେ ଲାଗିଯାଉଛି । ଧୀରେ ଧୀରେ ଏହି ହାତଦେଖା ବ୍ୟବହାର କମିବାକୁ ଲାଗିଲା । ହାତକୁ ଦେଖିବା ଏବଂ ହାତର ସ୍ପର୍ଶ ଅନୁଭବ କରିବାର କିଛିଦିନ ଗଲା ପରେ ତାର ଅସ୍ୱାଭାବିକ ବ୍ୟବହାର ଦୂରହେଲା । ମୋଟ ଉପରେ ଇନ୍ଦ୍ରିୟାନୁଭୂତିକୁ ବାଦ୍ ଦେଲେ ଯେ କେତେଗୁଡ଼ିଏ ବ୍ୟବହାର ବିପର୍ଯ୍ୟସ୍ତ ହୋଇପଡ଼େ, ଏ ପର୍ଯ୍ୟବେକ୍ଷଣଟି ତାର ସୁନ୍ଦର ପ୍ରମାଣ ।

ଏକାଧିକ ଇନ୍ଦ୍ରିୟର ଅନୁଭୂତିକୁ ସୀମିତ କଲେ କି ପ୍ରକାର ମନସ୍ତାତ୍ତ୍ୱିକ ପ୍ରଭାବ ସୃଷ୍ଟି ହୁଏ, ତାର ମଧ୍ୟ ଗବେଷଣା କରାଯାଇଛି । ପ୍ରଖ୍ୟାତ ମନୋବିଜ୍ଞାନୀ ଜୁବେକ୍ ଏ ଦିଗରେ ଜଣେ ବିଧିବଦ୍ଧ ଗବେଷକ । ମଣିଷର ଅନୁଭୂତିର ପରିସରରୁ ଦର୍ଶନ ଶ୍ରବଣ ଇତ୍ୟାଦି ଏକାଧିକ ଇନ୍ଦ୍ରିୟର ଅନୁଭୂତି ବାଦ୍ ଦେଲେ କି ଫଳାଫଳ ମିଳୁଛି, ତାକୁ ଜାଣିବା ପାଇଁ ସେ ଗୋଟିଏ ଅଭିନବ କୌଶଳ ପ୍ରୟୋଗ କଲେ । ସେ ତାଙ୍କର ଗବେଷଣାଗାରର ଗୋଟିଏ ପ୍ରକୋଷ୍ଠକୁ ଜଳପୂର୍ଣ୍ଣ କରି ଏକ ଜଳାଶୟ ନିର୍ମାଣ କଲେ । ଏହି ଜଳାଶୟଟି ବେଶ୍ ଗଭୀର । ଏହି ଜଳାଶୟ ମଧ୍ୟକୁ ବଡ଼ ବଡ଼ ସିଲିଣ୍ଡର ସାହାଯ୍ୟରେ ଲୋକମାନଙ୍କୁ ଖସାଇ ଦେବାର ବ୍ୟବସ୍ଥା ଥିଲା । ଏହି ପରୀକ୍ଷାରେ ଅଂଶ ଗ୍ରହଣ କରୁଥିବା ଲୋକମାନଙ୍କୁ ପ୍ରଥମରୁ ଜଣାଇ ଦିଆଯାଏ ଯେ ପ୍ରତ୍ୟେକଙ୍କୁ ଏକ ସିଲିଣ୍ଡର ମଧ୍ୟରେ ସମୟ କାଟିବାକୁ ପଡ଼ିବ । ସିଲିଣ୍ଡର ମଧ୍ୟରେ ନିଃଶ୍ୱାସ ପ୍ରଶ୍ୱାସରେ କୌଣସି ଅସୁବିଧା ହେବନାହିଁ । ଏଥିରେ ଯଥେଷ୍ଟ ସାମାନ୍ୟ ଖାଦ୍ୟ ମଧ୍ୟ ଦିଆଯିବ । କିନ୍ତୁ ବାହ୍ୟ ଜଗତରୁ ସମ୍ପର୍କ ବିଚ୍ଛିନ୍ନ କରାଯାଇ ସେମାନଙ୍କୁ ସିଲିଣ୍ଡର ମଧ୍ୟରେ ଏକାକୀ ରହିବାକୁ ପଡ଼ିବ । ଅଜଣା ବ୍ୟକ୍ତିଜଣକ ଯେତେବେଳେ ଅତିଷ୍ଠ ଅନୁଭବ କରିବେ ବା ଯନ୍ତ୍ରଣାଦାୟକ ବୋଧ କରିବେ, ସେତେବେଳେ ସିଲିଣ୍ଡର ଭିତରେ ଥିବା ଗୋଟିଏ ସୁଇଚ ଚିପି ଗବେଷକଙ୍କୁ ସଙ୍କେତ ଦେଇପାରନ୍ତି । ଏପରି ସଙ୍କେତ ଦେଲେ ଗବେଷକ ବ୍ୟକ୍ତିଜଣଙ୍କୁ ସିଲିଣ୍ଡର ମଧ୍ୟରୁ ବାହାରକୁ ନେଇଆସିବେ ।

ଏହିପରି କୋଡ଼ିଏ ପ୍ରତିବ୍ୟକ୍ତିଙ୍କୁ ଗୋଟିଏ ଗୋଟିଏ ସିଲିଣ୍ଡର ମଧ୍ୟରେ ପୂରାଇ ଜଳାଶୟ ମଧ୍ୟକୁ ଖସାଇ ଦିଆଯାଏ । କହିବା ଅନାବଶ୍ୟକ ଯେ ଜଳାଶୟ ମଧ୍ୟରେ

ସିଲିଣ୍ଡର ଭିତରେ ଥିବା ବ୍ୟକ୍ତି ଜଣଙ୍କର ଇନ୍ଦ୍ରିୟାନୁଭୂତି ଖୁବ୍ ସୀମିତ । ଆଲୋକ ପ୍ରାପ୍ତ ନ ଥିବାରୁ ଦର୍ଶନେନ୍ଦ୍ରିୟର କାର୍ଯ୍ୟ ପ୍ରାପ୍ତ ନାହିଁ । ଅନ୍ୟର କଥା ବା ଶବ୍ଦ ଶୁଣିବାର ସୁଯୋଗ ନାହିଁ । ସ୍ପର୍ଶାନୁଭୂତି ମଧ୍ୟ ଖୁବ୍ କମ୍ । କାରଣ ସିଲିଣ୍ଡର ଓ ଅଳ୍ପକେତୁ ଖାଦ୍ୟ ପଦାର୍ଥ ବ୍ୟତୀତ ଛୁଇଁବା ପାଇଁ ଅନ୍ୟ ବସ୍ତୁ ଓ ବ୍ୟକ୍ତିର ଅଭାବ । ଏଇଭଳି ପରିବେଶରେ ଜଣେ ବ୍ୟକ୍ତି ବା କେତେ ସମୟ ରହିପାରେ ? ପରିସ୍ଥିତି ଯନ୍ତ୍ରଣାଦାୟକ ବୋଧ ହେଲେ ବ୍ୟକ୍ତି ଜଣକ ସଙ୍କେତ ଦିଅନ୍ତି ବାହାରକୁ ଆସିବା ପାଇଁ । ସଙ୍ଗେ ସଙ୍ଗେ ସିଲିଣ୍ଡରଟି ଜଳାଶୟ ମଧ୍ୟରୁ ଟାଣି ଆଣି ଜଳାଶୟ ବାହାରେ ଏହାକୁ ଖୋଲି ବ୍ୟକ୍ତି ଜଣକୁ ମୁକ୍ତ ଦିଆଯାଏ ।

ବର୍ଣ୍ଣିତ ଆବଦ୍ଧ ସିଲିଣ୍ଡରରେ ସମୟ ଅତିବାହିତ କରିଥିବା ବ୍ୟକ୍ତିଙ୍କୁ ବାହାରକୁ ଆସିଲେ ନିଜର ଅନୁଭୂତି ବର୍ଣ୍ଣନା କରିବାକୁ କୁହାଯାଏ । ଦେଖାଗଲା ଯେ ଅଧିକାଂଶ ବ୍ୟକ୍ତି ବହୁ ବିଚିତ୍ର ଧରଣର ଅନୁଭୂତି ବର୍ଣ୍ଣନା କରୁଛନ୍ତି । ସେମାନଙ୍କର ଅନୁଭୂତି କମ୍ପିତ କମାକାର । ସିଲିଣ୍ଡର ମଧ୍ୟରେ ସାମାନ୍ୟତମ ଆଲୋକ ଛଡ଼ା ଅନ୍ୟ କୌଣସି ଆଲୋକ ନ ଥିଲେ ମଧ୍ୟ ସେମାନେ ବିଭିନ୍ନ ଦୃଶ୍ୟର ବର୍ଣ୍ଣନା ଦେଉଛନ୍ତି । ସେହିପରି ବାସ୍ତବରେ କୌଣସି ଶବ୍ଦ ନ ଥିଲେ ମଧ୍ୟ ସେମାନେ କେତେକ ସ୍ୱରଶବ୍ଦର ବର୍ଣ୍ଣନା ଦେଉଛନ୍ତି । ମୋଟ ଉପରେ ବହୁ ଭ୍ରାନ୍ତ ପ୍ରତ୍ୟକ୍ଷର ଶିକାର ହୋଇଛନ୍ତି । ଅତି ବେଶୀ ପାଗଳ ହୋଇଥିବା ଲୋକ ଯେପରି ଶୂନ୍ୟରେ ଶବ୍ଦ ଶୁଣିବାର ଅନୁଭବ କରେ, ଅନ୍ୟ କେହି କଥାବାର୍ତ୍ତା କରୁଥିବାର ଅନୁଭବ କରେ ଏବଂ ଅନ୍ୟ କୌଣସି ବ୍ୟକ୍ତିକୁ ଶୂନ୍ୟରେ ଶୂନ୍ୟରେ ଦେଖେ; ସିଲିଣ୍ଡରରେ ଥିବା ବ୍ୟକ୍ତି ଜଣଙ୍କ ସେହିପରି ଅନୁଭୂତିର ବର୍ଣ୍ଣନା ଦେଇଥାଏ । ଆହୁ ମଧ୍ୟ ସିଲିଣ୍ଡରରେ ଦୀର୍ଘ ସମୟ ଧରି ରହିଥିବା ବ୍ୟକ୍ତିମାନଙ୍କର ସାମୟିକ ଭାବେ ଚିନ୍ତାର ବିପର୍ଯ୍ୟୟ ଘଟିଥାଏ । ସିଲିଣ୍ଡରରୁ ବାହାରିବା ସଙ୍ଗେ ସଙ୍ଗେ ସେମାନେ ସ୍ୱାଭାବିକ ଭାବରେ ଚିନ୍ତା କରି ପାରନ୍ତି ନାହିଁ । ସେମାନଙ୍କର ଚିନ୍ତାଧାରା ଅସ୍ୱାଭାବିକ ହୋଇଥାଏ । ଏ ଲୋକମାନଙ୍କୁ ସିଲିଣ୍ଡରରୁ ବାହାରିବା ପରେ ପରେ ଚିତ୍ର ଆଙ୍କିବାକୁ କୁହାଯିବାରୁ ଦେଖାଗଲା ଯେ ଅଧିକାଂଶ ନିର୍ଯାତନା ଓ ଅମାନୁଷିକତାର ଚିତ୍ର ଅଙ୍କନ କରୁଛନ୍ତି । ଆତ୍ମହତ୍ୟା କରୁଥିବାର ଚିତ୍ର, ଜଣେ ଅନ୍ୟକୁ ଫାଶୀ ଦେଉ-ଥିବାର ଚିତ୍ର ଏବଂ ଜଣେ ଅନ୍ୟକୁ ଛୁରିକ୍ ପ୍ରହାର କରିବାର ଚିତ୍ର ବେଶି ଭାବରେ ଏମାନଙ୍କ ଚିତ୍ରାଙ୍କନରୁ ମିଳିଲା ।

ଜୁବେକ ଓ ଅନ୍ୟମାନଙ୍କ ଗବେଷଣାରୁ ପ୍ରମାଣିତ ହୋଇଛି ଯେ ମନର ସ୍ୱାଭାବିକ କାର୍ଯ୍ୟକଳାପ ପାଇଁ ପରିବେଶର ପରିବର୍ତ୍ତନଶୀଳତା ଆବଶ୍ୟକ । ଏହି ପରିବର୍ତ୍ତନଶୀଳ-ତାକୁ ବାଦ୍ ଦେଲେ ମସ୍ତିଷ୍କ ନିଜ କେନ୍ଦ୍ରରୁ କେତେକ କୌଶଳରେ ପରିବର୍ତ୍ତିତ ଅବସ୍ଥା ସୃଷ୍ଟି କରି ଅନୁଭୂତିର ସାମଗ୍ରୀ ଯୋଗାଏ । ଦୀର୍ଘ ସମୟ ଧରି ଇନ୍ଦ୍ରିୟାନୁଭୂତିର

ପରିବର୍ତ୍ତନହୀନତା ମନରେ ବିକୃତି ସୃଷ୍ଟି କରେ । ପରୋକ୍ଷରେ କହିବାକୁ ହେଲେ ମନର ସ୍ୱାଭାବିକ ବିକାଶ ପାଇଁ ପରିବେଶର ବୈଚିତ୍ର୍ୟ ଓ ବର୍ଣ୍ଣ ବହୁଳତା ବିଶେଷ ପ୍ରୟୋଜନ । ମଣିଷର ମନ ସହଜ ସୁଲଭ ଭଙ୍ଗୀରେ ନୂତନତାର ସନ୍ଧାନ କରି ନିଜର ମାନସିକ ସ୍ଥିତି ବଜାୟ ରଖେ । ତଥାପି ପରିବେଶକୁ ଋଦ୍ଧିମନ୍ତ କରି ମାନସିକ ବିକାଶକୁ ତ୍ୱରାନ୍ୱିତ କରିବାର ପ୍ରଶସ୍ତ କ୍ଷେତ୍ର ରହିଛି । ବ୍ୟାବହାରିକ ଦୃଷ୍ଟିକୋଣରୁ ଏହାର ଉପଯୋଗିତା ଏକ ଉପଲବ୍ଧିର ବିଷୟ ।

———